# ପ୍ରଜ୍ଞାପୁରୁଷ
# ପ୍ରଫେସର ଶରତ ଚନ୍ଦ୍ର ଦାଶ

ଡକ୍ଟର ଦିଗରାଜ ବ୍ରହ୍ମା

ପ୍ରକାଶକ
ରାଷ୍ଟ୍ରୀୟ ସାହିତ୍ୟ ସଂସ୍ଥାନ
ସାହିତ୍ୟ ଭବନ, ଭୁବନେଶ୍ୱର

# ପ୍ରଜ୍ଞାପୁରୁଷ

## ପ୍ରଫେସର ଶରତ ଚନ୍ଦ୍ର ଦାଶ


ଲେଖକ :
ଡକ୍ଟର ଦିଗରାଜ ବ୍ରହ୍ମା
ମହାବୀର ବିହାର, କଳାରାହାଙ୍ଗ,
କିଟ୍, ଭୁବନେଶ୍ୱର - ୭୫୧୦୨୪
ଯୋଗାଯୋଗ ନଂ- ୯୪୩୭୭୮୪୫୯୨
E.mail : drb432@gmail.com
ପରିକଳ୍ପନା ଓ ପ୍ରସ୍ତାବନା :
ପ୍ରଫେସର ନିର୍ମଳ ଚନ୍ଦ୍ର ଦାଶ
ବି.ଏମ୍-୧୬, ଲକ୍ଷ୍ମୀ ନିବାସ
ଭି.ଏସ୍.ଏସ୍ ନଗର
ଭୁବନେଶ୍ୱର - ୭୫୧୦୦୭
ମୋ : ୯୪୩୭୨୯୬୦୧୨
E.mail : ncdash53@gmail.com



ପ୍ରକାଶକ :
ରାଷ୍ଟ୍ରୀୟ ସାହିତ୍ୟ ସଂସ୍ଥାନ
ସାହିତ୍ୟ ଭବନ, ୭୨୨, ଜନପଥ,
ୟୁନିଟ୍ -୩, ଭୁବନେଶ୍ୱର
ପ୍ରାପ୍ତି ସ୍ଥାନ :
ବିଦ୍ୟାଶ୍ରୀ, ସାହିତ୍ୟ ଭବନ
୭୨୨, ଜନପଥ
ଖାରବେଳ ନଗର, ୟୁନିଟ୍ -୩
ଭୁବନେଶ୍ୱର- ୭୫୧୦୦୧
ଦୂରଭାଷ : ୦୬୭୪-୨୩୯୨୦୭୦
ମୁଦ୍ରଣ :
ଶ୍ରୀ ନୀଳକଣ୍ଠ ପ୍ରିଣ୍ଟର୍ସ
୧୬, ଭୌମନଗର,
ୟୁନିଟ୍-୪, ଭୁବନେଶ୍ୱର
ମୋ - ୯୪୩୭୩୦୮୯୦୫
ପ୍ରଥମ ସଂସ୍କରଣ : ୨୦୧୮



ମୁଦ୍ରିତ ବହି ସଂଖ୍ୟା : ୧୦୦୦
ମୂଲ୍ୟ : ଟ. ୨୫୦/- ମାତ୍ର


**PRAGNYAPURUSHA**

**Prof. SARAT CHANDRA DASH**


**Writer :**
**Dr Digaraj Brahma**
Mahavir Vihar,
Kalarahanga, KIIT,
Bhubaneswar - 751024
Contact No. : 9437784592
E.mail : drb432@gmail.com
**Parikalpana O Prastabana :**
Prof. Nirmal Chandra Dash
B.M.-16, Laxmi Nivas
VSS Nagar,
BBSR - 751007
Mob. : 9437296012
E.mail : ncdash53@gmail.com



**Publisher :**
Rastriya Sahitya Sansthan
Sahitya Bhawan, 722, Janpath,
Unit -3, Bhubaneswar
**Available at :**
Bidyashree, Sahitya Bhawan,
722, Janapath
Kharavel Nagar, Unit - 3
Bhubaneswar - 751001
Phone - 0674 - 2392070
**Printed at :**
**Shree Nilakantha Printers**
16, Bhouma Nagar, Unit-4,
Bhubaneswar
Mob. : 9437308905
**First Edition : 2018**



**No. of Books Printed : 1000**
**Price : 250/- only**
**ISBN.978-81-931182-2-1**

# ପ୍ରସ୍ତାବନା

ପୂଜ୍ୟ ପିତାଙ୍କ ଦେହାନ୍ତ ପରେ ତାଙ୍କର ଜୀବନୀ ଲେଖିବାକୁ ମନସ୍ଥ କରିଥିଲି । କିନ୍ତୁ ବିଧିର ବିଧାନ ଅଲଗା ଥିଲା । ମୋ ସହଧର୍ମିଣୀଙ୍କ ଶାରୀରିକ ଅସୁସ୍ଥତା ହେତୁ ତାହା ସମ୍ଭବ ହୋଇପାରି ନ ଥିଲା । ଭାବିଲି ବନ୍ଧୁ ଦାଶ ବେନହୁର ଓ ବାଉରୀବନ୍ଧୁଙ୍କ ସହିତ ଏ ବିଷୟରେ ଆଲୋଚନା କରିବି । ମାତ୍ର ସେମାନେ ମୋ ପିତାଙ୍କ ସହିତ ଏତେ ଘନିଷ୍ଠ ନ ଥିଲେ । ପୁଣି ଦିନେ ପ୍ରାଧ୍ୟାପକ ଦୁର୍ଗାଚରଣ ରଣାଙ୍କ ପାଖକୁ ଗଲି । ସେ ଥିଲେ ବାପାଙ୍କ ଛାତ୍ର । ମୋର ଅନୁଜ ସଦୃଶ । ତାଙ୍କ ସହିତ ଆଲୋଚନା କରି ଘରକୁ ଫେରିଲି । ଦଶାହ ଉପଲକ୍ଷେ ପ୍ରକାଶିତ ସ୍ମରଣିକା 'ଅର୍ଘ୍ୟ'କୁ ପୁଣି ପଢ଼ିଲି । ସେଥିରୁ ଗୋଟିଏ ଲେଖା ମୋ ମନକୁ ପ୍ରଭାବିତ କରିଥିଲା । ତାହା ଥିଲା ଡକ୍ଟର ଦିଗରାଜ ବ୍ରହ୍ମାଙ୍କ ଲିଖିତ, "ପ୍ରଜ୍ଞାପୁରୁଷ ପ୍ରଫେସର ଶରତ ଚନ୍ଦ୍ର ଦାଶ" । ସେ ବାପାଙ୍କ ଛାତ୍ର ନ ଥିଲେ ବି ବାପାଙ୍କୁ ଗୁରୁ ସଦୃଶ ମାନୁଥିଲେ । ତାଙ୍କ ସହିତ ଦେଖା କରିବା ପାଇଁ ମନସ୍ଥ କଲି । ଘର ଦେଖି ନ ଥିବାରୁ ଡକ୍ଟର ରଣାଙ୍କ ପାଖକୁ ଗଲି । ଏହି ପ୍ରସ୍ତାବରେ ସେ ଖୁସି ହେଲେ । କିନ୍ତୁ କାର୍ଯ୍ୟବ୍ୟସ୍ତତା ହେତୁ ପରେ ଯିବାର ଯୋଜନା ହେଲା ।

ଏହା ଭିତରେ ଅନେକ ଦିନ ବିତି ଯାଇଥିଲା । ଦିନେ ସକାଳେ ହଠାତ୍ ଗୋଟିଏ ଫୋନ୍ ପାଇଲି । ଜଣେ ବୟସ୍କ ବ୍ୟକ୍ତିଙ୍କ ସ୍ୱର ଥିଲା । ପ୍ରଫେସର ଦାଶ କହୁଛନ୍ତି କି ବୋଲି ପଚାରିଲେ । ମୁଁ ଭାବିଲି ବାପାଙ୍କୁ ସିଏ ଖୋଜୁଛନ୍ତି । କିଛି ସମୟ ନିରବ ପରେ ସେ ମୋତେ ପୁଣି ପଚାରିଲେ, "ନିର୍ମଳ ବାବୁ କହୁଛନ୍ତି ତ ?" ମୁଁ ନମସ୍କାର କରି ପରିଚୟ ମାଗିଲି । ସେ କହିଲେ ମୁଁ ଦିଗରାଜ ବ୍ରହ୍ମା କହୁଛି । "ଆପଣଙ୍କୁ ମୋ ରଚିତ ଆତ୍ମ ଜୀବନୀ ଦେବାକୁ ଆସିଛି । ଆପଣଙ୍କ ବାପାଙ୍କ ତାହା ହେଉଛି ପ୍ରାପ୍ୟ । ମାତ୍ର ଆପଣଙ୍କ ବାପାଙ୍କ ଅବର୍ତ୍ତମାନରେ ଆପଣ ପାଇଲେ ବାପା ସ୍ୱର୍ଗରେ ଥାଇ ମଧ୍ୟ ପାଇଯିବେ । ପଟିଆ ବିଗ୍‌ବଜାରସ୍ଥିତ

ଆପଣଙ୍କ ଘରଟିକୁ ପାଇ ପାରୁନାହିଁ ।" ମୁଁ ସଙ୍ଗେ ସଙ୍ଗେ ଆମ କଲୋନୀ ପାଖରେ ସେ ଛିଡ଼ା ହୋଇଥିବା ସ୍ଥାନରେ ପହଞ୍ଚିଲି । ସାଦରେ ତାଙ୍କୁ ଘରକୁ ଡାକିଲି । ସେ ବହୁତ ବ୍ୟସ୍ତ ଥିଲାପରି ଜଣାପଡୁଥିଲେ । ମୋ ହାତକୁ ତାଙ୍କ ଲିଖିତ "ମୋ ସ୍ମୃତିର ଆଲେଖ୍ୟ" ପୁସ୍ତକଟିକୁ ବଢ଼ାଇ ଦେଲେ । ଆପଣ ବାପାଙ୍କ ପରି ଦେଖା ଯାଉଛନ୍ତି କହି ଖୁସିରେ କୁଣ୍ଢାଇ ପକାଇଲେ । ଦୁଇପଦ କଥା ହୋଇ ଘରକୁ ପରେ ଆସିବେ କହିଥିଲେ । ତାହା ଥିଲା ଏକ ଅଦ୍‌ଭୁତ ସଂଯୋଗ ।

ସେହି ଦିନଟି ଥିଲା ୨୦୧୭ ମସିହା ଅଗଷ୍ଟ ମାସ ୩୦ ତାରିଖ ।

କହିବାର ଅର୍ଥ ଏହା ଯେ, ବାପାଙ୍କ ଜୀବନର ପ୍ରାୟ ସବୁ ପ୍ରଧାନ ଘଟଣାଗୁଡ଼ିକ ଏହି ଅଗଷ୍ଟ ମାସରେ ଘଟିଅଛି ଯଥା : ଜନ୍ମ, ବିବାହ, ଚାକିରି, ପ୍ରମୋସନ, ଅବସର ଏବଂ ଦେହାନ୍ତ ମଧ୍ୟ ।

ପରଦିନ ବ୍ରହ୍ମାବାବୁଙ୍କୁ ଫୋନ୍ କରି ତାଙ୍କ ବହିଟି ଭଲ ଲାଗିଲା ବୋଲି କହିଲି । ସେ ତତ୍‌କ୍ଷଣାତ୍ ମୋତେ ବାପାଙ୍କର ଏକ ମହାର୍ଘ ଜୀବନୀ ଲେଖିବାକୁ ପରାମର୍ଶ ଦେଲେ । ସେ ଦାୟିତ୍ୱ ମୁଁ ନ ନେଇ ସେ ନିଜେ ନେବା ପାଇଁ ପ୍ରସ୍ତାବ ଦେଲି । ମୋ ପ୍ରସ୍ତାବରେ ସେ ସମ୍ମତି ଜଣାଇଲେ । ମୋ ପାଖରେ ବାପାଙ୍କ ସମ୍ବନ୍ଧୀୟ ଯାହା ତଥ୍ୟ ଥିବ ତାଙ୍କୁ ଯୋଗାଇ ଦେବାକୁ ପ୍ରତିଶ୍ରୁତି ଦେଇଥିଲି ।

ଆଜିର ଏହି ଶୁଭ ଅବସରରେ ଲୋକାର୍ପିତ ହେଉଥିବା ପୁସ୍ତକଟିର ନାମକରଣ ସେହିଁ ସ୍ଥିର କରିଛନ୍ତି । "ପ୍ରଜ୍ଞାପୁରୁଷ ଶରତ ଚନ୍ଦ୍ର ଦାଶ" ପୁନଃ ଜୀବିତ ହୁଅନ୍ତୁ ।

ଏହା ହିଁ ଓଡ଼ିଆ ଜାତିର ଆରାଧ୍ୟ ଦେବତା ପ୍ରଭୁ ଜଗନ୍ନାଥଙ୍କ ପାଦପଦ୍ମରେ ମୋର ବିନମ୍ର ପ୍ରାର୍ଥନା ।

ଭୁବନେଶ୍ୱର
୦୫.୦୮.୨୦୧୮

ନିର୍ମଳ ଚନ୍ଦ୍ର ଦାଶ
(ନିର୍ମଳ ଚନ୍ଦ୍ର ଦାଶ)

# ଲେଖକୀୟ ଅଭିବ୍ୟକ୍ତି

ଓଡ଼ିଶାର ଶିକ୍ଷା ଇତିହାସରେ ପ୍ରଫେସର ଶରତ ଚନ୍ଦ୍ର ଦାଶ ସ୍ୱତନ୍ତ୍ର ପଦଚିହ୍ନ ଛାଡ଼ି ଯାଇଅଛନ୍ତି । ସେ ତାଙ୍କର ଅଧ୍ୟାପକ ଜୀବନ ୧୯୫୫ ମସିହାରେ ଶିକ୍ଷା ବିଭାଗ ଅଧ୍ୟାପକ ରୂପେ ରେଭେନ୍‌ସା ମହାବିଦ୍ୟାଳୟରେ ଆରମ୍ଭ କରି ଶିକ୍ଷା ଜଗତର ସର୍ବୋଚ୍ଚ ସ୍ଥାନରେ ପହଞ୍ଚି ରାଜ୍ୟ ସରକାରଙ୍କ ବହୁ ଗୁରୁତ୍ୱପୂର୍ଣ୍ଣ ପଦପଦବୀରେ ଅଧିଷ୍ଠିତ ହେବାର ସୁଯୋଗ ପାଇଥିଲେ । ଯେତେବେଳେ ଯେଉଁ ଅନୁଷ୍ଠାନରେ ଯେଉଁ ପଦବୀରେ କାର୍ଯ୍ୟ ନିର୍ବାହ କରିଥିଲେ, ସେତେବେଳେ ରାଜ୍ୟ ଓ ଦେଶର ଶୈକ୍ଷିକ ବିକାଶକୁ ଗୁରୁତ୍ୱ ଦେଇ ନିଜର ଦାୟିତ୍ୱ ଓ କର୍ତ୍ତବ୍ୟବୋଧ ପ୍ରଦର୍ଶନ କରୁଥିଲେ । ସେଥିପାଇଁ ସେ ସର୍ବତଃ ଶିକ୍ଷା ଜଗତର ଆଦର୍ଶ ଓ ଭବିଷ୍ୟତ ବଂଶଧରମାନଙ୍କ ପ୍ରେରଣା ଉଦ୍ଦୀପକ ପ୍ରଜ୍ଞା ପୁରୁଷ ରୂପେ ବିବେଚିତ ।

ପ୍ରଜ୍ଞାପୁରୁଷ ପ୍ରଫେସର ଦାଶଙ୍କ କର୍ମ ପ୍ରବାହ ଓ ଜୀବନଧାରାକୁ ନେଇ ଏକ ପୁସ୍ତକ ରଚନା କରିବା ନିମନ୍ତେ ଏହି ଲେଖକଙ୍କୁ ଫକିର ମୋହନ ବିଶ୍ୱବିଦ୍ୟାଳୟର ଜନସଂଖ୍ୟା ଅଧ୍ୟୟନ ବିଭାଗର ପୂର୍ବତନ ପ୍ରଫେସର - ତଥା - ବିଭାଗୀୟ ମୁଖ୍ୟ ଡକ୍ଟର ନିର୍ମଳ ଚନ୍ଦ୍ର ଦାଶ ଏକ ଅନ୍ତରଙ୍ଗ ବାର୍ତ୍ତାଳାପ ମାଧ୍ୟମରେ ପ୍ରସ୍ତାବ ଦେଇଥିଲେ । ଏପରି ପ୍ରସ୍ତାବର କାର୍ଯ୍ୟକାରିତା ଏକ କଷ୍ଟକର ବ୍ୟାପାର ହେଲେ ମଧ୍ୟ ପ୍ରଫେସର ଦାଶଙ୍କ ପ୍ରତି ମୋର ଅନୁଭବ ଓ ବ୍ୟକ୍ତିଗତ ସମ୍ମାନ ଏତେ ଆବେଗପୂର୍ଣ୍ଣ ଥିଲା ଯେ ତାଙ୍କ ସଂପର୍କରେ ଏକ ଜୀବନୀ ପୁସ୍ତକ ଲେଖିବାର ସୌଭାଗ୍ୟକୁ ହାତଛଡ଼ା କରିବା ବିଜ୍ଞତାର ପରିଚୟ ହେବ ନାହିଁ ବୋଲି ଅନୁଭବ କଲି ।

ସୌଭାଗ୍ୟ କ୍ରମେ ପ୍ରଫେସର ଦାଶ ସମ୍ବଲପୁର ସରକାରୀ ପ୍ରଶିକ୍ଷଣ ମହାବିଦ୍ୟାଳୟର ପ୍ରଫେସର - ତଥା - ଅଧ୍ୟକ୍ଷ ଥିଲାବେଳେ ଲେଖକ ସେଠାରେ ୧୯୬୭ ମସିହାରେ ଅଧ୍ୟାପକ ଭାବରେ ଅବସ୍ଥାପିତ ହୋଇଥିଲେ । ପରବର୍ତ୍ତୀ ସମୟରେ ସେ ପ୍ରଫେସର ଦାଶଙ୍କୁ ଶିକ୍ଷକ ଶିକ୍ଷା ନିର୍ଦ୍ଦେଶାଳୟ ଏବଂ ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦର ନିର୍ଦ୍ଦେଶକ; ମାଧ୍ୟମିକ ଶିକ୍ଷା ନିର୍ଦ୍ଦେଶକ; ମାଧ୍ୟମିକ ଶିକ୍ଷା ପରିଷଦର ସଭାପତି; ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ରର ନିର୍ଦ୍ଦେଶକ; ରାଜ୍ୟ ଯୋଜନା ବୋର୍ଡ଼ର ସଦସ୍ୟ; ରାଜ୍ୟ ସ୍ତରୀୟ ମାଧ୍ୟମିକ ଓ ଶିକ୍ଷକ ଶିକ୍ଷା କମିଟିର ଚେୟାରମ୍ୟାନ ଓ ସଦସ୍ୟ ଭାବେ ତାଙ୍କର ବହୁବିଧ କାର୍ଯ୍ୟାବଳୀ ଅନୁଧ୍ୟାନ କରିବାର ସୁଯୋଗ ପାଇଥିଲେ । ପ୍ରାୟ ଦୀର୍ଘ ଅର୍ଦ୍ଧଶତାବ୍ଦୀରୁ ଊର୍ଦ୍ଧ୍ୱକାଳ ତାଙ୍କର ଶୈକ୍ଷିକ କାର୍ଯ୍ୟଧାରା (୧୯୫୫-୨୦୧୩) ଓଡ଼ିଶାର ଶରତ ପ୍ରେମୀ ବନ୍ଧୁମାନଙ୍କୁ ଅନୁପ୍ରାଣିତ କରିବା ସହିତ ତାଙ୍କର ଅଗଣିତ ଛାତ୍ରଛାତ୍ରୀ ଓ ଗବେଷକମାନଙ୍କୁ ପ୍ରଭାବିତ କରିଥିଲା । ଏତଦ୍‌ବ୍ୟତୀତ ତାଙ୍କର ଚିନ୍ତାଧାରା ଆମ୍ଭମାନଙ୍କ ପାଇଁ ଆଦର୍ଶ

ଓ ପରମ୍ପରା ହୋଇ ରହିଅଛି । ଏହି ପରମ୍ପରା ମଧ୍ୟରେ ତାଙ୍କ ରଚିତ ସଂସ୍କୃତି ସଂପନ୍ନ ରଚନାତ୍ମକ କାର୍ଯ୍ୟ ଓ ସମାଜ ସେବା ଓଡ଼ିଶାର ଜନଜୀବନ ଓ ଭବିଷ୍ୟତ ବଂଶଧରମାନଙ୍କ ପାଇଁ ବାର୍ତ୍ତା ବହନ କରେ ।

ପ୍ରଫେସର ଦାଶ ନିଜର ବହୁବିଧ କାର୍ଯ୍ୟଧାରା ମଧ୍ୟରେ ନିଜର ପରିବାର ପ୍ରତି ଦାୟିତ୍ୱ ଓ କର୍ତ୍ତବ୍ୟବୋଧ ତୁଲାଇବା ସହିତ ନିଜେ କାର୍ଯ୍ୟ କରୁଥିବା ଅନୁଷ୍ଠାନର ସହକର୍ମୀମାନଙ୍କ ପ୍ରତି ସମ୍ବେଦନଶୀଳ ଓ ସକାରାତ୍ମକ ମନୋଭାବ ପୋଷଣ କରୁଥିଲେ । ଏଥି ସହିତ ସେ ବୃହତ୍ତର ସମାଜକୁ ଉପେକ୍ଷା ନ କରି ଜୀବନର ବହୁବିଧ କାର୍ଯ୍ୟାବଳୀକୁ ଯେଉଁଭଳି ପ୍ରତିଫଳିତ କରିଛନ୍ତି ସେ ସବୁର ଯତ୍କିଞ୍ଚିତ ଆଲୋଚନା ମଧ୍ୟ ଏହି ପୁସ୍ତକରେ କରାଯାଇଅଛି ।

ଏପରି ଏକ ମହାର୍ଘ ପୁସ୍ତକ ରଚନା ଓ ପ୍ରକାଶନ ଦିଗରେ ଏଇ ଲେଖକଙ୍କୁ ବିଭିନ୍ନ ସମୟରେ ରାଜ୍ୟର ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତି ବିଭାଗର କମିଶନର ତଥା ପ୍ରମୁଖ ଶାସନ ସଚିବ ମନୋରଞ୍ଜନ ପାଣିଗ୍ରାହୀ, ପ୍ରଫେସର ନରେନ୍ଦ୍ର ପ୍ରସାଦ ଦାସ, ଡକ୍ଟର ଭାଗ୍ୟଧର ମହାନ୍ତି, ଡକ୍ଟର ଧ୍ରୁବଚରଣ ମିଶ୍ର, ଡକ୍ଟର ଅମରେନ୍ଦ୍ର ପ୍ରସାଦ ଗିରି, ଡକ୍ଟର ଦୁର୍ଗାଚରଣ ରଣା, ଡକ୍ଟର ସୁରେଶ ଚନ୍ଦ୍ର ସାହୁ, ପ୍ରାଧ୍ୟାପକ ରାଜକିଶୋର ମିଶ୍ର, ଡକ୍ଟର ନାରାୟଣ ପ୍ରଧାନ, ବ୍ରଜନାଥ ବଡ଼ଜେନା ଉଚ୍ଚ ବିଦ୍ୟାଳୟର ବରିଷ୍ଠ ଶିକ୍ଷକ ଦେବୀ ପ୍ରସାଦ ମିଶ୍ର ତଥ୍ୟଭିତ୍ତିକ ସହାୟତା ପ୍ରଦାନ କରିଥିବାରୁ ମୁଁ ସେମାନଙ୍କ ନିକଟରେ କୃତଜ୍ଞତା ପ୍ରକାଶ କରୁଛି ।

ପୁନଶ୍ଚ ରାଷ୍ଟ୍ରୀୟ ସାହିତ୍ୟ ସଂସ୍ଥାନ ଭୁବନେଶ୍ୱରର ପ୍ରତିଷ୍ଠାତା ତଥା – ରାଜ୍ୟର ବରିଷ୍ଠ ସାହିତ୍ୟିକ ବୈକୁଣ୍ଠନାଥ ପତି, ବିଦ୍ୟାଶ୍ରୀର ପରିଚାଳକ ବିଜନ ପତି ପୁସ୍ତକଟିର ପ୍ରକାଶନ ଓ ପ୍ରସାରଣର ଦାୟିତ୍ୱ ସ୍ୱତଃପ୍ରବୃତ୍ତ ନେଇଥିବା ହେତୁ ଧନ୍ୟବାଦର ପାତ୍ର ହୋଇଛନ୍ତି ।

ଆଜି ପ୍ରଫେସର ଦାଶ ଆମ ଗହଣରେ ନାହାଁନ୍ତି । ମାତ୍ର ପୁସ୍ତକଟି ରଚନା ଓ ସଂପାଦନା ସମୟରେ ତାଙ୍କର ଆଧ୍ୟାତ୍ମିକ ଉପସ୍ଥିତି ଓ ଅଭିପ୍ରେରଣା ପ୍ରତ୍ୟେକ ମୁହୂର୍ତ୍ତରେ ଅନୁଭବ ହୋଇଅଛି । ଏହି ଅଭିପ୍ରେରଣାର ବୌଦ୍ଧିକ ପ୍ରବାହରେ ଲେଖକଙ୍କ ସହିତ ପ୍ରଫେସର ଦାଶଙ୍କ ବଡ଼ ପୁଅ ନିର୍ମଳ ଚନ୍ଦ୍ର ଦାଶ ମଧ୍ୟ କାର୍ଯ୍ୟ କରିଛନ୍ତି ।

ଶ୍ରୀଯୁକ୍ତ ନିର୍ମଳ ଚନ୍ଦ୍ର ଦାଶଙ୍କ ଅଦମ୍ୟ ପ୍ରଚେଷ୍ଟା, ଭାବଗତ ଐକ୍ୟ ଓ ପିତାଙ୍କ ପ୍ରତି ପ୍ରଗାଢ଼ ଭକ୍ତି ଯୋଗୁଁ ଆଜି **"ପ୍ରଜ୍ଞାପୁରୁଷ ପ୍ରଫେସର ଶରତ ଚନ୍ଦ୍ର ଦାଶ"** ପୁସ୍ତକଟି ଆତ୍ମପ୍ରକାଶ ଲାଭ କରିଅଛି । ଏହି ଅବସରରେ ପ୍ରଫେସର ନିର୍ମଳ ଚନ୍ଦ୍ର ଦାଶଙ୍କୁ ମଧ୍ୟ ସାଧୁବାଦ ଜଣାଉଛି ।

ଦିଗରାଜ ବ୍ରହ୍ମା

(ଦିଗରାଜ ବ୍ରହ୍ମା)



୭୦ ଦଶକରେ ଅଧ୍ୟକ୍ଷ ପ୍ରଫେସର ଦାଶ



ପିଏଚ୍.ଡି. ଉପାଧି ସମାବର୍ତ୍ତନ
ଉତ୍ସବରେ ପ୍ରଫେସର ଦାଶ



ସହଧର୍ମିଣୀଙ୍କ ସହିତ ଗୌହାଟୀରେ



ବ୍ୟାଙ୍କକ୍ ସ୍ଥିତ ଆନ୍ତର୍ଜାତିକ ଶିକ୍ଷା ସମ୍ମିଳନୀରେ ପ୍ରଫେସର ଦାଶ



ସହଧର୍ମିଣୀଙ୍କ ସହିତ ପାମ୍ ବିଚ୍‌ରେ



ପ୍ରଫେସର ନାଥଙ୍କୁ ସମ୍ବର୍ଦ୍ଧନା ଅବସରରେ ପ୍ରଫେସର ଦାଶ ଏବଂ
ଜନଶିକ୍ଷା ସାଧନା କେନ୍ଦ୍ର ଓଡିଶାର ତତ୍‌କାଳୀନ ନିର୍ଦ୍ଦେଶକ ଭୁବନାନନ୍ଦ ତ୍ରିପାଠୀ




ରାଜ୍ୟ ଜନଶିକ୍ଷା ସାଧନା କେନ୍ଦ୍ରରେ ଅନୁଷ୍ଠିତ ହୋଇଥିବା
ସମ୍ବର୍ଦ୍ଧନା ଉତ୍ସବରେ ପ୍ରଫେସର ଦାଶ ଓ ଅନ୍ୟମାନେ

# ସୂଚୀପତ୍ର

| ବିଷୟ | ପୃଷ୍ଠା |
|---|---|

# ପ୍ରଫେସର ଦାଶଙ୍କ ବଂଶଲତା



**ଜନ୍ମ ବୃତ୍ତାନ୍ତ**

ଅବିଭକ୍ତ ଢେଙ୍କାନାଳ ଜିଲ୍ଲାର କେନ୍ଦୁଢ଼ିପ ଗ୍ରାମ । ଏହି ଗ୍ରାମଟି କାମାକ୍ଷାନଗର ଥାନା ଅନ୍ତର୍ଗତ ଓ ଭୁବନ ବ୍ଲକ ଅଧୀନସ୍ଥ ଦିଘି ପଞ୍ଚାୟତରେ ଅବସ୍ଥିତ । ଏହି ଗ୍ରାମରେ ଏକ କୁଳୀନ ବ୍ରାହ୍ମଣ ପରିବାରେ ଜନ୍ମ ଗ୍ରହଣ କରିଥିଲେ ଶିଶୁ ଶରତ ଚନ୍ଦ୍ର । ଏହା ହେଉଛି ୧୯୩୦ ମସିହା ଅଗଷ୍ଟ ମାସ ୨୧ ତାରିଖର ଘଟଣା । ସେ ଥିଲେ ପିତା ମହେଶ୍ୱର ଦାଶ ଓ ମାତା ରାଧାମଣି ଦେବୀଙ୍କ ପ୍ରଥମ ସନ୍ତାନ ।

ପ୍ରଥମ ସନ୍ତାନର ପ୍ରଥମ ସ୍ପର୍ଶ ଉଭୟେ ପିତାମାତାଙ୍କ ମନରେ ଆଣିଥିଲା ଅଫୁରନ୍ତ ଆନନ୍ଦ । ସେମାନେ ଆନନ୍ଦର ଆତିଶଯ୍ୟରେ ସନ୍ତାନଟିର ନାମ ଦେଇଥିଲେ ଶରତ ଚନ୍ଦ୍ର । ସେମାନେ ଚାହିଁଥିଲେ ଶରତର ଚନ୍ଦ୍ର ଯେମିତି ବିକଶିତ ହୋଇ ଶେଷରେ ଏକ ବିକଶିତ ଚନ୍ଦ୍ରରେ ପରିଣତ ହୋଇଥାଏ, ସେହିପରି ତାଙ୍କ ସନ୍ତାନଟି ଭବିଷ୍ୟତରେ ନିଜର ଶିକ୍ଷା, ଦୀକ୍ଷା, ଗୁଣ ଗ୍ରାମରେ ବିକଶିତ ହେଉ – ଆମ ରାଜ୍ୟ ଓ ଦେଶଦଶରେ ନିଜର ନାମକୁ ସାର୍ଥକ କରୁ । ତାହାହିଁ ଘଟିଥିଲା ଶିଶୁପୁତ୍ର ଶରତ ଚନ୍ଦ୍ରଙ୍କ ଜୀବନରେ । ସେ କ୍ରମଶଃ ବିକଶିତ ହୋଇ ଏକ ପୂର୍ଣ୍ଣାଙ୍ଗ ବ୍ୟକ୍ତିତ୍ୱରେ ପରିଣତ ହୋଇ ଆମ ରାଜ୍ୟ ଓ ଦେଶରେ ଜଣେ ବିଶିଷ୍ଟ ବ୍ୟକ୍ତିରେ ପରିଣତ ହୋଇଥିଲେ । ରାଜ୍ୟର ଶିକ୍ଷା ଓ ସଂସ୍କୃତିକୁ ଆଲୋକିତ କରି ରାଜ୍ୟର ପ୍ରଥମ ଶିକ୍ଷାଗୁରୁ ହେବାର ସମ୍ମାନ ଲାଭ କରିଥିଲେ । ଏହା ସହିତ ରାଜ୍ୟର ଶୈକ୍ଷିକ ଭାଗ୍ୟାକାଶକୁ ସ୍ୱକୀୟ ପ୍ରତିଭା ଓ ଦିଗ୍‌ଦର୍ଶନରେ ପ୍ରାୟ ଚାରି ଦଶନ୍ଧିରୁ ଉର୍ଦ୍ଧ୍ୱକାଳ ଦିଗ୍‌ଦର୍ଶନ ଦେଇଥିଲେ ।

## ଶରତ ଚନ୍ଦ୍ରଙ୍କ ପୂର୍ବପୂରୁଷ

ଶରତ ଚନ୍ଦ୍ରଙ୍କ ପୂର୍ବପୁରୁଷ ଢେଙ୍କାନାଳ ଜିଲ୍ଲାର ବ୍ରାହ୍ମଣୀ ନଦୀ କୂଳରେ ଅବସ୍ଥିତ ଗୋବିନ୍ଦପୁର ଗ୍ରାମରେ ବସବାସ କରୁଥିଲେ । ତାଙ୍କର ଜେଜେ ଥିଲେ ସୁଦାମା ଦାଶ ଓ ପ୍ରପିତାମହ ଥିଲେ ଆର୍ତ୍ତତ୍ରାଣ ଦାଶ । ସୁଦାମଙ୍କର ପିତାମହ ଥିଲେ ନାରାୟଣ ଦାଶ ।

ଦାଶ ପରିବାରର ପୂର୍ବପୁରୁଷମାନେ ଇତିହାସ ପ୍ରସିଦ୍ଧ ବିରଜା ଶ୍ରୀକ୍ଷେତ୍ର, ଯାଜପୁରରୁ ୧୬୪୪ ମସିହାରେ ଗୋବିନ୍ଦପୁର ଗ୍ରାମକୁ ଆସି ସେଠାରେ ବସବାସ କରିଥିଲେ ।

ଶରତ ଚନ୍ଦ୍ରଙ୍କ ପ୍ରପିତାମହ ଆର୍ତ୍ତତ୍ରାଣ ଦାଶ ଥିଲେ ଜଣେ ଉଦାରଚେତା ମଣିଷ । ସେ ଜାତି ଧର୍ମ ଓ ବର୍ଣ୍ଣ ମଧ୍ୟରେ କୌଣସି ବିଭେଦତା ଦେଖୁ ନ ଥିଲେ । ସେଥିପାଇଁ ସେ ନିଜର ବଂଶକୁ 'ବସୁଧୈବ କୁଟୁମ୍ବକମ୍' ଆଦର୍ଶ ଓ ନୀତିରେ ଉଦ୍‌ବୁଦ୍ଧ କରିବା ନିମନ୍ତେ ନିଜର ପରିବେଶ ମଧ୍ୟରେ ଏପରି ଦୃଷ୍ଟାନ୍ତ ସୃଷ୍ଟି କରୁଥିଲେ ଯେ ଯାହା ପରବର୍ତ୍ତୀ ପିଢ଼ି ପାଇଁ ଆଦର୍ଶ ଓ ପରମ୍ପରା ସୃଷ୍ଟି କରୁଥିଲା । ଏହାର ଜ୍ୱଳନ୍ତ ଦୃଷ୍ଟାନ୍ତ ଦେଖିବାକୁ ମିଳେ ତାଙ୍କର ଦୁଇ ପୁଅଙ୍କ ନାମକରଣରୁ; ଯାହାଥିଲା **ସୁଦାମା ଓ କବୀର** । ସୁଦାମା ଥିଲେ ସତ୍ୟ ଶାନ୍ତି ଓ ଅନାବିଳ ପ୍ରେମର ପ୍ରତୀକ । କବୀର ଥିଲେ ଜାତି ଧର୍ମ ଓ ବର୍ଣ୍ଣର ଊର୍ଦ୍ଧ୍ୱରେ ଥିବା ଏକ ଦେବତୁଲ୍ୟ ମଣିଷର ପ୍ରତୀକ ।

ଶରତଙ୍କ ଜେଜେ ହେଉଛନ୍ତି ସୁଦାମା । ତାଙ୍କ ଭାଇ ଅର୍ଥାତ୍ ସାନ ଜେଜେ ହେଉଛନ୍ତି କବୀର । ତାଙ୍କ ଜେଜେ ସୁଦାମା ୧୯୪୦ ମସିହାରେ ଶରତଙ୍କୁ ଦଶବର୍ଷ ହୋଇଥିଲା ବେଳେ ସ୍ୱର୍ଗାରୋହଣ କରିଥିଲେ ଏବଂ ସାନ ଜେଜେ କବୀର ଅନେକ ବର୍ଷ ପର୍ଯ୍ୟନ୍ତ ବଞ୍ଚିଥିଲେ । ଏହି ଦୁଇ ଭାଇଙ୍କ ମଧ୍ୟରେ ଅନନ୍ୟ ସଂପର୍କ ଥିଲା । ସେହି ଦୁଇ ପରିବାର ପରସ୍ପରକୁ ଏତେ ଭଲ ପାଉଥିଲେ ଯେ ପରସ୍ପର ମଧ୍ୟରେ ପାରସ୍ପରିକ ସ୍ନେହଶ୍ରଦ୍ଧା ବଂଶାନୁକ୍ରମେ ମଧ୍ୟ ଅତୁଟ ରହିଅଛି ।

ସେଥିପାଇଁ ଶରତ ହାଇସ୍କୁଲରେ ଅଧ୍ୟୟନ କଲାବେଳେ ଅଧିକାଂଶ ସମୟରେ ତାଙ୍କ ବାପା ମହେଶ୍ୱର ବସବାସ କରୁଥିବା 'କେନ୍ଦୁଡ଼ିପ'କୁ (୧୯୨୩ ମସିହାରେ ମହେଶ୍ୱର ଦାଶ ଗୋବିନ୍ଦପୁର ନିକଟରେ ଥିବା କେନ୍ଦୁଡ଼ିପ ଗ୍ରାମକୁ ଚାଲି ଆସିଥିଲେ) ଛୁଟି କାଟିବାକୁ ନ ଯାଇ ଗୋବିନ୍ଦପୁରଠାରେ ରହୁଥିବା ସାନ ଜେଜେ କବୀରଙ୍କ ଘରେ ଛୁଟିଦିନଗୁଡ଼ିକ କଟାଉଥିଲେ । ସେହିପରି କବୀରଙ୍କ ଘରେ ଯେତେବେଳେ ପିଠାପଣା ଆଦି ହେଉଥିଲା, ସେ ନିଜେ ଚାଲି ଚାଲି ବଡ଼ ଭାଇ ସୁଦାମାଙ୍କ ପୁଅ ମହେଶ୍ୱରଙ୍କ

ଘରେ ପିଠାପଣା ଓ ଅନ୍ୟାନ୍ୟ ଖାଦ୍ୟ ସାମଗ୍ରୀ ନେଇ ପହଞ୍ଚି ଯାଉଥିଲେ । ଗୋବିନ୍ଦପୁର ଠାରୁ କେନ୍ଦୁଡ଼ିପ ପର୍ଯ୍ୟନ୍ତ ପ୍ରାୟ ୨ କିଲୋମିଟର ଦୂରତ୍ୱ ଅତିକ୍ରମ କରିବା ତାଙ୍କ ପାଇଁ ଆନନ୍ଦ ଦାୟକ ଥିଲା ।

ମହେଶ୍ୱରଙ୍କ ପ୍ରଥମ ପୌତ୍ର ନିର୍ମଳ ୧୯୫୨ ମସିହାରେ ଜନ୍ମ ହୋଇଥିଲେ ସେହି ସ୍ମୃତିକୁ ଉଜ୍ଜୀବିତ କରି ରଖିବା ନିମନ୍ତେ ମହେଶ୍ୱର ନିଜ ଗାଆଁରେ 'ନିର୍ମଳ ମଣ୍ଡପ' ନିର୍ମାଣ କରିଥିଲେ । ସଂପ୍ରତି ସେହି ମଣ୍ଡପ ଆଜି କେନ୍ଦୁଡ଼ିପ ଗ୍ରାମର ଐତିହ୍ୟ ଓ ସଂସ୍କୃତିର ସ୍ମୃତି ପୀଠ ହୋଇ ରହିଅଛି ।

**ପରିବାରର ଐତିହ୍ୟ ଓ ପରମ୍ପରାର ପ୍ରତୀକ : ସୁଦାମା ଓ କବୀର**

ଶରତ ଚନ୍ଦ୍ର ତାଙ୍କ ଜୀବନକାଳ ମଧ୍ୟରେ ତାଙ୍କ ପରିବାରର ଐତିହ୍ୟ ଓ ପରମ୍ପରାର ପ୍ରତୀକ ରୂପେ ତାଙ୍କ ଜେଜେ ସୁଦାମା ଓ ତାଙ୍କ ଭାଇ କବୀରଙ୍କ ସଂପର୍କରେ ଅନେକ ସମୟରେ କଥା ପ୍ରସଙ୍ଗରେ ଉଲ୍ଲେଖ କରିଛନ୍ତି । ସେ ତାଙ୍କ ନାତି କ୍ରାନ୍ତିଙ୍କ ଉଦ୍ଦେଶ୍ୟରେ ଜାନୁୟାରୀ ମାସ ୧୯ ତାରିଖ, ୧୯୯୮ ମସିହାରେ ତାଙ୍କ ଜେଜେ ଓ ଜେଜେଙ୍କ ଭାଇଙ୍କ ସଂପର୍କରେ ଉଲ୍ଲେଖ କରିବାକୁ ଯାଇ ଲେଖିଛନ୍ତି, *"ତୁମେ ଜାଣ ସୁଦାମା ହେଉଛନ୍ତି ଶ୍ରୀକୃଷ୍ଣଙ୍କର ପିଲାବେଳର ଜଣେ ଘନିଷ୍ଠ ବନ୍ଧୁ ଏବଂ କବୀର ହେଉଛନ୍ତି ଭାରତର ମଧ୍ୟଯୁଗର ଜଣେ ବିଶିଷ୍ଟ ସମାଜ ସଂସ୍କାରକ ଓ ଧାର୍ମିକ ଗୁରୁ ।"*

*"ଏଇ ଦୁଇଜଣଙ୍କ ନାମ ପଛରେ ଯୋଡ଼ା ହୋଇଛି ଅନେକ କଥା ଓ କାହାଣୀ । ସୁଦାମା ଜଣେ ଗରିବ ଲୋକ ହେଲେ ମଧ୍ୟ କୃଷ୍ଣଙ୍କର ଶ୍ରେଷ୍ଠ ଭକ୍ତ ଥିଲେ । ଜଣେ ବାପା ତା'ର ପିଲାଙ୍କ ନାମକରଣ ସମୟରେ ସେହି ନାମକରଣର ସାର୍ଥକତା ସେମାନଙ୍କ ପିଲାଙ୍କ ମଧ୍ୟରେ ସାଧାରଣତଃ ଦେଖିବାକୁ ଚାହିଁଥାନ୍ତି । ମୋର ପ୍ରପିତାମହ କେବେ ଚାହିଁ ନ ଥିବେ ଯେ ତାଙ୍କ ପୁଅମାନେ ରାମ କିମ୍ବା କୃଷ୍ଣଙ୍କ ଅନୁରୂପ ହେବେ । କିନ୍ତୁ ସେ ନିଶ୍ଚିତ ଭାବେ ଚାହିଁଥିବେ ଯେ ସେମାନେ ରାମ୍ ଓ କୃଷ୍ଣଙ୍କ ପରି ସତ୍ୟାନୁଗ୍ରାହୀ ଓ ସତ୍ ଚରିତ୍ରର ମଣିଷ ହେବେ । ଯାହାକି ସେହି ପରମ କାରୁଣିକ ଈଶ୍ୱରଙ୍କ ଦୟାରୁ ହୋଇପାରିବ । ସେହିପରି ଅନ୍ୟନାମ କବୀର ହେଉଛି ଅଧିକ ତାତ୍ପର୍ଯ୍ୟପୂର୍ଣ୍ଣ । କବୀର ଥିଲେ ଉତ୍ତର ପ୍ରଦେଶର ତନ୍ତୁବାୟ ପରିବାରରେ ଏକ ଜନ୍ମିତ ବ୍ୟକ୍ତି । ତଥାପି ସେ ସୁଦୂର ଓଡ଼ିଶାର ଜଣେ ହିନ୍ଦୁ ବ୍ରାହ୍ମଣଙ୍କ ଚିନ୍ତା ଓ ଚେତନାରେ ଉଚ୍ଚ ଆସନ ପାଇ ପାରିଥିଲେ । ଏଥିରୁ କିପରି ଜ୍ଞାନ ଓ ସଂସ୍କୃତି ବହି, ରେଡ଼ିଓ ଓ ବୈଦ୍ୟୁତିକ ମାଧ୍ୟମ ବିନା ପ୍ରସାରିତ ହୁଏ, ତାହା ଜଣାପଡ଼େ । ପୁନଶ୍ଚ ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ, ଭାରତୀୟ ମନ ବିଭିନ୍ନ ଉତ୍ସରୁ ଜ୍ଞାନ ଓ ଆଲୋକ ଗ୍ରହଣ କରିଥାଏ । ଏହା ଫଳରେ ଭାରତୀୟମାନେ ଏକ ଈଶ୍ୱର ଓ ଏକ ମଣିଷ ସମାଜ ଉପରେ ବିଶ୍ୱାସ ସ୍ଥାପନ କରିଥାନ୍ତି । ଏହା ମଧ୍ୟ ତଥାକଥିତ ସଂକୁଚିତ ଜାତି ଧର୍ମଗତ ଧାରଣା ଉପରେ କୁଠାରଘାତ କରେ ।"*

ଏତଦ୍‌ବ୍ୟତୀତ ଶରତଙ୍କ ପରିବାର ଚଳଣି ମଧ୍ୟମ ଧରଣର ଥିଲା । ସେହି ପରିବାରର ଲୋକମାନେ ସାଧାରଣତଃ ବୁଦ୍ଧିଆ, ପରିଶ୍ରମୀ ଓ ଉଚ୍ଚାଭିଳାଷୀ ଥିଲେ । ସେମାନେ ପରସ୍ପର ପରସ୍ପରକୁ ସାହାଯ୍ୟ କରିବାରେ ଆନନ୍ଦ ପାଉଥିଲେ, ଯାହା ଏବେ କ୍ବଚିତ ପରିବାର ମଧ୍ୟରେ ଦେଖାଯାଏ । ଶରତଙ୍କ ବାପା ମହେଶ୍ୱର ତାଙ୍କ ସାନ ଭାଇ ହରିବନ୍ଧୁ ଯେତେବେଳେ ଅଧ୍ୟୟନ କରୁଥିଲେ, ସେତେବେଳେ ସାହାଯ୍ୟର ହାତ ବଢ଼ାଇଥିଲେ । ସେହି ହାତ ପୁଣି ମୁକ୍ତ ହସ୍ତରେ ଫେରି ଆସିଥିଲା ଶରତଙ୍କ ପାଖକୁ କକେଇ ହରିବନ୍ଧୁଙ୍କ ଦ୍ୱାରା ଯେତେବେଳେ ସେ କଲେଜ ସ୍ତରରେ ଅଧ୍ୟୟନ କରୁଥିଲେ ।

ଏହା ହିଁ ଥିଲା ସୁଦାମା ଓ କବୀରଙ୍କ ଦ୍ୱାରା ଅନୁସୃତ ଉଦାର ଚରିତ୍ରର ନିଦର୍ଶନ ଯାହାକି ବିଭିନ୍ନ ଭାବେ ଶରତଙ୍କ ପରିବାର ମଧ୍ୟରେ ପ୍ରତିଫଳିତ ହୋଇଅଛି ।

ନାତି କ୍ରାନ୍ତିଙ୍କ ପ୍ରତି ଜେଜେବାପା ଶରତ ଚନ୍ଦ୍ରଙ୍କ ଉପର୍ଯ୍ୟୁକ୍ତ ଚିଠିଗୁଡ଼ିକ ନାମକୁ ମାତ୍ର ଏକ ଆଳଙ୍କାରିକ ଚିଠି ନୁହେଁ । ତାହା ତାଙ୍କ ପ୍ରପିତାମହଙ୍କ ସାଂସ୍କୃତିକ, ଆଧ୍ୟାତ୍ମିକ ଓ ଐତିହ୍ୟ ସଂପନ୍ନ ପରମ୍ପରାର ଅମ୍ଳାନ ପ୍ରତ୍ୟର୍ପଣ । ଏଇଥିରେ ହିଁ ରହିଛି ଢ଼େଙ୍କାନାଳ ଜିଲ୍ଲା କେନ୍ଦୁଢ଼ିପ ଗ୍ରାମର ଦାଶ ପରିବାରର ପୃଷ୍ଠଭୂମି ଯାହାକି ଆଜି ଦାଶ ପରିବାରକୁ ଓଡ଼ିଶାରେ ଏକ ସମ୍ମାନଜନକ ସ୍ଥିତିରେ ଆଣି ପହଞ୍ଚାଇ ପାରିଛି ।

**ବାଲ୍ୟକାଳ ଓ ବିଦ୍ୟା ଅଧ୍ୟୟନ**

ଶରତ ଚନ୍ଦ୍ରଙ୍କ ପିତା ମହେଶ୍ୱର କେନ୍ଦୁଢ଼ିପ ଗ୍ରାମର ଜଣେ ସମ୍ମାନସ୍ପଦ ବ୍ୟକ୍ତି ଥିଲେ । ମାତ୍ର ଶିକ୍ଷକତା ଛଡ଼ା ପରବର୍ତ୍ତୀ ସମୟରେ ମୁଗୁପଦା ଗ୍ରାମର 'ସର୍ବରାକାର' ହିସାବରେ ଦାୟିତ୍ୱ ନିର୍ବାହ କରିଥିଲେ । ସେ କୋଡ଼ିଏ ବର୍ଷ ବୟସରେ ଜଣେ ଶିକ୍ଷକ ହେବାର ସୌଭାଗ୍ୟ ଅର୍ଜନ କରିଥିଲେ । ମାତା ରାଧାମଣି ଦେବୀ ଜିରାଳ ଗ୍ରାମର ଇନ୍ଦ୍ରମଣି ପଣ୍ଡାଙ୍କ କନ୍ୟା ଥିଲେ । ସେ ଜଣେ ଧର୍ମପ୍ରାଣା ମହିଳା ଥିଲେ । ଯୋଗ୍ୟ ସ୍ୱାମୀଙ୍କର ଯୋଗ୍ୟା ସ୍ତ୍ରୀ ହିସାବରେ ତାଙ୍କର ଆଖପାଖରେ ସୁନାମ ଥିଲା ।

ପିତା ମହେଶ୍ୱର ଓ ରାଧାମଣି ଦେବୀଙ୍କ କୋଳ ମଣ୍ଡନ କରି ତଳକୁ ତଳ ଚାରି ପୁଅ ଜନ୍ମ ଗ୍ରହଣ କରିଥିଲେ । ପ୍ରଥମ ପୁତ୍ର ଶରତ ଚନ୍ଦ୍ର ୧୯୩୦, ଦ୍ୱିତୀୟ ପୁତ୍ର ରଜତ ଚନ୍ଦ୍ର ୧୯୩୨, ତୃତୀୟ ପୁତ୍ର ଜଗତ ଚନ୍ଦ୍ର ୧୯୩୬ ଓ ଚତୁର୍ଥ ପୁତ୍ର ଅଦ୍ୱୈତଙ୍କ ଜନ୍ମ ୧୯୪୦ ମସିହାରେ ହୋଇଥିଲା । ଚାରି ଭାଇଙ୍କ ମଧ୍ୟରେ ବୟସର ବ୍ୟବଧାନ ଆପାତତଃ ଦୁଇ ଚାରି ବର୍ଷ ଥିଲା । ଏହା ଫଳରେ ସେମାନେ ପରସ୍ପର ପରସ୍ପରର ବାଲ୍ୟସାଥୀ ହୋଇ ଯାଇଥିଲେ । ହସ, ଖେଳକୁଦ ମଧ୍ୟରେ ଜୀବନଯାପନ କରୁଥିଲେ ।

ଶରତ ଚନ୍ଦ୍ର ଭୂମିଷ୍ଠ ହେବା ପରେ ପରେ ମାତା ରାଧାମଣି ଦେବୀଙ୍କର ସ୍ୱାସ୍ଥ୍ୟର ଅବସ୍ଥାରେ ଅବନତି ଦେଖାଦେଲା । ସେ ରୁଗ୍‌ଣ ଓ ଦୁର୍ବଳ ରହୁଥିବା ହେତୁ ଆଦରଣୀୟ ପ୍ରଥମ ସନ୍ତାନଙ୍କୁ ସ୍ତନପାନ କରାଇବା ପାଇଁ ସମର୍ଥ ନ ଥିଲେ । ତେଣୁ ସନ୍ତାନ ପ୍ରତି ଈଶ୍ୱର ରଖିଥିବା 'ପ୍ରଥମ କ୍ଷୀର' ଶିଶୁ ଶରତଙ୍କୁ ଦେଇଥିଲେ ସେହି ଗ୍ରାମର ଜଣେ ମାତୃତୁଲ୍ୟା ମହିଳା । ସେ ପରବର୍ତ୍ତୀ ସମୟରେ ତାଙ୍କ ପରିବାରର ଏକ ପ୍ରମୁଖ ଭୂମିକା ଲିଭାଇଥିଲେ । ଏତଦ୍‌ବ୍ୟତୀତ ତାଙ୍କ ଜୀବନର ଶୈଶବ ସେହି ଗ୍ରାମର ଅନ୍ୟ ଜଣେ ହରିଜନ ମହିଳାଙ୍କର କୋଳରେ ଅତିବାହିତ ହୋଇଥିଲା । ସେହି ହରିଜନ ମହିଳା ଜଣଙ୍କ ଶରତ ଚନ୍ଦ୍ର ଓ ତାଙ୍କର ଅନ୍ୟାନ୍ୟ ଭାଇମାନଙ୍କ ପାଖରେ ବହୁ ବର୍ଷ କାଳ ରହି ସେମାନଙ୍କ ପିଲାମାନଙ୍କର ସେବା ମଧ୍ୟ କରିଥିଲେ । ଶରତ ଚନ୍ଦ୍ରଙ୍କ ପିତାଙ୍କ ମୃତ୍ୟୁ ପର୍ଯ୍ୟନ୍ତ ସେହି ମହିଳା ଜଣକ ତାଙ୍କ ଘରେ ସମ୍ମାନର ସହିତ ରହିଥିଲେ । ତାଙ୍କୁ ସମସ୍ତେ 'ଜମେଇ ମା' ବୋଲି ସମ୍ବୋଧନ କରୁଥିଲେ । ଏହି ମହାର୍ଘ ସ୍ମୃତିକୁ ଚାରଣ କଲାବେଳେ ଶରତ ଚନ୍ଦ୍ର କହିଛନ୍ତି, *"ଈଶ୍ୱର ଆମ ପାଖକୁ ତାଙ୍କର ଚାରିବାହୁ ପ୍ରସାରିତ କରି ସାହାଯ୍ୟ କରିବାକୁ ଆସନ୍ତି ନାହିଁ । ସେ କେବଳ ତାଙ୍କର ପ୍ରତିନିଧିମାନଙ୍କୁ ପଠାଇଥାନ୍ତି । ସେହିପରି ସେ ଆମ ପରିବାରକୁ ତାଙ୍କ ପ୍ରତିନିଧି ହିସାବରେ ଯାହାକୁ ପଠାଇଥିଲେ, ସେ ହେଉଛନ୍ତି, ଜମେଇ ମାଆ ।"*

ଶରତଙ୍କ ବିଦ୍ୟାରମ୍ଭ ହୋଇଥିଲା ୧୯୩୪ ମସିହାରେ । ସେ ଚାରିବର୍ଷ ବୟସରେ ଦିଘି ନିମ୍ନ ପ୍ରାଥମିକ ବିଦ୍ୟାଳୟରେ ବିଦ୍ୟାରମ୍ଭ କରିଥିଲେ । ଶିକ୍ଷା ଲାଭର ପ୍ରଥମ ତିନି ବର୍ଷ ଶିଶୁ, ପ୍ରଥମ ଓ ଦ୍ୱିତୀୟ ଶ୍ରେଣୀ ଏଇ ଦିଘି ନିମ୍ନ ପ୍ରାଥମିକ ବିଦ୍ୟାଳୟରେ କଟିଥିଲା, ମାତ୍ର ତୃତୀୟ ଶ୍ରେଣୀ ହେଲା ବେଳକୁ ସ୍କୁଲରେ ଶିକ୍ଷକମାନେ ନ ରହିବା କାରଣ ହେତୁ ଦୂରଦ୍ରଷ୍ଟା ପିତା ଶରତଙ୍କୁ ନେଇ ଜିରାଳସ୍ଥିତ ନିମ୍ନ ପ୍ରାଥମିକ ଶିକ୍ଷା ମାମୁଘରେ ରଖି ସମାପନ କରିଥିଲେ ।

ସେ ସମୟରେ ପ୍ରଚଳିତ ପ୍ରାଥମିକ ଶିକ୍ଷା ଅନୁଯାୟୀ ତିନି ଶ୍ରେଣୀଭୁକ୍ତ ନିମ୍ନ ପ୍ରାଥମିକ ବିଦ୍ୟାଳୟ ଥିଲା । ଏଥିରେ ଏକ ଶିଶୁ ଶ୍ରେଣୀ ମଧ୍ୟ ଥିଲା । ଏହା ଫଳରେ ଜଣେ ନିମ୍ନ ପ୍ରାଥମିକ ଶିକ୍ଷା ସାରିବାକୁ ଶିଶୁ ଶ୍ରେଣୀ, ପ୍ରଥମ ଶ୍ରେଣୀ, ଦ୍ୱିତୀୟ ଶ୍ରେଣୀ ଏବଂ ତୃତୀୟ ଶ୍ରେଣୀରେ ବିଦ୍ୟାଧ୍ୟୟନ କରିବାକୁ ପଡୁଥିଲା । ଏହିପରି ନିମ୍ନ ପ୍ରାଥମିକ ଶିକ୍ଷା ସମାପ୍ତ କରିବା ନିମନ୍ତେ ଚାରିବର୍ଷ ଲାଗୁଥିଲା । ଏହାର ପରବର୍ତ୍ତୀ ଉଚ୍ଚ ଶ୍ରେଣୀ ଥିଲା ଚତୁର୍ଥ ଓ ପଞ୍ଚମ ଶ୍ରେଣୀ ଯାହାକି ଉଚ୍ଚ ପ୍ରାଥମିକ ବିଦ୍ୟାଳୟ ଅନ୍ତର୍ଭୁକ୍ତ ଥିଲା; କିନ୍ତୁ ଆଜିକାଲି ଭଳି ଏଇ ଶ୍ରେଣୀଗୁଡ଼ିକରେ ଇଂରାଜୀ ଶିକ୍ଷା ପ୍ରଚଳିତ ନ ଥିଲା । ସଂପ୍ରତି

ଓଡ଼ିଆ ମାଧ୍ୟମ ବିଦ୍ୟାଳୟଗୁଡ଼ିକରେ ସରକାର ପ୍ରଥମ ଶ୍ରେଣୀଠାରୁ ଇଂରାଜୀ ଶିକ୍ଷା ପ୍ରଚଳିତ କରିଛନ୍ତି । ସେହିପରି ରାଜ୍ୟରେ ଖୁବ୍ କମ୍ ମଧ୍ୟ ଇଂରାଜୀ ବିଦ୍ୟାଳୟ ଥିଲା । ସେହିସବୁ ମଧ୍ୟ ଇଂରାଜୀ ବିଦ୍ୟାଳୟରେ ଚତୁର୍ଥ ଶ୍ରେଣୀଠାରୁ ସପ୍ତମ ଶ୍ରେଣୀ ପର୍ଯ୍ୟନ୍ତ ବିଦ୍ୟାଧ୍ୟୟନର ସୁବିଧା ସୁଯୋଗ ଥିଲା । ତେଣୁ ଉଚ୍ଚ ପ୍ରାଥମିକ ଶିକ୍ଷା ପାଇଥିବା ପିଲାମାନଙ୍କୁ ଯଦି ମଧ୍ୟ ଇଂରାଜୀ ବିଦ୍ୟାଳୟରେ ଅଧ୍ୟୟନ କରିବାକୁ ପଡୁଥିଲା, ତେବେ ସେମାନଙ୍କୁ ପୁଣି ଥରେ ମଧ୍ୟ ଇଂରାଜୀ ବିଦ୍ୟାଳୟରେ ଚତୁର୍ଥ ଶ୍ରେଣୀରେ ଭର୍ତ୍ତି ହେବାକୁ ପଡୁଥିଲା । କାରଣ ସେଇସବୁ ମଧ୍ୟ ଇଂରାଜୀ ବିଦ୍ୟାଳୟରେ ଇଂରାଜୀ ଶିକ୍ଷାଦାନ ଚତୁର୍ଥ ଶ୍ରେଣୀରୁ ଆରମ୍ଭ କରାଯାଉଥିଲା । ଏହିପରି ଜଣେ ଛାତ୍ର ଯଦି ଉଚ୍ଚଶିକ୍ଷା ଚାହୁଁଥିଲେ ତେବେ ମଧ୍ୟ ଇଂରାଜୀ ବିଦ୍ୟାଳୟରେ ନାମ ଲେଖାଇବା ଯୋଗୁଁ ଓ ଚତୁର୍ଥ ଶ୍ରେଣୀରେ ଭର୍ତ୍ତି ହେବାଯୋଗୁଁ ତାଙ୍କର ଉଚ୍ଚ ପ୍ରାଥମିକ ବିଦ୍ୟାଳୟରେ ପଢ଼ିଥିବା ଦୁଇ ବର୍ଷ ନଷ୍ଟ ହେଉଥିଲା । ଏହା ଥିଲା ସେ ସମୟର ଏକ ବିଚିତ୍ର ବ୍ୟବସ୍ଥା । ଏହି ବ୍ୟବସ୍ଥା ଫଳରେ ମଧ୍ୟ ଇଂରାଜୀ ଶିକ୍ଷା ସମାପ୍ତ କରିବାକୁ ଜଣକୁ ଦଶବର୍ଷିୟା ବିଦ୍ୟାଳୟ ଶିକ୍ଷା ଲାଭ କରିବାକୁ ପଡୁଥିଲା । ଜଣେ ନିମ୍ନ ପ୍ରାଥମିକ ବିଦ୍ୟାଳୟ ପାଠ୍ୟକ୍ରମ ଶେଷ ପରେ ମଧ୍ୟ ଇଂରାଜୀ ବିଦ୍ୟାଳୟର ଚତୁର୍ଥ ଶ୍ରେଣୀରେ ଭର୍ତ୍ତି ହେବାର ବ୍ୟବସ୍ଥା ଥିଲା ।

ଶରତ ଚନ୍ଦ୍ର ନିମ୍ନ ପ୍ରାଥମିକ ଶିକ୍ଷା ସମାପ୍ତ ପରେ ମଧ୍ୟ ଇଂରାଜୀ ବିଦ୍ୟାଳୟରେ ଅଧ୍ୟୟନ କରିବା ନିମନ୍ତେ ପ୍ରୟାସ କରିଥିଲେ । ସେଥିପାଇଁ ପିତା ମହେଶ୍ୱର ତାଙ୍କୁ ନେଇ କାମାକ୍ଷାନଗରସ୍ଥିତ 'ମଡ଼ି' ମଧ୍ୟ ଇଂରାଜୀ ବିଦ୍ୟାଳୟରେ ନାମ ଲେଖାଇ ଥିଲେ । ଏହା ସମଗ୍ର କାମାକ୍ଷାନଗର ସବ୍‌ଡ଼ିଭିଜନ ଅନ୍ତର୍ଗତ ଏକମାତ୍ର ମଧ୍ୟ ଇଂରାଜୀ ବିଦ୍ୟାଳୟ ଥିଲା । ମଡ଼ି ୧୯୪୧ ମସିହାରେ କାମାକ୍ଷା ନଗରରେ ପରିଣତ ହେଲା । ଏହା ସେତେବେଳର ଢେଙ୍କାନାଳର ରାଜକୁମାର କାମାକ୍ଷାପ୍ରସାଦ ସିଂହଦେଓଙ୍କ ଜନ୍ମ ଅବସରରେ ନାମିତ କରାଯାଇଥିଲା ।

ମଡ଼ି ମଧ୍ୟ ଇଂରାଜୀ ବିଦ୍ୟାଳୟରେ ଶରତ ଚନ୍ଦ୍ର କିଛି ମାସ ଅଧ୍ୟୟନ କରିଥିଲେ । ମଡ଼ି ଅଞ୍ଚଳ ବଣଜଙ୍ଗଲ ପରବେଶ ମଧ୍ୟରେ ଥିଲା । ଏହା ଏକ ମେଲେରିଆ ପ୍ରବଣ ଅଞ୍ଚଳ ମଧ୍ୟ ଥିଲା । ସେ ସମୟରେ ସମଗ୍ର ରାଜ୍ୟ ଓ ଦେଶ ମେଲେରିଆ ପ୍ରବଣ ଥିବା ହେତୁ ଅନେକ ଲୋକ ଅକାଳରେ ମୃତ୍ୟୁବରଣ କରୁଥିଲେ । ସଂପ୍ରତି ଜାତୀୟ ସରକାର ମେଲେରିଆ ଉଚ୍ଛେଦ କାର୍ଯ୍ୟକ୍ରମ ଫଳରେ ସଂପୂର୍ଣ୍ଣ ଭାବେ ମେଲେରିଆ ନିୟନ୍ତ୍ରଣକୁ ଆଣିଛନ୍ତି । ଆମ ଦେଶରେ ପ୍ରଥମେ ୧୯୫୩ ମସିହାରେ ଜାତୀୟ ମେଲେରିଆ ନିୟନ୍ତ୍ରଣ କାର୍ଯ୍ୟକ୍ରମ ଆରମ୍ଭ କରାଯାଇଥିଲା ଏବଂ ଆନ୍ତର୍ଜାତିକ କ୍ଷେତ୍ରରେ ଏହି କାର୍ଯ୍ୟକ୍ରମ

''ବିଶ୍ୱ ମେଲେରିଆ ଉଚ୍ଛେଦ କାର୍ଯ୍ୟକ୍ରମ'' ହିସାବରେ ୧୯୫୫ ମସିହାରୁ ଆରମ୍ଭ କରାଯାଇଥିଲା ।

ମଡ଼ି ମଧ ଇଂରାଜୀ ବିଦ୍ୟାଳୟ ଛାତ୍ରାବାସରେ ରହି କିଛି ଦିନ ଅଧ୍ୟୟନ କରିବା ସମୟରେ ସେ ମେଲେରିଆ ଦ୍ୱାରା ସଂକ୍ରମିତ ହେଲେ । ଏହା ଫଳରେ ସେ ବାଧ ହୋଇ ପାଠପଢ଼ା ଛାଡ଼ି ନିଜ ଗାଁକୁ ଚାଲି ଆସିଥିଲେ । ସେ ସମୟରେ ଏହି ରୋଗର ପାଦୁର୍ଭାବ ଏତେ ଅଧିକ ଥିଲା ଯେ ସେ ମାସାଧିକ କାଳ ମେଲେରିଆ ରୋଗ ଭୋଗିଥିଲେ । ସେଥିରୁ ମୁକ୍ତ ହେବା ପାଇଁ ପ୍ରାୟତଃ ତାଙ୍କୁ ଏକ ବର୍ଷ ଲାଗିଥିଲା ।

ମେଲେରିଆରୁ ସଂପୂର୍ଣ୍ଣ ମୁକ୍ତ ହେବା ପରେ ପିତା ମହେଶ୍ୱର ଶରତଙ୍କ ପୁନଃ ବିଦ୍ୟାଧ୍ୟୟନ ବାଇଁସିଆ ଗ୍ରାମରେ ଅବସ୍ଥିତ ଉଚ୍ଚ ପ୍ରାଥମିକ ବିଦ୍ୟାଳୟରେ କରାଇଥିଲେ । ଏହି ବିଦ୍ୟାଳୟଟି କେନ୍ଦୁଡ଼ିପ ଗ୍ରାମ ଓ ବ୍ରାହ୍ମଣୀ ନଦୀର ଆରପାର୍ଶ୍ୱରେ ଅବସ୍ଥିତ ଥିଲା । ବାଇଁସିଆ ଗ୍ରାମଟି କେନ୍ଦୁଡ଼ିପଠାରୁ ପ୍ରାୟ ତିନି କିଲୋମିଟର ଦୂରରେ ଥିବା ହେତୁ ଶରତ ପିଉସୀ ଘରେ ରହି ଉଚ୍ଚ ପ୍ରାଥମିକ ଶିକ୍ଷା ଲାଭ କରିଥିଲେ ।

ବାଇଁସିଆ ଗ୍ରାମର ଉଚ୍ଚ ପ୍ରାଥମିକ ବିଦ୍ୟାଳୟରେ ପଢୁଥିବା ବେଳେ ଶରତ ଏକ ଦୈବୀ ଦୁର୍ଘଟଣାରୁ ରକ୍ଷା ପାଇ ଯାଇଥିଲେ । ସେତେବେଳକୁ ତାଙ୍କୁ ହୋଇଥାଏ ମାତ୍ର ଦଶ ବର୍ଷ ।

ସେ ସମୟରେ ପିଲାମାନେ ରାତିରେ ବିଦ୍ୟାଳୟରେ ପଢ଼ିବା ପାଇଁ ଘରୁ ଲଣ୍ଠଣ ନେଇ ଯାଆନ୍ତି । ଶରତ ସେଦିନ ଶରୀର ଖରାପ ସତ୍ତ୍ୱେ ରାତି ପଢ଼ିବା ନିମନ୍ତେ ଯାଇଥାନ୍ତି । ବର୍ଷା ହେତୁ ଶରତ ଜଣଙ୍କ ଦାଣ୍ଡ ପିଣ୍ଡାରେ ବସି ଅପେକ୍ଷା କରିବାକୁ ବାଧ ହୋଇଥିଲେ ।

ବର୍ଷା ଛାଡ଼ିବାରେ ଡେରି ହେବା ହେତୁ ଶରତ ପାଖରେ ଥିବା ତଉଲିଆ ଖଣ୍ଡେ ଘୋଡ଼େଇ ହୋଇ ସେଇ ପିଣ୍ଡାରେ ଶୋଇ ପଡ଼ିଲେ । କିଛି କ୍ଷଣପରେ ଘରର ମାଲିକ ବାହାରକୁ ଆସି ଝାପ୍‌ସା ଅନ୍ଧକାରରେ ଠିକ୍ ଭାବେ ଦାଣ୍ଡ ପିଣ୍ଡାର ସ୍ଥିତି ଆକଳନ କରି ପାରିଲେ ନାହିଁ । ଭାବିଲେ ତାଙ୍କ ଗାଁରେ ସଦ୍ୟ ମାତିଥିବା ପାଗଳା କୁକୁରଟି ଆସି ଶୋଇ ଯାଇଅଛି । ତେଣୁ ସେ ଶରତଙ୍କୁ ପାଗଳା କୁକୁର ଭାବି ଏକ ବଡ଼ ପଥର ଆଣି କଚାଡ଼ିବାକୁ ଗଲାବେଳେ ତତ୍‌କ୍ଷଣାତ୍ ଶରତଙ୍କୁ ଆଗରୁ ସେଠାରେ ଦେଖିଥିବା ସାହିର ଜଣେ ଲୋକ ପାଟି କରି ଉଠିଲେ । କହିଲେ, "ଆପଣ ନ ବୁଝି ନ ଶୁଝି ପଥର ଫିଙ୍ଗିବା ବନ୍ଦ କରନ୍ତୁ । ସେଠି ପିଲାଟିଏ ଶୋଇଛି । ସେ ଆପଣ ଭାବୁଥିବା ପାଗଳା କୁକୁର ନୁହେଁ ।" ଏହିପରି ଏକ ନିଶ୍ଚିତ ବିପଦରୁ ବାଳକ ଶରତ ରକ୍ଷା ପାଇ

ଯାଇଥିଲେ । ସେଦିନ ରାତିରେ ସେହି ଲୋକଟି ଆଉ କାଳ ବିଳମ୍ବ ନ କରି ବାଳକ ଶରତକୁ ବାଇଁସିଆ ସ୍କୁଲରେ ଛାଡ଼ି ଆସିଥିଲେ ।

**ଜ୍ଞାନର ଉନ୍ମେଷ ଓ ବିକାଶ ପଥେ : ଭୁବନ ମଧ୍ୟ ଇଂରାଜୀ ବିଦ୍ୟାଳୟ**

ସେ ସମୟରେ ଢେଙ୍କାନାଳ ଜିଲ୍ଲାସ୍ଥ ଭୁବନ ଗ୍ରାମରେ ଏକ ନୂତନ ମଧ୍ୟ ଇଂରାଜୀ ବିଦ୍ୟାଳୟ ଖୋଲାଯାଇଥିଲା । ସେତେବେଳେ ସମଗ୍ର ଏସିଆ ଭୂଖଣ୍ଡରେ ଭୁବନ ସବୁଠାରୁ ବଡ଼ ଗ୍ରାମ ରୂପେ ପରିଚିତ ଥିଲା । ଏହି ଗ୍ରାମଟି ଶରତଙ୍କ ଗ୍ରାମଠାରୁ ପ୍ରାୟ ୧୫ କିଲୋମିଟର ଦୂରରେ ଅବସ୍ଥିତ ଥିବା ହେତୁ ସେ ବିଦ୍ୟାଳୟର ଛାତ୍ରାବାସରେ ରହି ବିଦ୍ୟାଅଧ୍ୟୟନ କରୁଥିଲେ । ସେତେବେଳେ ସେ ସ୍ୱକୀୟ ଜ୍ଞାନ ଓ ଉଚ୍ଚ ବିଚାରଧାରା ଯୋଗୁଁ ଶିକ୍ଷକ ଓ ବିଦ୍ୟାଳୟର ସାନବଡ଼ ଶିକ୍ଷାର୍ଥୀଙ୍କ ଶ୍ରଦ୍ଧାଭାଜନ ହୋଇ ପାରିଥିଲେ ।

ଶିକ୍ଷାନୁରାଗୀ ପିତା ମହେଶ୍ୱର ତାଙ୍କର ପ୍ରଥମ ପୁତ୍ରଙ୍କ ମଧ୍ୟରେ ସୃଜନଶୀଳତା ଓ ପର୍ଯ୍ୟବେକ୍ଷଣର ଅନେକ ଶକ୍ତି ଦେଖିଥିଲେ । ସେଥିପାଇଁ ସେ ନିଜର କର୍ମ ପ୍ରବାହରେ ତାଙ୍କ ମନ ମଧ୍ୟରେ ବିକାଶର ଯେଉଁ ଚାରାଗଛଟି ଲଗାଇଥିଲେ ତାହାର ପର୍ଯ୍ୟାପ୍ତ ଉନ୍ମେଷ ଓ ବିକାଶ ଘଟିଥିଲା ଭୁବନସ୍ଥ ମଧ୍ୟ ଇଂରାଜୀ ବିଦ୍ୟାଳୟରେ ।

ଏ ସଂପର୍କରେ ଶରତ ଚନ୍ଦ୍ର ଲେଖିଛନ୍ତି, *"ମୁଁ ଯେତେବେଳେ ଭୁବନ ମଧ୍ୟ ଇଂରାଜୀ ବିଦ୍ୟାଳୟରେ ପଞ୍ଚମ ଶ୍ରେଣୀର ଛାତ୍ର ଥିଲି, ସେତେବେଳେ ଉଚ୍ଚ ଶ୍ରେଣୀରେ ପଢୁଥିବା ଶିକ୍ଷାର୍ଥୀଗଣ ଜାଣିଥିଲେ ଯେ ମୁଁ ହେଉଛି ଗଣିତରେ ଏକ ପାରଙ୍ଗମ ଛାତ୍ର । ଏକଦା ମୋତେ ସେହି ବିଦ୍ୟାଳୟରେ ଅଧ୍ୟୟନ କରୁଥିବା ଜନୈକ ୬ଷ୍ଠ ଶ୍ରେଣୀର ଛାତ୍ର ତାଙ୍କ ପାଇଁ କଷ୍ଟକର ମନେ ହେଉଥିବା ଗଣିତର ଏକ ସମାଧାନ କରିଦେବା ନିମନ୍ତେ କହିଥିଲେ । କହିବା ବାହୁଲ୍ୟ ଯେ ସେ ଜଣେ ମେଧାବୀ ଛାତ୍ର ମଧ୍ୟ ଥିଲେ । ସେଦିନ ପୂର୍ବାହ୍ନ ୧୦.୩୦ଟା ଠାରୁ ମୁଁ ସେହି ସମସ୍ୟାର ସମାଧାନ କରିବା କାର୍ଯ୍ୟରେ ଲାଗି ପଡ଼ିଲି । କାରଣ ଏହା ଥିଲା ମୋ ପ୍ରତି ଏକ ଆହ୍ୱାନ ସ୍ୱରୂପ । ମୁଁ ମୋ ଚାରି କଡ଼ରେ ଘଟୁଥିବା ଘଟଣା ପ୍ରତି ସଚେତନ ନ ଥିଲି । ଏହି ସମୟରେ ଆମକୁ ଶିକ୍ଷାଦାନ କରୁଥିବା ଓଡ଼ିଆ ଶିକ୍ଷକ ଆସିଲେ । ମୁଁ ତାଙ୍କୁ ଶ୍ରେଣୀଗୃହକୁ ପ୍ରବେଶ କରିଥିବାର କଥା ଲକ୍ଷ୍ୟ କରି ନ ଥିଲି । କାରଣ ମୋ ମନ ସେତେବେଳେ ଘୂରି ବୁଲୁଥିଲା ଗଣିତ ଇଲାକାରେ । ସେ ମୋ ପାଖକୁ ଆସିଲେ, ମୋତେ ଚାପୁଡ଼ାଟିଏ ମାରିଲେ ଏବଂ ଠିଆ ହୋଇ ରହିବାକୁ କହିଲେ । ସେତେବେଳେ ମୁଁ ଜାଣିଲି ମୋର ସ୍ଥିତି କେଉଁଠାରେ ଥିଲା । କିନ୍ତୁ ଗଣିତଟି ସମାଧାନ କରିବାର ପଥରୁ ମୁଁ ଓହରି ଯାଇ ନ ଥିଲି । ଖାଇବା ଛୁଟି ସମୟରେ ସେହି ଜଟିଳ ଗାଣିତିକ ପ୍ରଶ୍ନର ସମାଧାନ କରି ପାରିଥିଲି ଏବଂ ତାହା ସେହି ଛାତ୍ରଙ୍କୁ ଦେଇ ପାରିଥିଲି ।"*

ସେହିପରି ଶରତ ଚନ୍ଦ୍ରଙ୍କ ଆଦ୍ୟ ଜୀବନରେ ଘଟିଥିବା ଶିକ୍ଷା ଓ ଶିକ୍ଷଣ ସଂପର୍କୀୟ କେତେକ ମହାର୍ଘ ଅନୁଭୂତିକୁ ସେ ଜୀବନ ସାରା ଭୁଲି ପାରି ନ ଥିଲେ । ସେହି

ଅନୁଭୂତି ମଧ୍ୟରେ ସେ ୬ଷ୍ଠ ଶ୍ରେଣୀରେ ପଢ଼ିଥିବା ମହାତ୍ମାଗାନ୍ଧୀଙ୍କ ଆତ୍ମଜୀବନୀର କେତେକ ଅଂଶ କିପରି ତାଙ୍କ ମଧ୍ୟରେ ଶିକ୍ଷା ଓ ଶିକ୍ଷଣ ସଂପର୍କୀୟ ଦିଗ୍‌ଦର୍ଶନ ଦେଇଥିଲା, ତାହାର ଦୃଷ୍ଟାନ୍ତ ବିଭିନ୍ନ ସମୟରେ ଅନ୍ୟମାନଙ୍କ ମଧ୍ୟରେ ଆଗ୍ରହର ସହିତ କଥା ପ୍ରସଙ୍ଗରେ ବାଣ୍ଟିଥାନ୍ତି ।

ସେ ଏଇ ଶ୍ରେଣୀରେ ପଢୁଥିଲାବେଳେ ଜାଣିଥିଲେ ଯେ ମହାତ୍ମାଗାନ୍ଧୀ ତାଙ୍କର କଦର୍ଯ୍ୟ ହସ୍ତାକ୍ଷର ନିମନ୍ତେ ଅନେକ ସମୟରେ ଲଜ୍ଜିତ ରହୁଥିଲେ । ନିଜର ହସ୍ତାକ୍ଷରକୁ ଯେତେ ସଜାଡ଼ିବାକୁ ଚେଷ୍ଟା କଲେ ମଧ୍ୟ ପାରି ନ ଥିଲେ । ଏ ପ୍ରସଙ୍ଗରେ ଭୁବନ ମଧ୍ୟ ଇଂରାଜୀ ବିଦ୍ୟାଳୟର ଶିକ୍ଷକ ବଂଶୀଧର ଶତପଥୀ ଯେତେବେଳେ ଶ୍ରେଣୀ ଗୃହରେ ଶିକ୍ଷାଦାନ କରୁଥିଲେ, ହଠାତ୍ ତାଙ୍କ ପାଟିରୁ ହସି ହସି ବାହାରି ଆସିଥିଲା, "ମୋହନ ଦାସ ଗାନ୍ଧି ଲଜ୍ଜିତ ଥିଲେ ଏଇଥିପାଇଁ ଯେ ତାଙ୍କର ହସ୍ତାକ୍ଷର ତୁମ ଶ୍ରେଣୀର ଶରତ ହସ୍ତାକ୍ଷର ପରି ଥିଲା, ମାତ୍ର ଶଶି ପରି ନ ଥିଲା ।"

ବାସ୍ ! ଶତପଥୀ ସାରଙ୍କ କଥା କେଇପଦକ ଗୋଟିଏ ଅଗ୍ନି କଣିକା ବିରାଟ ସ୍ଫୁଲିଙ୍ଗ ସୃଷ୍ଟି କଲାଭଳି ତରୁଣ ଶରତଙ୍କ ହୃଦୟକୁ ସ୍ପର୍ଶ କଲା । ସେ ସେଇଠି ସେହି ମୁହୂର୍ତ୍ତରେ ଶପଥ ନେଇଲେ ତାଙ୍କର ପୂଜ୍ୟ ଶିକ୍ଷକଙ୍କ ବ୍ୟଙ୍ଗାତ୍ମକ ବାଣୀକୁ ସାମାନ୍ୟ ଥଟ୍ଟା ପରିହାସର ବାଣୀ ରୂପେ ଗ୍ରହଣ ନ କରି ଏକ ମାଙ୍ଗଳିକ ମୁହୂର୍ତ୍ତର ଆହ୍ୱାନ ରୂପେ ଗ୍ରହଣ କରିବେ । କିପରି ନିଜର ହସ୍ତାକ୍ଷରକୁ ବଦଳାଇ ଶ୍ରେଣୀରେ ପ୍ରଥମ ହେଉଥିବା ଛାତ୍ର ଶଶୀକୁ ପଛରେ ପକାଇ ପ୍ରଥମ ହେବାର ଗୌରବ ଲାଭ କରିବେ ।

ସେଥିପାଇଁ ସେ ସମୟରେ ମନ ମଧ୍ୟରେ ଦେଖାଯାଇଥିବା ଭାବନାକୁ ପୁସ୍ତକ "ଲେଟରସ୍ ଫ୍ରମ୍ ଏ ଗ୍ରାଣ୍ଡ ଫାଦର"ରେ ଏହିପରି ଉଲ୍ଲେଖ କରିଛନ୍ତି :

***"ଶଶୀ ହେଉଛି ସେହି ବାଳକ ଯିଏ କି ଶ୍ରେଣୀରେ ପ୍ରଥମ ହେଉଥିଲେ ଓ ତାହା ତାଙ୍କର ସୁନ୍ଦର ହସ୍ତାକ୍ଷର ନିମନ୍ତେ ସମ୍ଭବପର ହେଉଥିଲା । ଯଦିଓ ୬ଷ୍ଠ ଶ୍ରେଣୀରେ ମୁଁ ଇଂରାଜୀରେ ଶହେରୁ ପଞ୍ଚାଶୀ ମାର୍କ ରଖି ଦ୍ୱିତୀୟ ସ୍ଥାନ ଅଧିକାର କରିଥିଲି, ମାତ୍ର ମୋର କଦର୍ଯ୍ୟ ହସ୍ତାକ୍ଷର ଯୋଗୁଁ ପ୍ରଥମ ହେବା ମୋ ପକ୍ଷରେ ସମ୍ଭବପର ହୋଇ ନ ଥିଲା ।***

***ଏହି ଦୃଷ୍ଟିକୋଣରୁ, ମୁଁ ଶିକ୍ଷକଙ୍କ ଆହ୍ୱାନକୁ ଏକ ଗୁରୁତର ପ୍ରସଙ୍ଗ ରୂପେ ନେଇଥିଲି ଏବଂ ଅତି ସତର୍କତାରେ ନିରବରେ ମୋର ହସ୍ତାକ୍ଷରକୁ ଉନ୍ନତ କରିବା ନିମନ୍ତେ ଚେଷ୍ଟା କରୁଥିଲି । କିଛି ମାସର ଅଭ୍ୟାସ ପରେ ମୁଁ ଇଂରାଜୀ ହସ୍ତାକ୍ଷରରେ ଥିବା ସର୍ବମୋଟ ୧୦ ନମ୍ବରରୁ ୯ ନମ୍ବର ପାଇଥିଲି । ଏହା ଫଳରେ ମୋ ମନରେ ଏଇ ସଫଳତା ନିମନ୍ତେ ଆନନ୍ଦ ସୃଷ୍ଟି ହୋଇଥିଲା । ଏଇ ସଫଳତା ହିଁ ମୋ ମଧ୍ୟରେ ଏକ ପ୍ରତିଯୋଗିତାମୂଳକ ଗୁଣର ବିକାଶ ସୃଷ୍ଟି କରିଥିଲା ଯାହାକି ଥିଲା ମୋ ଜୀବନର ଏକ ନୂତନ ଅଧ୍ୟାୟ ।***

*ମୁଁ ନିଜ ମନକୁ ନିଜେ ପ୍ରଶ୍ନ କଲି, କାହିଁକି ଶଶୀ ଶ୍ରେଣୀରେ ପ୍ରଥମ ହେବେ ? ଶରତ କାହିଁକି ହେବେ ନାହିଁ ? ଏହିପରି ଅନେକ ପ୍ରଶ୍ନ ମୁଁ ନିଜେ ନିଜକୁ ପଚାରି ମୋର ସମସ୍ୟାକୁ ବିଶ୍ଳେଷଣ କରିବାକୁ ଲାଗିଲି । ଶେଷରେ ଏକ ସିଦ୍ଧାନ୍ତରେ ପହଞ୍ଚିଲି ଯେ, ଶଶୀ ନିଶ୍ଚିତ ଭାବେ ସୁନ୍ଦର ହସ୍ତାକ୍ଷର ଯୋଗୁଁ ଓଡ଼ିଆ ଓ ଇତିହାସରେ ଅଧିକ ନମ୍ବର ପାଇବେ । ମୁଁ କିନ୍ତୁ ଇଂରାଜୀ ଏବଂ ଗଣିତରେ ଅପେକ୍ଷାକୃତ ଭଲ ନମ୍ବର ପାଇ ପାରିବି । ଏହା ଫଳରେ ଆମ ଦୁହିଁଙ୍କର ସ୍ଥିତି ପ୍ରାୟ ସମାନ ରହିବ । ମାତ୍ର ଭୂଗୋଳରେ ଯଦି ମୁଁ ଶଶୀଠାରୁ ଅପେକ୍ଷାକୃତ ଭଲ କରିବି, ତେବେ ମୁଁ ନିଶ୍ଚିତ ଭାବେ ପରୀକ୍ଷାରେ ଶଶୀଙ୍କୁ ଅତିକ୍ରମ କରିଯିବି ।"*

ତରୁଣ ଶରତଙ୍କ ମନରେ ଉଦ୍ରେକ ହୋଇଥିବା ସେଦିନର ଏହି ମୌଳିକ ପ୍ରଶ୍ନର ବିଶ୍ଳେଷଣାତ୍ମକ ଅଧ୍ୟୟନ ଯୋଗୁଁ ସେ ଶ୍ରେଣୀରେ ପ୍ରଥମ ହେବାର ଯେଉଁ ସ୍ୱପ୍ନ ଦେଖିଥିଲେ ତାହାର ପଥ ଓ ପାଥେୟ ତାଙ୍କୁ ଦେଖାଯାଇଥିଲା । ଭୂଗୋଳରେ ଶଶୀ ସୁନ୍ଦର ଅକ୍ଷର ଲେଖି ଭଲ ନମ୍ବର ରଖୁଥିଲେ ମଧ୍ୟ ସେ ଯଦି ମାନଚିତ୍ର ପ୍ରଦର୍ଶନ ପୂର୍ବକ ପ୍ରଶ୍ନଗୁଡ଼ିକର ଉତ୍ତର ଦେଇ ପାରିବେ, ତେବେ ତାହା ନିଶ୍ଚିତ ଭାବେ ପରୀକ୍ଷକଙ୍କ ଦ୍ୱାରା ବିଶେଷ ଗ୍ରହଣୀୟ ହେବ ଓ ସେ ଅଧିକ ନମ୍ବର ଶଶୀଙ୍କ ଅପେକ୍ଷା ଭୂଗୋଳରେ ରଖି ପାରିବେ । ଏହା ଥିଲା ତାଙ୍କର ଏକ ଗବେଷଣାତ୍ମକ ଅଧ୍ୟୟନ ଓ ଅନୁଶୀଳନ । ସେହି ଦୃଷ୍ଟିକୋଣରୁ ସେ କିଛି ମାସ ମାନଚିତ୍ର ଅଧ୍ୟୟନ ଓ ପ୍ରତିପାଦନ ନିମନ୍ତେ ନିଜର ଅଭ୍ୟାସ ଜାହିର ରଖିଲେ ।

ସେ ସମୟରେ ଖରାଦିନ ଥିବା ହେତୁ ସକାଳୁଆ ବିଦ୍ୟାଳୟ ହେଉଥିଲା । ସକାଳୁଆ ସ୍କୁଲ ପରେ ଯେତେବେଳେ ପିଲାମାନେ ଛାତ୍ରାବାସରେ ମଧ୍ୟାହ୍ନ ଭୋଜନ ପରେ ପରେ ଶୋଇବାକୁ ଯାଉଥିଲେ, ସେତେବେଳେ ସେ ମାନଚିତ୍ର ପ୍ରସ୍ତୁତି ନିମନ୍ତେ ସମୟ ବିତାଉଥିଲେ ଓ ବିଷୟକୁ ଆଖି ଆଗରେ ରଖି ବିଭିନ୍ନ ପ୍ରସଙ୍ଗ ଭିତ୍ତିକ ଓ ବିଷୟୀକୃତ ମାନଚିତ୍ରମାନ ଆଙ୍କି ପାରୁଥିଲେ । ତାହାହିଁ ତାଙ୍କୁ ତାଙ୍କର ବାଞ୍ଛିତ ଲକ୍ଷ୍ୟ ପାଖରେ ପହଞ୍ଚାଇ ପାରିଥିଲା । ପରବର୍ତ୍ତୀ ପରୀକ୍ଷାରେ ସେ ଶ୍ରେଣୀରେ ପ୍ରଥମ ହୋଇ ପାରିଥିଲେ ।

ଏ ସଂପର୍କରେ ଶରତ ଚନ୍ଦ୍ର ଯାହା କରିଛନ୍ତି, ତାହା ହେଉଛି ଭବିଷ୍ୟତ ବଂଶଧରମାନଙ୍କ ପାଇଁ ବିଶେଷ ପ୍ରଣିଧାନ ଯୋଗ୍ୟ । ସେ କହିଛନ୍ତି, *"ଶ୍ରେଣୀରେ ପ୍ରଥମ ହୋଇ ସେ ଦିନ ମୁଁ କଠିନ ପରିଶ୍ରମର ମଧୁର ସ୍ୱାଦ ଅନୁଭବ କରିଥିଲି । କଠିନ ପରିଶ୍ରମ ଯେ ଜଣେ ମଣିଷର ସଫଳତାର ଚାବିକାଠି ସେଦିନର ଏ ଅନୁଭୂତି ପରେ ମୋର ପରବର୍ତ୍ତୀ ଜୀବନର ପଥ ଓ ପାଥେୟ ହୋଇଥିଲା ।"*

## ମାତୃ ବିୟୋଗ

ବାଳକ ଶରତ ଚନ୍ଦ୍ର ୬ଷ୍ଠ ଶ୍ରେଣୀରେ ଭୁବନ ମଧ୍ୟ ଇଂରାଜୀ ବିଦ୍ୟାଳୟରେ ଅଧ୍ୟୟନ କରୁଥିଲାବେଳେ ତାଙ୍କର ମାତା ରାଧାମଣି ଦେବୀଙ୍କର ଦେହାବସାନ ହୋଇଥିଲା । ଏହା ହେଉଛି ୧୯୪୪ ମସିହାର ଘଟଣା । ସେତେବେଳକୁ ତାଙ୍କୁ ମାତ୍ର ହୋଇଥିଲା ୧୪ ବର୍ଷ ।

ହଠାତ୍ ସତେ ଯେମିତି ତାଙ୍କ ମୁଣ୍ଡରେ ଆକାଶ ଛିଣ୍ଡି ପଡ଼ିଲା । ଯେଉଁ ଆକାଶର ଛତ୍ରଛାୟା ତଳେ ମାତା ରାଧାମଣି ଦେବୀଙ୍କ ସ୍ନେହ ଶ୍ରଦ୍ଧାରେ ଶୈଶବରୁ ତାରୁଣ୍ୟ ପର୍ଯ୍ୟନ୍ତ ବଢୁଥିଲେ ଚାରି ଜଣ ପିଲା, ଶରତ, ରଜତ, ଜଗତ ଓ ଅଦ୍ୱୈତ । ଚାହୁଁ ଚାହୁଁ ସେମାନେ ହୋଇଗଲେ ମାଆ ଛେଉଣ୍ଡ । ଏକ ପରିବର୍ତ୍ତିତ ପରିଚୟ ।

ସେତେବେଳକୁ ରାଧାମଣି ଦେବୀଙ୍କୁ ହୋଇଥିଲା ମାତ୍ର ୩୨ ବର୍ଷ । ସେ ସିନା ସ୍ୱର୍ଗକୁ ଚାଲିଗଲେ, ମାତ୍ର ତାଙ୍କ ପଛରେ ଛାଡ଼ି ଦେଇ ଗଲେ ସ୍ୱାମୀ ଓ ଚାରିଜଣ ପୁଅ ଯେଉଁମାନେ କି ଜୀବନ ପଥରେ ବଞ୍ଚିବାକୁ ନୂଆ ରାହା ଖୋଜୁଥିଲେ । ସେ ବର୍ଷ ଗ୍ରୀଷ୍ମାବକାଶରେ ଶରତ ଚନ୍ଦ୍ର ଭୁବନ ମଧ୍ୟ ଇଂରାଜୀ ବିଦ୍ୟାଳୟର ଛାତ୍ରାବାସରୁ ଗାଆଁ କେନ୍ଦୁଡ଼ିପକୁ ଫେରି ଆସିଲେ ।

ଖରାଦିନ ଛୁଟି ସଦ୍ୟ ମାତୃହରା ସନ୍ତାନ ଶରତଙ୍କ ପ୍ରତି ଦୁଃସହ ହୋଇ ପଡ଼ିଲା । ସେହି ସ୍ଥିତିରୁ ତାଙ୍କ ମଧ୍ୟରେ କିପରି ପରିବାର ଓ ସାନ ସାନ ତିନି ଭାଇଙ୍କ ପ୍ରତି ଦାୟିତ୍ୱ ଓ କର୍ତ୍ତବ୍ୟବୋଧର ଉଦ୍ରେକ ହେଲା ତାହା ବର୍ଣ୍ଣନା କରିବାକୁ ଯାଇ ସେ କହିଛନ୍ତି, *"ଦିନେ ଭୋରରୁ ମୁଁ ଯେତେବେଳେ ଉଠି ପଡ଼ିଲି, ଦେଖିଲି ମୋ ପାଖରେ ତିନି ଜଣ ମାତୃହୀନ ସନ୍ତାନ ଶୋଇଛନ୍ତି । ସେମାନଙ୍କୁ ଦେଖି ମୋ ମନରେ ଭାବାବେଗ ସୃଷ୍ଟି ହେଲା । ମୁଁ କାନ୍ଦିଲି ଓ କାନ୍ଦି ଚାଲିଲି । କେବଳ ମୋର କ୍ଷତ ପାଇଁ ନୁହେଁ, ବରଂ ସେମାନଙ୍କର ମାଆକୁ ହରାଇଥିବାର ଦୁଃଖ ଓ ଦୁର୍ଦ୍ଦଶା ପାଇଁ । ହଠାତ୍ ମୁଁ ଅନୁଭବ କଲି ଯେ ମୁଁ ସେମାନଙ୍କଠାରୁ ବୟସରେ ଯଥେଷ୍ଟ ବଡ଼ ହୋଇ ଯାଇଅଛି । ସେହି ମୁହୂର୍ତ୍ତରେ ସେମାନଙ୍କ ପ୍ରତି ମୋ ମନରେ ଦୟାଭାବ ଦେଖାଦେଲା । ପ୍ରକୃତିବଶତଃ ମୁଁ ସେମାନଙ୍କ ପ୍ରତି ସ୍ନେହଶୀଳ ଥିଲି; କିନ୍ତୁ ମୋର ଜୀବନରେ ଦେଖାଯାଇଥିବା ଏକ ଅଭୂତପୂର୍ବ ପରିବର୍ତ୍ତନ ମୋର ମନରେ ସେମାନଙ୍କ ପ୍ରତି ଥିବା ସ୍ନେହ ଓ ଶ୍ରଦ୍ଧା ପରିଣାତ୍ମକ ଓ ଗୁଣାତ୍ମକ ଭାବେ ବଢ଼ିବାକୁ ଲାଗିଲା । ସେହିଦିନଠାରୁ ମୁଁ ଅନୁଭବ କଲି ଯେ ମୋର ସେମାନଙ୍କ ପ୍ରତି ଦାୟିତ୍ୱ ଓ କର୍ତ୍ତବ୍ୟବୋଧ ଅଛି ।"*

ଭୁବନ ମଧ୍ୟ ଇଂରାଜୀ ବିଦ୍ୟାଳୟର ରହଣି ମଧ୍ୟରେ ଶରତ ଚନ୍ଦ୍ର ବିଭିନ୍ନ ଶୈକ୍ଷିକ ପରିସ୍ଥିତିର ସମ୍ମୁଖୀନ ହୋଇ ନିଜର ମାନସିକ ସ୍ଥିତିର ପୁନର୍ବଳନ କରିପାରିଥିଲେ । ଏହି ବିଦ୍ୟାଳୟ ଥିଲା ତାଙ୍କର ଆଦ୍ୟ କୈଶୋରାବସ୍ଥା, ଯାହାକି ତାଙ୍କ ଚରିତ୍ର ନିର୍ମାଣରେ

ବିଶେଷ ସହାୟକ ହୋଇଥିଲା । ତାଙ୍କର ମାନସିକ ସ୍ଥିତି ସୁଦୃଢ଼ ହୋଇଥିଲା । ତା' ନ ହୋଇଥିଲେ ସେ ସପ୍ତମ ଶ୍ରେଣୀର ଷାଣ୍ମାସିକ ପରୀକ୍ଷାରେ ଗଣିତରେ ୧୦୦ ନମ୍ବରରୁ ୮୦ ନମ୍ବର ପାଇ ସେ ଯେ ଶହେ ନମ୍ବର ପାଇଁ ଯୋଗ୍ୟ ତାହା ପ୍ରମାଣିତ କରି ନ ଥାନ୍ତେ । ଘଟଣାଟି ଘଟିଥିଲା ଏହିପରି :

ପରୀକ୍ଷାରେ ପଡ଼ିଥିବା ପ୍ରମାଦଯୁକ୍ତ ଜଟିଳ ପ୍ରଶ୍ନର ସମାଧାନର ଦୁଇଟି ଦିଗ ଥିଲା । ମାତ୍ର ଗୋଟିଏ ଦିଗକୁ ଦେଖି ଗଣିତ ଶିକ୍ଷକ ତାଙ୍କୁ ୮୦ ନମ୍ବର ଦେଇଥିଲେ । ଏହା ତାଙ୍କ ପକ୍ଷରେ ଗ୍ରହଣୀୟ ହୋଇ ନ ଥିଲା । ତେଣୁ ସେ ପ୍ରଧାନ ଶିକ୍ଷକଙ୍କ ପାଖକୁ ଯାଇ ନ୍ୟାୟ ମାଗିଥିଲେ । ତାଙ୍କ ଯୁକ୍ତିର ସତ୍ୟତା ପରଖି ପ୍ରଧାନ ଶିକ୍ଷକ ସଂପୃକ୍ତ ଶିକ୍ଷକଙ୍କୁ ୨୦ ନମ୍ବରରୁ '୦' ଦେଇଥିବା ଉତ୍ତରକୁ ୨୦ ନମ୍ବର ଦେବାକୁ କହିଥିଲେ । ଏହା ଫଳରେ ସେ ଗଣିତରେ ଶତକଡ଼ା ଶହେରୁ ଶହେ ନମ୍ବର ରଖି ପାରିଥିଲେ । ସେହିପରି ବୃତ୍ତି ପରୀକ୍ଷା ନିମନ୍ତେ ଘରୋଇ ଟିଉସନ ପାଇଁ ବ୍ୟବସ୍ଥା କରିବା ନିମନ୍ତେ ପ୍ରଧାନଶିକ୍ଷକଙ୍କ ପରାମର୍ଶକୁ ସେ ବୁଦ୍ଧିମତ୍ତାର ସହିତ ଏଡାଇ ଯାଇଥିଲେ ।

ସେ ବର୍ଷ ୭ମ ଶ୍ରେଣୀର ଅନ୍ତିମ ପରୀକ୍ଷା ପୂର୍ବରୁ ବିଦ୍ୟାଳୟର ପ୍ରାଜ୍ଞ ପ୍ରଧାନ ଶିକ୍ଷକ ପିଲାମାନଙ୍କର ଫଳାଫଳ ଉନ୍ନତ କରିବା ନିମନ୍ତେ ସମଗ୍ର ଶ୍ରେଣୀକୁ ତିନୋଟି ଶ୍ରେଣୀରେ ବିଭକ୍ତ କରିଥିଲେ । ତଦନୁଯାୟୀ ପିଲାମାନଙ୍କର ବିଶେଷ ପରୀକ୍ଷା ପ୍ରସ୍ତୁତି ସମ୍ଭବପର ହୋଇଥିଲା । ପ୍ରଧାନଶିକ୍ଷକ ଇଂରାଜୀରେ ଦକ୍ଷ ହୋଇଥିବା ହେତୁ ପ୍ରଥମ ଦଳକୁ ତାଙ୍କ ଅଧୀନରେ ରଖିଥିଲେ । ମେଧାବୀ ଛାତ୍ର ଶଶୀ ଓଡ଼ିଆରେ ଓ ଶରତ ଗଣିତରେ ପାରଙ୍ଗମ ହୋଇଥିବା ହେତୁ ଗଣିତ ଶିକ୍ଷାଦାନର ଦାୟିତ୍ୱ ଦେଇଥିଲେ । ଏହା ଫଳରେ ୧୯୪୫ ମସିହାରେ ଅନୁଷ୍ଠିତ ହୋଇଥିବା ସପ୍ତମ ଶ୍ରେଣୀର ବାର୍ଷିକ ପରୀକ୍ଷାରେ ବିଦ୍ୟାଳୟର ଫଳାଫଳ ଆଶାନୁରୂପ ହୋଇପାରିଥିଲା ।

**ଉଚ୍ଚ ବିଦ୍ୟାଳୟରେ ଅଧ୍ୟୟନ**

ଶରତ ଚନ୍ଦ୍ର ତତ୍କାଳୀନ ଢେଙ୍କାନାଳ ରାଜ୍ୟ (ଷ୍ଟେଟ୍)ର ବାସିନ୍ଦା ଥିଲେ । ୧୯୩୬ ମସିହାରେ ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶରେ ପରିଣତ ହୋଇଥିଲା । ଏହି ପ୍ରଦେଶରେ ବିହାର, ମଧ୍ୟପ୍ରଦେଶ ଏବଂ ମାଡ୍ରାସରେ ଥିବା ଓଡ଼ିଆ ଭାଷାଭାଷୀ ଅଞ୍ଚଳ ମିଶିଥିଲା । ଏହାର କିଛି ବର୍ଷ ପରେ ଆନ୍ଧ୍ରପ୍ରଦେଶ ଗଠିତ ହୋଇଥିଲା ଏବଂ ସେ ସମୟରେ ଗଞ୍ଜାମ ଓ କୋରାପୁଟ ମାଡ୍ରାସ ପ୍ରେସିଡ଼େନ୍ସୀ ଅନ୍ତର୍ଭୁକ୍ତ ଥିଲା । ୧୯୩୬ ମସିହାରେ ଓଡ଼ିଶା କଟକ, ପୁରୀ, ବାଲେଶ୍ୱର, ଗଞ୍ଜାମ, କୋରାପୁଟ ଓ ସମ୍ବଲପୁରକୁ ନେଇ ସ୍ୱତନ୍ତ୍ର ପ୍ରଦେଶର ସ୍ୱୀକୃତି ଲାଭ କରିଥିଲା । ସେ ସମୟରେ ୨୬ଟି ଓଡ଼ିଆ

ଭାଷାଭାଷୀ ରାଜ୍ୟ ଥିଲା । ସେହିସବୁ ରାଜ୍ୟ ମଧ୍ୟରେ ଢେଙ୍କାନାଳ, ମୟୂରଭଞ୍ଜ, କେନ୍ଦୁଝର ଆଦି ରହିଥିଲେ । ସେହି ସବୁ ରାଜ୍ୟ ରାଜାଙ୍କ ଶାସନାଧୀନରେ ମଧ୍ୟ ଥିଲେ । ଭାରତ ସ୍ୱାଧୀନ ହେଲା ପରେ ୧୯୪୮ ମସିହାରେ ଏହିସବୁ ରାଜ୍ୟ ଓଡ଼ିଶା ରାଜ୍ୟରେ ମିଶିଥିଲେ । ମାତ୍ର ମୟୂରଭଞ୍ଜ ୧୯୪୯ ମସିହାରେ ଓଡ଼ିଶା ରାଜ୍ୟ ଅଧୀନକୁ ଆସିଥିଲା । ଏହା ଥିଲା ସ୍ୱାଧୀନ ଭାରତର ପରବର୍ତ୍ତୀ ଘଟଣା ।

ସେତେବେଳେ ସମଗ୍ର ଢେଙ୍କାନାଳ ରାଜ୍ୟରେ ଢେଙ୍କାନାଳ ସହରରେ ଗୋଟିଏ ମାତ୍ର ଉଚ୍ଚ ବିଦ୍ୟାଳୟ ଥିଲା । ୧୯୪୫ ମସିହାରେ କାମାକ୍ଷାନଗରରେ ଆଉ ଏକ ଉଚ୍ଚ ବିଦ୍ୟାଳୟ ପ୍ରତିଷ୍ଠିତ ହୋଇଥିଲା । ମାତ୍ର ଢେଙ୍କାନାଳ ସହରର ଏହି ବିଦ୍ୟାଳୟଟି ସମଗ୍ର ଓଡ଼ିଶାରେ ସବୁଠାରୁ ପୁରାତନ ବିଦ୍ୟାଳୟର ମର୍ଯ୍ୟାଦା ଲାଭ କରିଥିଲା । ଏହା ୧୮୯୬ ମସିହାରେ ପ୍ରତିଷ୍ଠିତ ହୋଇଥିଲା । ସଂପ୍ରତି ଏହି ବିଦ୍ୟାଳୟଟି ବ୍ରଜନାଥ ବଡ଼ଜେନା ବିଦ୍ୟାଳୟ ନାମରେ ପରିଚିତ । ଏହା କବି ବଡ଼ଜେନାଙ୍କ ନାମାନୁସାରେ ହୋଇଅଛି । ଓଡ଼ିଶାର ବିଶିଷ୍ଟ କବି ବଡ଼ଜେନା ଢେଙ୍କାନାଳର ବାଇଁଧିଆ ଗ୍ରାମ ନିକଟବର୍ତ୍ତୀ କାବେରା ଗ୍ରାମର ଅଧିବାସୀ ଥିଲେ ।

ରାଜ୍ୟରେ ବ୍ରଜନାଥ ବଡ଼ଜେନା ହାଇସ୍କୁଲ ଏକ ଐତିହ୍ୟ ସଂପନ୍ନ ଉଚ୍ଚ ବିଦ୍ୟାଳୟ ରୂପେ ପରିଚିତ । ୧୮୯୬ ମସିହାରେ ଢେଙ୍କାନାଳ ଉଚ୍ଚ ଇଂରାଜୀ ବିଦ୍ୟାଳୟ ରୂପେ ପ୍ରତିଷ୍ଠିତ ଏହି ବିଦ୍ୟାଳୟ ପରବର୍ତ୍ତୀ ସମୟରେ "ଷ୍ଟେଟ ହାଇସ୍କୁଲ ଢେଙ୍କାନାଳ" ରୂପେ ପରିଚିତ ଥିଲା । ପୁନଶ୍ଚ ଏହି ବିଦ୍ୟାଳୟଟି ୧୯୫୦ ମସିହାରେ କବି ବ୍ରଜନାଥ ବଡ଼ଜେନା ଉଚ୍ଚ ବିଦ୍ୟାଳୟ ରୂପେ ନାମିତ ହୋଇଅଛି ।

ପିତା ମହେଶ୍ୱର ଶରତଙ୍କୁ ପ୍ରାଚୀନତମ ଓ ଐତିହ୍ୟ ସଂପନ୍ନ ଢେଙ୍କାନାଳ ଉଚ୍ଚ ବିଦ୍ୟାଳୟରେ ପଢ଼ାଇବାକୁ ନିଷ୍ପତ୍ତି ନେଇଥିଲେ । ଶରତଙ୍କ ଗ୍ରାମ କେନ୍ଦୁଡ଼ିପଠାରୁ ପ୍ରାୟ ୨୫ କିଲୋମିଟର ଦୂରରେ ଅବସ୍ଥିତ ହେଉଛି ଢେଙ୍କାନାଳ ଉଚ୍ଚ ବିଦ୍ୟାଳୟ । ସେତେବେଳେ ଏହି ଦୂରତ୍ୱକୁ ଅତିକ୍ରମ କରିବାକୁ ହେଲେ ଚାଲି ଚାଲି ଯିବାକୁ ପଡୁଥିଲା । ପାଠ ପଢ଼ିବାର ଅଦମ୍ୟ ଜିଜ୍ଞାସା ଓ ଉତ୍ସାହ ନିକଟରେ ଏଇ ଦୂରତ୍ୱକୁ ଜିଣି ଯାଇଥିଲେ ତରୁଣ ଶରତ ଚନ୍ଦ୍ର ।

**ବିଦ୍ୟାଳୟ ପ୍ରବେଶ ପରୀକ୍ଷା**

ସାଧାରଣତଃ ଚାଳିଶ ଦଶକରେ ଗୋଟିଏ ବିଦ୍ୟାଳୟ ଛାଡ଼ି ଅନ୍ୟ ବିଦ୍ୟାଳୟରେ ଭର୍ତ୍ତି ହେବା ପୂର୍ବରୁ ପ୍ରବେଶିକା ପରୀକ୍ଷାରେ ସଂପୃକ୍ତ ଛାତ୍ରଙ୍କୁ ଉତ୍ତୀର୍ଣ୍ଣ ହେବାକୁ ପଡୁଥିଲା । ତଦନୁଯାୟୀ ୧୯୪୫ ମସିହାରେ ଢେଙ୍କାନାଳ ହାଇସ୍କୁଲରେ ନୂତନ ଭାବେ ନାମ

ଲେଖାଇବାକୁ ଥିବା ପିଲାମାନଙ୍କ ନିମନ୍ତେ ବିଦ୍ୟାଳୟ କର୍ତ୍ତୃପକ୍ଷ ଏକ ପ୍ରବେଶିକା ପରୀକ୍ଷା କରାଇଥିଲେ । ସେହି ପରୀକ୍ଷାରେ ଶରତ ଚନ୍ଦ୍ର ଗଣିତରେ ସର୍ବୋଚ୍ଚ ନମ୍ବର ରଖି ବିଦ୍ୟାଳୟରେ ଭର୍ତ୍ତି ହେବା ପାଇଁ ଯୋଗ୍ୟ ବିବେଚିତ ହୋଇଥିଲେ ।

ଦଶବର୍ଷର ପ୍ରାରମ୍ଭିକ ସ୍କୁଲ ଜୀବନରେ ଶରତ ଚନ୍ଦ୍ର ପ୍ରଥମ ତିନି ବର୍ଷକୁ ଛାଡ଼ି ଦେଲେ ଆଉ ସାତ ବର୍ଷ ବନ୍ଧୁବାନ୍ଧବଙ୍କ ଘରେ ଓ ଭୁବନ ମଧ ଇଂରାଜୀ ବିଦ୍ୟାଳୟର ଛାତ୍ରାବାସରେ ଅତିବାହିତ କରିଥିଲେ । ତେଣୁ ଢେଙ୍କାନାଳ ହାଇସ୍କୁଲରେ ଭର୍ତ୍ତିହେବା ପରେ ପରେ ପୁଣି ଆରମ୍ଭ ହୋଇଗଲା ତାଙ୍କର ଛାତ୍ରାବାସ ଜୀବନ । ହାଇସ୍କୁଲ ଛାତ୍ରାବାସର ଏକ କୋଠରିରେ ସେ ତିନିଜଣ ଛାତ୍ରଙ୍କ ସହିତ ପୂର୍ବବତ୍ ଛାତ୍ରାବାସର ଅନ୍ତେବାସୀ ଜୀବନ ଆରମ୍ଭ କରିଥିଲେ ।

**ଅନ୍ତେବାସୀ ଜୀବନ**

ଛାତ୍ରାବାସ ଜୀବନରେ ଜଣେ ଶିକ୍ଷାର୍ଥୀର ଘର ଜୀବନ ଓ ଛାତ୍ରାବାସ ଜୀବନ ମଧ୍ୟରେ ଆକାଶ ପାତାଳ ତଫାତ୍ ଥାଏ । ସାଧାରଣତଃ ଘରେ ରହୁଥିବା ଶିକ୍ଷାର୍ଥୀ ଜଣକ ନିଜ ଅଭିଭାବକମାନଙ୍କ ଗହଣରେ ରହିଥାଏ । ଏହା ଫଳରେ ସେ ସେମାନଙ୍କ ନଜରରେ ଥାଏ । ମାତ୍ର ଘରଛାଡ଼ି ସ୍ୱାଧୀନ ଭାବେ ବିଚରଣ କଲାବେଳେ ସେହି ଆଚରଣରେ କେତେକ ବ୍ୟତିକ୍ରମ ଦେଖାଯାଏ । ଛାତ୍ରାବାସ ଜୀବନରେ ସାଧାରଣତଃ ଜଣେ ଶିକ୍ଷାର୍ଥୀକୁ କିଛିଟା କଟକଣା ମଧ୍ୟରେ ରହିବାକୁ ପଡ଼ିଥାଏ । ସେଥିପାଇଁ ଛାତ୍ରାବାସରେ ରହୁଥିବା ପ୍ରତ୍ୟେକ ଅନ୍ତେବାସୀ ଅନୁଷ୍ଠାନର ନୀତି ନିୟମ ଶୃଙ୍ଖଳ ମଧ୍ୟରେ ରହିଥାନ୍ତି । ସେହି ପରିବେଶ କ୍ଷୁଦ୍ର ହେଲେ ମଧ ଛାତ୍ରାବାସ ଜୀବନରୁ ଶିକ୍ଷାର୍ଥୀ ଦାୟିତ୍ୱବୋଧ, କର୍ତ୍ତବ୍ୟବୋଧ, ଶୃଙ୍ଖଳାବୋଧ ଆଦି ମହନୀୟ ଗୁଣ ଶିକ୍ଷା ଲାଭ କରିଥାନ୍ତି । ସେ ସଂପର୍କରେ ଶରତ ଚନ୍ଦ୍ର କହୁଥିଲେ, ***"ଛାତ୍ରାବାସର ଜୀବନ ମୋତେ କିପରି ଅନ୍ୟମାନଙ୍କ ସହିତ ଖାପ ଖୁଆଇ ଚଳିବାକୁ ହୁଏ, ତାହା ଶିକ୍ଷା ଦେବା ସହିତ ମୋ ନିଜ ଇଚ୍ଛା ଅନୁସାରେ କିଛି ଆଶା ନ କରିବାକୁ ଶିକ୍ଷା ଦେଇଥିଲା ।"***

ଢେଙ୍କାନାଳ ହାଇସ୍କୁଲର ଛାତ୍ରାବାସ ରହଣି ଓ ତତ୍ ସଂପର୍କୀୟ ଅନୁଭୂତି ଶରତ ଚନ୍ଦ୍ରଙ୍କ ଛାତ୍ରଜୀବନର ଭିତ୍ତିଭୂମିକୁ ସୁଦୃଢ଼ କରିବା ସହିତ ତାଙ୍କର ଚରିତ୍ର ନିର୍ମାଣ ଦିଗରେ ବିଶେଷ ସହାୟକ ଥିଲା । ସେ ଜଣେ ମେଧାବୀ ଛାତ୍ର ଓ ଗଣିତରେ ପାରଙ୍ଗମ ବୋଲି ବିଦ୍ୟାଳୟର ଶିକ୍ଷକ ଓ ଶିକ୍ଷାର୍ଥୀମାନେ ଜାଣି ପାରିଥିଲେ । ସେଥିପାଇଁ ଛାତ୍ରାବାସର କେତେକ ଅନ୍ତେବାସୀ ତାଙ୍କ ନିକଟକୁ ଗଣିତ ଓ ଅନ୍ୟାନ୍ୟ ବିଷୟ ବୁଝିବାକୁ ଆସୁଥିଲେ । ଶିକ୍ଷଣ ସଂପର୍କୀୟ ବିଭିନ୍ନ ସନ୍ଦେହ ମଧ ଦୂର କରୁଥିଲେ । ଏପରିକି ଜଣେ ଉଚ୍ଚଶ୍ରେଣୀର

ଛାତ୍ର ଗୋପନୀୟତା ରକ୍ଷା କରି ମଝିରେ ମଝିରେ ତାଙ୍କୁ ସାକ୍ଷାତ କରୁଥିଲେ ଓ ତାଙ୍କଠାରୁ ଆଲ୍‌ଜେବ୍ରା ସଂପର୍କୀୟ ବିଷୟବସ୍ତୁ ଓ ସମସ୍ୟା ସମାଧାନ ଦିଗରେ ପରାମର୍ଶ ନେଉଥିଲେ ।

ସେ ସମୟରେ ଆଜିକାଲି ଭଳି ଟିଉସନ ବ୍ୟବସ୍ଥା ନ ଥିଲା । ଏବେ ଟିଉସନ ପ୍ରତ୍ୟେକ ଶିକ୍ଷାନୁଷ୍ଠାନର ଛାତ୍ରଛାତ୍ରୀଙ୍କ ପାଇଁ ସତେ ଯେମିତି ଅପରିହାର୍ଯ୍ୟ ହୋଇପଡ଼ିଛି । ଆଜିକାଲି ଏହି ବ୍ୟବସ୍ଥା ପ୍ରାକ୍ ବିଦ୍ୟାଳୟ ସ୍ତରରୁ ଆରମ୍ଭ ହୋଇ ମହାବିଦ୍ୟାଳୟ, ଏପରିକି ବିଶ୍ୱବିଶ୍ୱବିଦ୍ୟାଳୟ ସ୍ତର ପର୍ଯ୍ୟନ୍ତ ବିସ୍ତୃତ । ମାତ୍ର ଚାଳିଶ ଦଶକ ଓ ତତ୍ ପୂର୍ବରୁ ଟିଉସନ ଆମ ପିଲାଙ୍କ ପାଠ୍ୟପଦ୍ଧତିରେ ଆଦୌ ଅନୁସୃତ ହେଉ ନ ଥିଲା । କାରଣ ଏହା ପିଲାଙ୍କ ମାନସିକ ଶକ୍ତିର ବିକାଶରେ ଅନ୍ତରାୟ ସୃଷ୍ଟି କରେ ବୋଲି ଶିକ୍ଷା ଜଗତର କର୍ମକର୍ତ୍ତାମାନେ ସେ ସମୟରେ ଅନୁଭବ କରୁଥିଲେ ।

ତତ୍‌କାଳୀନ ବିଦ୍ୟାଳୟ, ମହାବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟ ସ୍ତରର ଶିକ୍ଷକମାନେ ବିଶେଷ ନିଷ୍ଠାର ସହିତ ଶିକ୍ଷାଦାନ କରୁଥିଲେ । ଛାତ୍ରଛାତ୍ରୀମାନଙ୍କର ବ୍ୟକ୍ତିଗତ ଆବଶ୍ୟକତାକୁ ରଖି ମଧ୍ୟ ସେମାନେ ଶିକ୍ଷାଦାନକୁ ବ୍ୟକ୍ତିକୈନ୍ଦ୍ରିକ କରୁଥିଲେ । ଏହା ଫଳରେ ସେ ସମୟର ଶିକ୍ଷକ ଓ ଶିକ୍ଷାର୍ଥୀମାନଙ୍କ ମଧ୍ୟରେ ଉତ୍ତମ ବୁଝାମଣା ଓ ସଂପର୍କ ରହୁଥିଲା । ସେହିପରି ଶ୍ରେଣୀ ଗୃହରେ ଶିକ୍ଷକ ଶିକ୍ଷାର୍ଥୀମାନଙ୍କୁ ପ୍ରଶ୍ନ ପଚାରିଲାବେଳେ ପ୍ରତ୍ୟେକ ପିଲା ପ୍ରତି ଦୃଷ୍ଟି ଦେଇ ପ୍ରଶ୍ନଗୁଡ଼ିକୁ ପଚାରୁଥିଲେ । ସେମାନଙ୍କ ଆବଶ୍ୟକତାକୁ ରଖି ଗୃହକାର୍ଯ୍ୟ ମଧ୍ୟ ଦେଉଥିଲେ । ସେଗୁଡ଼ିକ ପିଲାଟି କେତେଦୂର ଠିକ୍ ବା ଭୁଲ କରିଅଛି ତାହା ମଧ୍ୟ ତଦାରଖ କରୁଥିଲେ । ଏହା ଫଳରେ ଶିକ୍ଷାର୍ଥୀଜଣକ ତା'ର ସାମର୍ଥ୍ୟ ଅନୁସାରେ ଜ୍ଞାନ ଆହରଣ କରୁଥିଲେ ।

ଜଣେ ଶିକ୍ଷାର୍ଥୀ ସଫଳତା ହାସଲ ଦିଗରେ ଶିକ୍ଷକଙ୍କ ଶୈକ୍ଷିକ ସାହାଯ୍ୟ ନିତାନ୍ତ ଆବଶ୍ୟକ । ଏହି ସାହାଯ୍ୟ ଯଦି ଛାତ୍ର କୈନ୍ଦ୍ରିକ ହୁଏ, ତେବେ ଶିକ୍ଷାର୍ଥୀ ଶିକ୍ଷଣସ୍ତରରେ ଉତ୍ତରୋତ୍ତର ଉନ୍ନତି କରିପାରେ । ଅର୍ଥାତ୍ ଶିକ୍ଷାର୍ଥୀ ଯେଉଁଠି କୌଣସି ବିଷୟ ବୁଝିପାରେ ନାହିଁ, ତାହା ଲକ୍ଷ୍ୟ କରି ବୁଝାଇଦେଲେ ସେ ସହଜରେ ବିଷୟଟିକୁ ବୁଝି ପାରିଥାଏ । ସେ ସମୟରେ ଢେଙ୍କାନାଳ ହାଇସ୍କୁଲର ସଂସ୍କୃତ ଶିକ୍ଷକ ପିଲାଙ୍କ ଶୈକ୍ଷିକ ଓ ଆଧ୍ୟାତ୍ମିକ ବିକାଶ କ୍ଷେତ୍ରରେ ବିଶେଷ ଧ୍ୟାନ ଦେଉଥିଲେ ।

**ମାଧ୍ୟମିକସ୍ତରର ଶିକ୍ଷା**

ଶରତ ଚନ୍ଦ୍ରଙ୍କ ବିଦ୍ୟାଧ୍ୟୟନ ସମୟରେ ମାଧ୍ୟମିକ ସ୍ତରର ଶିକ୍ଷା ଚାରି ବର୍ଷ ଥିଲା । ଏହି ସ୍ତର ତତ୍‌କାଳୀନ ଅଷ୍ଟମ, ନବମ, ଦଶମ ଓ ଏକାଦଶ ଶ୍ରେଣୀକୁ ନେଇ

ଧରାଯାଉଥିଲା । ମାଧ୍ୟମିକ ସ୍ତରର ଶିକ୍ଷାର୍ଥୀମାନେ ଏକାଦଶ ଶ୍ରେଣୀ ଶେଷକଲା ପରେ ଚୂଡ଼ାନ୍ତ ପରୀକ୍ଷା ଦେଉଥିଲେ ।

ସେ ସମୟରେ ଅଷ୍ଟମ ଶ୍ରେଣୀରେ ସଂସ୍କୃତ ଏକ ନୂତନ ବିଷୟରୂପେ ପ୍ରଚଳିତ କରାଯାଉଥିଲା । ସଂସ୍କୃତ ବହିରେ ଥିବା କାଳଜୟୀ ଗଳ୍ପ ଏବଂ ଶ୍ଳୋକଗୁଡ଼ିକ ପିଲାଙ୍କ ଚରିତ୍ର ନିର୍ମାଣର ବିଶେଷ ସହାୟକ ହେଉଥିଲା । ପଣ୍ଡିତ ବିଷ୍ଣୁଶର୍ମାଙ୍କ ଗଳ୍ପ, ଚାଣକ୍ୟଙ୍କ ଶ୍ଳୋକର ପ୍ରଭାବ ତରୁଣ ଶରତ ଚନ୍ଦ୍ରଙ୍କ ଉପରେ ଯଥେଷ୍ଟ ରେଖାପାତ କରିଥିବା ହେତୁ ସେ ପ୍ରାୟତଃ ସଂସ୍କୃତ ବହିରେ ଥିବା ଅଧିକାଂଶ ଶ୍ଳୋକ କଣ୍ଠସ୍ଥ କରିଦେଇଥିଲେ । ପରିଣତ ବୟସରେ ତାଙ୍କର କାର୍ଯ୍ୟଧାରା ମଧ୍ୟରେ ଆବୃତ୍ତିକରି ଉପସ୍ଥିତ କ୍ଷେତ୍ରରେ ମଧ୍ୟ ଶିକ୍ଷଣୀୟ ପରିବେଶ ସୃଷ୍ଟି କରି ପାରୁଥିଲେ । ଏହା ଫଳରେ ତାଙ୍କ ସହିତ ସଂଶ୍ଳିଷ୍ଟ ବ୍ୟକ୍ତି ବିଶେଷ ଲାଭବାନ ହେଉଥିଲେ । ସେମାନଙ୍କ ଆଚରଣ ଓ କାର୍ଯ୍ୟଧାରା ମାର୍ଜିତ ହେବା ସହିତ ଅନ୍ୟମାନଙ୍କ ପ୍ରତି ମଧ୍ୟ ଉଦାହରଣ ସୃଷ୍ଟି କରୁଥିଲା ।

**ଢେଙ୍କାନାଳ ଉଚ୍ଚ ବିଦ୍ୟାଳୟ : ବର୍ତ୍ତମାନର ବି.ବି. ହାଇସ୍କୁଲ**

ସେ ସମୟରେ ଘରଠାରୁ ୨୫ କିଲୋମିଟର ଦୂରରେ ଅବସ୍ଥିତ ଢେଙ୍କାନାଳଠାରେ ପାଠପଢ଼ିବା ଶରତ ଚନ୍ଦ୍ରଙ୍କ ପକ୍ଷରେ ଆହ୍ୱାନ ସଦୃଶ ଥିଲା । ସାଧାରଣତଃ ସ୍ୱାଧୀନତାର ପୂର୍ବବର୍ତ୍ତୀ ସମୟରେ ଯେଉଁମାନେ ନିଜ ଘରଠାରୁ ବହୁଦୂରରେ ଥିବା ମଧ୍ୟ ଇଂରାଜୀ ବିଦ୍ୟାଳୟ, ଉଚ୍ଚ ବିଦ୍ୟାଳୟ କିମ୍ବା ମହାବିଦ୍ୟାଳୟରେ ପାଠ ପଢ଼ିଛନ୍ତି ସେମାନେ ବହୁ କଷ୍ଟ ସ୍ୱୀକାର କରି ସେହିସବୁ ଅନୁଷ୍ଠାନକୁ ଚାଲିଚାଲି ଯାଇ ପାଠ ପଢ଼ିଛନ୍ତି । ଜୀବନର ପ୍ରାରମ୍ଭରେ ସେମାନେ କରିଥିବା ଏହି କଷ୍ଟ ହିଁ ସେମାନଙ୍କୁ ପରବର୍ତ୍ତୀ ଜୀବନରେ ସଫଳତା ଆଣି ଦେଇଛି ।

ଘର କେନ୍ଦୁଡ଼ିପଠାରୁ ସୁଦୀର୍ଘ ୨୫ କି.ମି ପଥ ଚାଲି ଚାଲି ଶରତ ଚନ୍ଦ୍ର ଅତିକ୍ରମ କରୁଥିଲେ । ସାଧାରଣତଃ ଏହି ସୁଦୀର୍ଘ ପଥ ଅତିକ୍ରମ କରିବା ପାଇଁ ବଡ଼ମାନଙ୍କ ପକ୍ଷରେ ପାଞ୍ଚ ଛଅ ଘଣ୍ଟା ଲାଗୁଥିଲା ବେଳେ ତାଙ୍କୁ ମୋଟାମୋଟି ଆଠ ଘଣ୍ଟା ଲାଗୁଥିଲା । ଅନେକ ସମୟରେ ଆସିଲା ସମୟରେ ବାଟରେ ଢେଙ୍କାନାଳ ଆସୁଥିବା ଜଣେ ଜଣେ ପଥିକ ରାସ୍ତାରେ ଯୁଟି ଯାଉଥିଲେ । ଏହା ଫଳରେ ପଥଯାତ୍ରାର କ୍ଳାନ୍ତି ଟିକିଏ କମି ଯାଉଥିଲାବେଳେ ଅଧିକାଂଶ ସମୟରେ ସେ ଏକାକୀ ଆସୁଥିଲେ । ସେତେବେଳର ବଣ ଜଙ୍ଗଲ ଘେରା ପରିବେଶ ଅତିକ୍ରମ କରି ଘରଠାରୁ ଢେଙ୍କାନାଳରେ ପହଞ୍ଚିବା ଶରତ ଚନ୍ଦ୍ରଙ୍କ ପାଇଁ ଏକ ଦୁଃସାହସିକ ପଦଯାତ୍ରା ଥିଲା । ସେହି ପଦଯାତ୍ରାର ଆରମ୍ଭ ହେଉଥିଲା ଅତି ଭୋରରୁ କେନ୍ଦୁଡ଼ିପସ୍ଥ ନିଜ ଗ୍ରାମରୁ । ଗଲାବେଳେ ବାଟରେ ପଡ଼େ

ବ୍ରାହ୍ମଣୀ ନଦୀ । ବ୍ରାହ୍ମଣୀ ନଦୀ ଅତିକ୍ରମ କରି କିଛି ବାଟ ଆସିଲେ ନୂଆଗାଁ ପଡ଼େ । ନୂଆ ଗାଆଁରେ ପହଞ୍ଚିଲାବେଳକୁ ମଧ୍ୟାହ୍ନ ହୋଇଥାଏ । ସେଠାରେ ସେ ଅଳ୍ପ ସମୟ ବସିଥାନ୍ତି । ଘରୁ ଆଣିଥିବା କିଛି ଜଳଖିଆ ମଧ୍ୟ ଖାଇଥାନ୍ତି । ଏହି ଜଳଖିଆ ଆପାତତଃ ଚୁଡ଼ା ଥାଏ । ସେଠାରେ କିଛି ସମୟ ବିଶ୍ରାମ ନେଲା ପରେ ପୁଣି ଆରମ୍ଭ ହୋଇଥାଏ ଦ୍ୱିତୀୟ ପର୍ଯ୍ୟାୟର ପଦଯାତ୍ରା । ଢେଙ୍କାନାଳରେ ପହଞ୍ଚୁ ପହଞ୍ଚୁ ଅପରାହ୍ନ ୩ଟା ହୋଇଥାଏ ।

**ମଣିଷ ଭିତରେ ଦେବତାର ସଂଦର୍ଶନ**

ଢେଙ୍କାନାଳ ହାଇସ୍କୁଲରେ ଅଧ୍ୟୟନ ସମୟରେ ଶରତ ଚନ୍ଦ୍ର ନିଜ ଅନୁଭୂତି ବିଭିନ୍ନ ସମୟରେ ବର୍ଣ୍ଣନା କରିଛନ୍ତି । ଥରେ ବିଦ୍ୟାଳୟର ଛାତ୍ରାବାସରୁ ଅବେଳରେ ଘରକୁ ଫେରୁଥିବାର ଏକ ଅନନ୍ୟ ଓ ଶିକ୍ଷଣୀୟ ଘଟଣା । ଏହି ଘଟଣାଟି ସେ ବିଭିନ୍ନ ସମୟରେ ଆଲୋଚନା ବଳୟ ମଧ୍ୟକୁ ଆଣିଥାନ୍ତି । ୧୯୪୮ ମସିହାରେ ଘଟିଥିବା ଘଟଣାଟି ଥିଲା ଏହିପରି :

ସେ ସମୟରେ ଶରତ ଚନ୍ଦ୍ର ଦଶମ ଶ୍ରେଣୀରେ ପଢୁଥିଲେ । ସେ ବର୍ଷ ସେପ୍ଟେମ୍ବର – ଅକ୍ଟୋବର ମାସରେ ତାଙ୍କ ସଂପର୍କୀୟ ତଥା କଟକର ଛତ୍ରବଜାର ଅଞ୍ଚଳରେ ଶିକ୍ଷକତା କରୁଥିବା ନୃସିଂହ ଚରଣ କର ଆସି ଢେଙ୍କାନାଳ ହାଇସ୍କୁଲ ଛାତ୍ରାବାସରେ ପହଞ୍ଚିଲେ । ସେ ମାନ୍ୟରେ ବଡ଼ ଥିଲେ । କିଛି ସମୟ ଛାତ୍ରାବାସରେ ରହି ଅପରାହ୍ନରେ ତାଙ୍କୁ କେନ୍ଦୁଡ଼ିପ ଯିବାକୁ କହିଲେ । ଶରତ ସଙ୍ଗେ ସଙ୍ଗେ ତାଙ୍କ ପ୍ରସ୍ତାବରେ ରାଜି ହୋଇଗଲେ । ଦୁହେଁ ସୂର୍ଯ୍ୟାସ୍ତ ସମୟରେ ବ୍ରାହ୍ମଣୀ ନଦୀ କୂଳରେ ପହଞ୍ଚିଲେ । ସେତେବେଳେ ବ୍ରାହ୍ମଣୀ ନଦୀର ଜଳ ଥଳକୂଳ ମାନୁ ନ ଥିଲା । ନଦୀକୁ ଅତିକ୍ରମ କରିବା ନିମନ୍ତେ ସେମାନେ ନାଉରିଆକୁ ଏଣେତେଣେ ଖୋଜିଲେ । ମାତ୍ର ତାକୁ ପାଇଲେ ନାହିଁ ।

ସେ ସମୟରେ ଝିପ୍‌ଝିପ୍ ବର୍ଷା ହେଉଥାଏ । ସେ ଦୁହିଁଙ୍କ ପାଖରେ ଆଉ କେହି ତୃତୀୟ ବ୍ୟକ୍ତି ମଧ୍ୟ ନଥିଲେ । ଲକ୍ଷ୍ୟ କଲେ, ଘାଟର ଆରପଟେ ଡଙ୍ଗାଟିଏ ଅଛି । ସନ୍ଧ୍ୟାକାଳୀନ ବର୍ଷଣମୁଖର ସ୍ଥିତିରେ ସେମାନେ ଆରପାର୍ଶ୍ୱରେ ଥିବା ନାଉରିଆକୁ ବାରମ୍ବାର ଉଚ୍ଚସ୍ୱରରେ ଡାକିଲେ । ମାତ୍ର ତାଙ୍କଠାରୁ କୌଣସି ଉତ୍ତର ମିଳିଲା ନାହିଁ ।

କ୍ରମଶଃ ସେହି ନିଛାଟିଆ ସ୍ଥାନରେ ରାତି ନଇଁ ଆସୁଥାଏ । ଝିପି ଝିପି ବର୍ଷା ସହିତ ଆଗତପ୍ରାୟ ରାତ୍ରିକାଳୀନ ଅନ୍ଧକାର ସେମାନଙ୍କୁ ଭୀତତ୍ରସ୍ତ କରିଦେଲା । ଏହିପରି ଏକ ବର୍ଷଣମୁଖର ପରିସ୍ଥିତିରେ ସେମାନେ ବ୍ରାହ୍ମଣୀନଦୀକୁ ଅତିକ୍ରମ କରିବା ନିମନ୍ତେ

ଆଉ ଗୋଟିଏ ଘାଟ ଅନ୍ୱେଷଣରେ ବାହାରିଲେ । ସେଠାରେ ନଦୀ କୂଳେ କୂଳେ ଯାଇ ଦୁଇ କିଲୋମିଟର ଦୂରରେ ଥିବା ସେଇ ଘାଟରେ ପହଞ୍ଚିଲେ । ମାତ୍ର ସେଠାରେ ପହଞ୍ଚି ଦେଖିଲେ ନାଉରିଆ ଜଣକ ଘାଟଛାଡ଼ି ତା'ର ଗାଁ ଅଭିମୁଖେ ଚାଲି ଯାଇଅଛି ।

ଏପରି ସ୍ଥିତିରେ ସେମାନଙ୍କ ମନରେ ନାହିଁ ନ ଥିବା ଭୟ ସୃଷ୍ଟି ହେଲା । କ'ଣ କରିବେ, କିପରି ଏ ପରିସ୍ଥିତିର ମୁକାବିଲା କରିବେ, ତାହା ଭାବି ଭାବି ସେମାନେ ଏଣିକି ତେଣିକି ଚାହିଁଲେ । ଗାଁକୁ ତ ଯାଇ ପାରିଲେ ନାହିଁ, ଗୋଟିଏ ନିଶୂନ ରାତ୍ରିର ଆଗତ ପ୍ରାୟ ବିପଦରୁ ରକ୍ଷା ପାଇବା ପାଇଁ ଏଣିକି ତେଣିକି ଚାହିଁଲେ ।

ଯେତେବେଳେ ମଣିଷ ମନରୁ ସମସ୍ତ ଆଶା ଓ ଭରସା ତୁଟି ଯାଇଥାଏ, ସେତେବେଳେ ସେ କୁଟା ଖଣ୍ଡିକ ପାଇଗଲେ ତାକୁ ଆଶ୍ରା କରି ବଞ୍ଚିଯିବାକୁ ଚେଷ୍ଟା କରିଥାଏ । ସେଇ ଶେଷ ସାହାଯ୍ୟର ଖିଅଭଳି ସେମାନଙ୍କ ଆଖି ଆଗରେ ଅଳ୍ପ ଦୂରରେ ଘୁଷୁରି ପଲଙ୍କୁ ଧରି ବରଡ଼ା ଛତା ତଳେ ରହିଥିବା ଦୁଇ ତିନିଜଣ ମଣିଷ ଦେଖାଦେଲେ । ସେଠାକୁ ଯାଇ ଦେଖିଲେ ଯେ ସେମାନେ ଖାଇପିଇ ସେଠାରେ ରାତ୍ରି କାଳୀନ ବିଶ୍ରାମ ନେଉଛନ୍ତି ।

ସନ୍ତର୍ପଣରେ ସହିତ ଶରତଚନ୍ଦ୍ର ଓ ତାଙ୍କ ବନ୍ଧୁଜଣକ ସେଠାରେ ପହଞ୍ଚି ସାହାଯ୍ୟ ଭୀକ୍ଷା କଲେ । ସେମାନଙ୍କର ଦୁର୍ଦ୍ଦଶାଦେଖି ଘୁଷୁରି ପାଳକମାନେ ସମବେଦନା ଜଣାଇବା ସହିତ ସେମାନଙ୍କୁ ସେମାନଙ୍କର ଛତା ଦେଲେ । ସେଠାରେ ସେମାନଙ୍କ ସହିତ ରାତ୍ରୀ ଯାପନ କରିବାକୁ କହିଲେ ଏବଂ ଏପରି ଏକ ପ୍ରତିକୂଳ ପାଗର ମୁକାବିଲା କରିବା ନିମନ୍ତେ ମନରେ ସାହାସ ଦେଲେ ।

ଖାଲି କଥା ଏତିକିରେ ସରିଲା ନାହିଁ । ଘୁଷୁରି ପାଳକମାନେ ଏଇ ଦୁଇ ଆଗନ୍ତୁକଙ୍କୁ ସେମାନଙ୍କ ମଝିରେ ଶୋଇବାକୁ କହିଲେ । କାରଣ ସେମାନେ ଶରତ ଓ ତାଙ୍କ ଗ୍ରାମର ଆତ୍ମୀୟ କରବାବୁଙ୍କ ନିରାପତ୍ତା ନେଇ ସଚେତନ ଥିଲେ ।

ସେ ଦିନର ସେଇ ଦୁର୍ଦ୍ଦିନ ପରିସ୍ଥିତିରେ ଆତଙ୍କିତ ଥିବା ଶରତଙ୍କ ପାଇଁ ଏହି ଘଟଣା ଶିକ୍ଷଣୀୟ ଓ ଅନୁଭୂତି ସଂପନ୍ନ ହୋଇଥିଲା । ସେ ସେଦିନର ସ୍ମୃତିଚାରଣ କରିବାକୁ ଯାଇ ଲେଖିଛନ୍ତି, ***"ମୋ ଜୀବନରେ ପ୍ରଥମ ଥର ମୁଁ ମଣିଷକୁ ଭଗବାନ ରୂପରେ ଦେଖିଥିଲି । ସେହି ମୁହୂର୍ତ୍ତର ଆତ୍ମାନୁଭୂତି ମୋର ପରବର୍ତ୍ତୀ ଜୀବନର ଦର୍ଶନ ରୂପେ କାୟା ବିସ୍ତାର କରିଥିଲା । ସେଥିପାଇଁ ମୋର କର୍ମ ପ୍ରବାହରେ ଆସୁଥିବା ପ୍ରତ୍ୟେକ ମଣିଷ ଥିଲେ ମୋ ପାଇଁ ଜଣେ ଜଣେ ଈଶ୍ୱର ।"***

## ନିଜ ଚରିତ୍ର ନିଜଦ୍ୱାରା ମୂଲ୍ୟାୟନ

କୈଶୋର ଅବସ୍ଥା ହେଉଛି ଜଣେ ବ୍ୟକ୍ତିର ଚରିତ୍ର ନିର୍ମାଣର ପ୍ରକୃଷ୍ଟ ବୟସ । ଜୀବନର ପରବର୍ତ୍ତୀ ସମୟରେ ଯିଏ ଯେପରି ଚରିତ୍ର ପ୍ରଦର୍ଶନ କରିଥାନ୍ତି; ତାହାର ନିଅଁ ପ୍ରାୟତଃ ପଡ଼ିଥାଏ ତରୁଣ ବୟସରେ । ଏ ସଂପର୍କରେ ମୋହନ ଦାସ କରମଚାନ୍ଦ ଗାନ୍ଧି ତାଙ୍କର ଆତ୍ମ ଜୀବନୀ "ମାଇଁ ଏକ୍ସପେରିମେଣ୍ଟ୍ ଉଇଥ୍ ଟ୍ରୁଥ"ରେ ଅନେକ କଥା ଉଲ୍ଲେଖ କରିଛନ୍ତି ।

ସେହିପରି ପ୍ରତିଦିନର ଶଯ୍ୟାକୁ ଗଲାବେଳେ ତରୁଣ ଶରତ ନିଜେ ନିଜକୁ ପ୍ରଶ୍ନ କରୁଥିଲେ, *"ମୋର ଗୋଟିଏ ଦିନର ଚରିତ୍ରକୁ ମୁଁ ଠିକ୍ ଭାବେ ପ୍ରଦର୍ଶନ କରି ପାରିଛି ତ ? ମୁଁ ଯେଉଁ ପଥରେ ନିଜକୁ ପରିଚାଳିତ କରିଅଛି, ତାହା ଯଥାର୍ଥ ତ ?"* ଏମିତି ଅନେକ ଆତ୍ମଚିନ୍ତନ ମାଧ୍ୟମରେ ସେ ଯେତେଦୂର ସମ୍ଭବ ନିଜର ଚଲାପଥକୁ ଛାତ୍ରଜୀବନରେ ସୁସଂଜତ ଓ ସତ୍ୟନିଷ୍ଠ କରି ପାରୁଥିଲେ । ଏହା ଫଳରେ ସେ ନିଜକୁ କୁପଥରୁ ଦୂରେଇ ରଖି ପାରୁଥିଲେ । ନିଜର ଆତ୍ମ-ପ୍ରତ୍ୟୟ ମଧ୍ୟ ଦିନକୁ ଦିନ ସ୍ପଷ୍ଟରୁ ସ୍ପଷ୍ଟତର ହେଉଥିଲା । ଏହିପରି ସେ ନିଜେ ନିଜକୁ ମୂଲ୍ୟାୟନ କରୁଥିଲେ । ନିଜେ କରୁଥିବା ଦୋଷତ୍ରୁଟିକୁ ସଂଶୋଧନ କରି ଜୀବନ ପଥରେ ଆଗେଇ ଚାଲୁଥିଲେ ।

### ଛାତ୍ର ଜୀବନର ମୂଳମନ୍ତ୍ର : ସ୍ୱାଧ୍ୟାୟ

ଛାତ୍ର ଜୀବନର ସଫଳତାର ଚାବିକାଠି ହେଉଛି ସ୍ୱାଧ୍ୟାୟ । ଯେଉଁ ଛାତ୍ରର ସ୍ୱ ଅଧ୍ୟୟନ ଓ ଏକାଗ୍ରତା ଯେତେ ଅଧିକ ତା'ର ସଫଳତା ମଧ୍ୟ ସେତିକି ବସ୍ତୁନିଷ୍ଠ ଓ ବଳିଷ୍ଠ ହୋଇଥାଏ । ଗଭୀର ଆତ୍ମ ଚିନ୍ତନ ଓ ସ୍ୱାଧ୍ୟାୟ ଫଳରେ ଶରତ ଚନ୍ଦ୍ର ୧୯୪୯ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟ ଦ୍ୱାରା ପରିଚାଳିତ ମାଧ୍ୟମିକ ବିଦ୍ୟାଳୟ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଥିଲେ । ସଂପ୍ରତି ମାଧ୍ୟମିକ ବିଦ୍ୟାଳୟ ପରୀକ୍ଷା ୧୯୫୫-୫୬ ମସିହାରେ କଟକଠାରେ ପ୍ରତିଷ୍ଠିତ ମାଧ୍ୟମିକ ଶିକ୍ଷା ପରିଷଦ, ଓଡ଼ିଶା ଦ୍ୱାରା ପରିଚାଳିତ ।

### ବିବାହ

ଜଣେ ବ୍ୟକ୍ତିର ଜୀବନରେ ବିବାହ ହେଉଛି ଏକ ପ୍ରଧାନ ଓ ସ୍ମରଣୀୟ ଘଟଣା । ସାଧାରଣତଃ ବ୍ୟକ୍ତି ଜଣକ ରୋଜଗାରକ୍ଷମ ହେଲେ ବିବାହ ବନ୍ଧନ ମଧ୍ୟକୁ ଆସିବାକୁ ଶ୍ରେୟ ମନେ କରିଥାନ୍ତି । ପିତା ମହେଶ୍ୱର ଦାଶ ସବୁବେଳେ ଚାହୁଁଥିଲେ ବଡ଼ପୁଅ ଶରତ ଯେତେ ପଢ଼ିବାକୁ ଚାହିଁବେ ସେ ପଢ଼ାଇବେ । ରୋଜଗାରକ୍ଷମ ହେଲେ ତାଙ୍କୁ ବାହାଦେବେ । ଏହାହିଁ ସାଧାରଣତଃ ପ୍ରତ୍ୟେକ ପିତାମାତା ତାଙ୍କ ସନ୍ତାନ ସନ୍ତତିଙ୍କ ପାଇଁ ଚାହିଁଥାନ୍ତି ।

ମାତ୍ର ବିଧିର ବିଧାନ ଥିଲା ବିଚିତ୍ର । ୧୯୪୪ ମସିହାରେ ପତ୍ନୀ ରାଧାମଣି ଦେବୀଙ୍କର ଅକାଳ ବିୟୋଗ ଘଟିଲା । ସେହି ମୁହୂର୍ତ୍ତରୁ ଦାଶ ପରିବାର ଉପରେ ପଡ଼ିଗଲା ବିପଦ । ସେହି ସମୟରେ ଜେଜେ ମାଆ ଗୌତମୀ ସ୍ୱତଃପ୍ରବୃତ୍ତ ଭାବେ ଘରର ସମସ୍ତ ପାରିବାରିକ ଜଞ୍ଜାଳ, ପିଲାମାନଙ୍କର ଅଳି ଅର୍ଦ୍ଦଳି ସମ୍ଭାଳିବାକୁ ଆଗେଇ ଆସିଲେ । ଜେଜେମାଆଙ୍କ ଅବସ୍ଥା ଦେଖି ଅନେକ ଶୁଭେଚ୍ଛୁ ବନ୍ଧୁ ପିତା ମହେଶ୍ୱରଙ୍କୁ ଦ୍ୱିତୀୟ ବିବାହ କରିବାକୁ ପରାମର୍ଶ ଦେଲେ । ମାତ୍ର ଦୃଢ଼ ପ୍ରତିଜ୍ଞ ମହେଶ୍ୱର ପୁନଃ ବିବାହକୁ ପ୍ରତ୍ୟାଖ୍ୟାନ କଲେ । ନିଜର ସନ୍ତାନମାନଙ୍କର ଭବିଷ୍ୟତକୁ ଆଖି ଆଗରେ ରଖି ସବୁ ଝଡ଼ ଝଞ୍ଜାକୁ ମୁକାବିଲା କରିବା ନିମନ୍ତେ ଶପଥ ନେଲେ । ସେହି ସମୟରେ ମା' ଛେଉଣ୍ଡ ଚାରି ପୁଅ ଶରତ, ରଜତ, ଜଗତ ଓ ଅଦ୍ୱୈତଙ୍କୁ ଲାଳନ ପାଳନ କରିବା ନିମନ୍ତେ ଅନେକ ବନ୍ଧୁବାନ୍ଧବ ସାହାଯ୍ୟର ହାତ ବଢ଼ାଇଲେ ।

ସେମାନଙ୍କ ମଧ୍ୟରେ ଥିଲେ 'ଜମ୍ମେଇ ମାଆ', ଯିଏ କି ପରିବାରର ସମସ୍ତ ସେବା ଦାୟିତ୍ୱ ନେଉଥିଲେ । ଏତଦ୍‌ବ୍ୟତୀତ ମହେଶ୍ୱରଙ୍କ ବଡ଼ ଭଉଣୀ ମଧ୍ୟ ପରିବାରର ବିପଦ ଆପଦ ସମୟରେ ଅନେକ ନୀତିଗତ ନିଷ୍ପତ୍ତି ନେଉଥିଲେ । ତାଙ୍କ ନିଷ୍ପତ୍ତିକୁ ପରିବାରର ଅନ୍ୟ ସଦସ୍ୟମାନେ ସାଦରରେ ଗ୍ରହଣ କରୁଥିଲେ ।

ସେ ସମୟରେ ସମଗ୍ର ଦେଶରେ ବାଲ୍ୟ ବିବାହ ପ୍ରଥା ପ୍ରାୟତଃ ପ୍ରଚଳିତ ଥିଲା । ତାହା ଥିଲା ମୋଟାମୋଟି ଦେଶର ସାମାଜିକ ସ୍ଥିତି । ଶରତଙ୍କ ସମୟରେ ଜଣେ ପୁରୁଷ ୪୦ ବର୍ଷ ବୟସରେ ଜେଜେ ବାପା ଓ ଜଣେ ମହିଳା ୩୫ ବର୍ଷ ବୟସରେ ଜେଜେ ମାଆ ହେବାର ସୌଭାଗ୍ୟ ଅର୍ଜନ କରୁଥିଲେ । ଏ କଥା ଆଜିକାଲିର ପିଲାମାନଙ୍କୁ ବିଚିତ୍ର ଲାଗୁଥିଲେ ମଧ୍ୟ ତାହା ଥିଲା ଦେଶର ଆଶ୍ଚର୍ଯ୍ୟ ଜନକ ସ୍ଥିତି । ଏହି ସ୍ଥିତି ବିରୋଧରେ ଓ ବାଲ୍ୟ ବିବାହ ପ୍ରଥାକୁ ସଂପୂର୍ଣ୍ଣ ନିରୋଧ କରିବା ନିମନ୍ତେ ସମାଜ ସଂସ୍କାରକ ରାମମୋହନ ରାୟ, ଈଶ୍ୱର ଚନ୍ଦ୍ର ବିଦ୍ୟାସାଗର ପ୍ରମୁଖ ଅକ୍ଳାନ୍ତ ପରିଶ୍ରମ କରିଥିଲେ । ଏହା ଫଳରେ ପରବର୍ତ୍ତୀ ସମୟରେ ଦେଶରେ ବ୍ରିଟିଶ ସରକାର ୧୯୨୯ ମସିହାରେ ବାଲ୍ୟ ବିବାହ ନିରୋଧ ଆଇନ କାର୍ଯ୍ୟକାରୀ କରିଥିଲେ । ସେତେବେଳେ ଏହି ଆଇନ ଅନୁସାରେ ଜଣେ ଝିଅର ବୟସ ୧୪ ବର୍ଷ ଓ ପୁଅର ବୟସ ୧୮ ବର୍ଷ ରଖାଯାଇଥିଲା । ସଂପ୍ରତି ଏହି ବୟସର ସୀମା ଯଥାକ୍ରମେ ୧୮ ଓ ୨୧ ବର୍ଷକୁ ବୃଦ୍ଧି କରାଯାଇଅଛି ।

ସେ ଯାହା ହେଉନା କାହିଁକି ଯେତେବେଳେ ଶରତଙ୍କ ବୟସ ପାଞ୍ଚ ବର୍ଷ ହୋଇଥିଲା ଓ ସେ ଧୂଳିଧୂସରିତ ଧରଣୀର ଲୀଳାଖେଳା ମଧ୍ୟରେ ମସଗୁଲ ଥିଲେ,

ସେହି ସମୟରେ ତାଙ୍କ ବଡ଼ ପିଉସୀ ନୃପତି ଦେବୀ ଶିଶୁ ପୁତୁରା ପାଇଁ କନ୍ୟା ଖୋଜାରେ ଲାଗିଥିଲେ । କାରଣ ସେ ସମୟରେ ଗୋଟିଏ ଭଲ ପରିବାରରୁ ଉପଯୁକ୍ତ ସୁଗୁଣା ସଂପନ୍ନା କନ୍ୟା ସନ୍ତାନଟିଏ ପାଇବା ମଧ୍ୟ ଏକ କଷ୍ଟକର ବ୍ୟାପାର ଥିଲା ।

୧୯୩୪ ମସିହା ଡିସେମ୍ବର ମାସରେ ଜିରାଳ ଗ୍ରାମର ସର୍ବରାକାର ଶ୍ରୀ ବୀରଭଦ୍ର ପଣ୍ଡାଙ୍କର ମାର୍ଗଶିର ମାସ ଶେଷ ଗୁରୁବାରଦିନ କନ୍ୟା ସନ୍ତାନଟିଏ ଜନ୍ମ ହୋଇଥିଲା । ନାତୁଣୀର ମାଆ ସୁବର୍ଣ୍ଣା ଦେବୀ ଗୋବିନ୍ଦପୁର ଗ୍ରାମର ଝିଅ ଥିଲେ । ଏହି ଗ୍ରାମରେ ପୂର୍ବରୁ ଦାଶ ପରିବାର ବସବାସ କରୁଥିଲେ । ପରେ କେନ୍ଦୁଢ଼ିପରେ ନୂତନ ଗୃହ ନିର୍ମାଣ ପରେ ସେଠାରେ ଯାଇ ବସବାସ କଲେ । ତେଣୁ ଗୋବିନ୍ଦପୁର ଗ୍ରାମ ଓ କେନ୍ଦୁଢ଼ିପ ଗ୍ରାମ ମଧ୍ୟରେ ଦାଶ ପରିବାରର ଏକ ଅନନ୍ୟ ଓ ଭାବଗତ ସଂପର୍କ ଥିଲା ।

ଏହିପରି ଏକ ସଂପର୍କକୁ ଦୃଢ଼ୀଭୂତ କରିବା ନିମନ୍ତେ ଶରତଙ୍କ ବଡ଼ ପିଉସୀ ନୃପତି ଦେବୀ ଏହି ସୁଯୋଗକୁ ହାତଛଡ଼ା କରିବା ନିମନ୍ତେ ଉଚିତ ମଣି ନ ଥିଲେ । ତେଣୁ ସେ ଶରତଙ୍କ ମାଆ ରାଧାମଣି ଦେବୀଙ୍କୁ ସାଥୀରେ ନେଇ ଜିରାଳ ଗ୍ରାମସ୍ଥ ପଣ୍ଡା ପରିବାରରେ ଏକ ଶୁଭ ମୁହୂର୍ତ୍ତରେ ପହଞ୍ଚିଲେ । ସେତେବେଳକୁ କନ୍ୟା ସନ୍ତାନର ବୟସ ଥିଲା ମାତ୍ର ଛଅ ମାସ । ପଣ୍ଡା ପରିବାରରେ ଅତିଥି ଅଭ୍ୟର୍ଥନା ପାଇବା ପରେ କଥା ପ୍ରସଙ୍ଗରେ ସେହି କନ୍ୟା ସନ୍ତାନଟିକୁ ସେ ବୋହୂ କରିବାକୁ ମନସ୍ଥ କରିଛନ୍ତି ବୋଲି ପ୍ରସ୍ତାବ ଦେଲେ । ପ୍ରସ୍ତାବଟି ସ୍ୱାଗତଯୋଗ୍ୟ ହୋଇଥିବା ଯୋଗୁଁ କନ୍ୟାପିତା ରାଧାକୃଷ୍ଣ ପଣ୍ଡା ଓ ମାତା ସୁବର୍ଣ୍ଣା ଦେବୀ ବିନାଦ୍ୱିଧାରେ ଏଇ ପ୍ରସ୍ତାବରେ ରାଜି ହୋଇଗଲେ ।

ମାତ୍ର ପ୍ରସ୍ତାବଟି ପ୍ରସ୍ତାବ ସ୍ତରରେ କିଛି ବର୍ଷ ପାଇଁ ଅଟକି ରହିଗଲା । ଶରତଙ୍କ ଶିକ୍ଷା ଦୀକ୍ଷା ଦୃଷ୍ଟିକୋଣରୁ ମହେଶ୍ୱର ବାବୁ ବଡ଼ ଭଉଣୀଙ୍କ ବିବାହ ପ୍ରସ୍ତାବକୁ ଚତୁରତାର ସହିତ ଏଡ଼େଇ ଚାଲିଲେ । ପ୍ରଥମତଃ ଏହା ଥିଲା ବାଲ୍ୟ ବିବାହ ଯାହାକି ତତ୍‌କାଳୀନ ସାମାଜିକ ସ୍ତରରେ ପ୍ରଚଳିତ ଥିଲେ ମଧ୍ୟ ଏହା ସମାଜ ଓ ସଂସ୍କାର ବିରୋଧୀ ଥିଲା । ଦ୍ୱିତୀୟତଃ ସେ ଜାଣିଥିଲେ ଯେ ବାଲ୍ୟ ବୟସରେ ବିବାହ ଯେ କୌଣସି ବ୍ୟକ୍ତିର ଶିକ୍ଷାଦୀକ୍ଷା କ୍ଷେତ୍ରରେ ଅନ୍ତରାୟ ସୃଷ୍ଟି କରିଥାଏ ।

ମାତ୍ର ସମୟର ଗତି, ବିଧାନ ଓ ପ୍ରବାହ ବେଳେବେଳେ ଏପରି ଗତି କରିଥାଏ ଯେ ସେଠାରେ ମଣିଷର ସମସ୍ତ ଚିନ୍ତା ଓ ଚେତନା ଫିକା ପଡ଼ିଯାଇଥାଏ । ମଣିଷ ମଧ୍ୟ ତା'ର ପୂର୍ବ ନିଷ୍ପତ୍ତି ବଦଳେଇବା ପାଇଁ ବାଧ୍ୟ ହୋଇଥାଏ ।

ଯେଉଁ ବାପା ପୁଅର ସହଳ ବିବାହ ସପକ୍ଷରେ ନ ଥିଲେ, ସେ ଘଟଣାକ୍ରମେ ପ୍ରାଣପ୍ରିୟା ସ୍ତ୍ରୀର ମୃତ୍ୟୁପରେ ପରିବାରର ହିତ ଦୃଷ୍ଟିରୁ ଶରତଙ୍କ ବିବାହ ସପକ୍ଷରେ ଅନୁକୂଳ ମତ ରଖିଥିଲେ । ଶେଷରେ ବଡ଼ ଭଉଣୀ ତଥା ଶରତଙ୍କ ପିଉସୀଙ୍କ ପୂର୍ବୋକ୍ତ ପ୍ରସ୍ତାବ ଦାଶ ପରିବାରରେ କାର୍ଯ୍ୟକାରୀ ହୋଇଥିଲା ।

ସମୟ ଓ ମୁହୂର୍ତ୍ତ ଦେଖି ୧୯୪୭ ମସିହାରେ ଶରତଙ୍କର ବିବାହ ସର୍ବଗୁଣ ସଂପନ୍ନା ଜିରାଳଗ୍ରାମର ସୁନାମଧନ୍ୟ ବ୍ୟକ୍ତି ଓ ସର୍ବରାକାର ରାଧାକୃଷ୍ଣ ପଣ୍ଡା ଓ ସୁବର୍ଣ୍ଣାଦେବୀଙ୍କ କନ୍ୟା ଆୟୁଷ୍ମତୀ ଜାନକୀ ଦେବୀଙ୍କ ସହିତ ସଂପନ୍ନ ହେଲା । ସେତେବେଳକୁ କିଶୋର ଶରତଙ୍କୁ ହୋଇଥିଲା ମାତ୍ର ସତର ବର୍ଷ ଓ କନ୍ୟା ଜାନକୀଙ୍କୁ ହୋଇଥିଲା ତେର ବର୍ଷ । ଧୀର ସୁଲଳିତ ତୃତୀୟା ଜ୍ୟୋସ୍ନାସମ ମହେଶ୍ୱର ଦାଶଙ୍କ ପ୍ରଥମ ପୁତ୍ରବଧୂ ଅୟିସୁଲକ୍ଷଣା ଜାନକୀ ପରିବାରର ଅଂଗନ ମଧ୍ୟରେ ପଦାର୍ପଣ କରିଥିଲେ । ସେହି ମହାର୍ଘ ମୁହୂର୍ତ୍ତର ମଙ୍ଗଳ ସାହାନାଇ ଦାଶ ପରିବାରର ସମସ୍ତଙ୍କୁ ଚମତ୍କୃତ କରିବା ସହିତ ମାଆ ଛେଉଣ୍ଡ ଶରତଙ୍କ ତିନିଭାଇ ରଜତ, ଜଗତ, ଅଦ୍ୱୈତଙ୍କ ହୃଦୟରେ ନୂତନପ୍ରାଣ ସଂଚରିତ କରିଥିଲା । ଶରତ ମଧ୍ୟ ଜାନକୀ ଦେବୀଙ୍କୁ ଜୀବନସାଥୀ ରୂପେ ପାଇ ନିଜକୁ ଭାଗ୍ୟବାନ ମଣିଥିଲେ ।

**ଶଶୁରଘରର ଐତିହ୍ୟ ଓ ପରମ୍ପରା**

ଜିରାଳରେ ଅବସ୍ଥିତ ଶରତଙ୍କ ଶଶୁର ଘରର ଖାନଦାନୀ ସେ ଅଞ୍ଚଳରେ ସର୍ବ ବିଦିତ । ଶଶୁର ରାଧାକୃଷ୍ଣ ପଣ୍ଡା, ପିତା ବୀରଭଦ୍ର ପଣ୍ଡାଙ୍କ ଭଳି ଯୋଗ୍ୟ ଓ ପ୍ରତିଷ୍ଠିତ ଥିଲେ । ସେ ତାଙ୍କର କାର୍ଯ୍ୟଶୈଳୀ ଓ ସମାଜସେବା ମାଧ୍ୟମରେ ସେ ଅଞ୍ଚଳର ଅଧିବାସୀମାନଙ୍କର ଶ୍ରଦ୍ଧାଭାଜନ ହୋଇପାରିଥିଲେ । ସେହିପରି ଶରତଙ୍କ ଶାଶୁ ଜଣେ ସୁଗୃହିଣୀ ଓ ଉଦାରଚେତା ମହିଳା ହୋଇଥିବା ହେତୁ ସତ୍ୟ-ଦୟା-କ୍ଷମା ଆଦି ସୁଗୁଣ ସହିତ ପୁଅ ଝିଅମାନଙ୍କୁ ଶୈଶବରୁ ଅନୁପ୍ରାଣିତ କରିପାରିଥିଲେ ।

ଶରତଙ୍କ ବଡ଼ ଶ୍ୟାଳକ ଗୁରୁପ୍ରସାଦ ପଣ୍ଡା ଢେଙ୍କାନାଳ ଜିଲ୍ଲାରେ ଅବସ୍ଥିତ ବିଭିନ୍ନ ଉନ୍ନୀତ ଉଚ୍ଚ ପ୍ରାଥମିକ ବିଦ୍ୟାଳୟରେ ପ୍ରଧାନଶିକ୍ଷକ ପଦରେ ଅଧିଷ୍ଠିତ ହୋଇ ଅବସର ନେଇଛନ୍ତି । ସେହିପରି ସାନ ଶ୍ୟାଳକ ଇଂଜିନିୟର ଧରଣୀଧର ପଣ୍ଡା ତାଳଚେରସ୍ଥିତ ଫର୍ଟିଲାଇଜର କରପୋରେସନ୍‌ର ଅବସ୍ଥାପିତ ଥିଲେ । ଇତି ମଧ୍ୟରେ ସେ ଅବସର ଗ୍ରହଣ କରିଛନ୍ତି ।

ଶରତଙ୍କ ଶାଶୁ ସୁବର୍ଣ୍ଣା ଦେବୀ ଜଣେ ଉଚ୍ଚ ମହୀୟସୀ ମହିଳା ଥିଲେ । ସେ ଥିଲେ ଦୁଇ ପୁଅ ଓ ତିନି ଝିଅଙ୍କ ମାଆ । ତାଙ୍କର ତିନିଝିଅ ଲଳିତା, ସୀତା ଓ

ଜାନକୀଙ୍କ ମଧ୍ୟରେ ଜାନକୀ ଥିଲେ ସର୍ବକନିଷ୍ଠା । ସେ ଝିଅମାନଙ୍କ ଚରିତ୍ରକୁ ଯେପରି ଗଢ଼ିଥିଲେ, ତାହାର ସୁଫଳ ସେମାନେ ବୋହୂ ହୋଇଯାଇଥିବା ଶଶୁର ଘର ପରିବାର ଉପରେ ପଡ଼ିଥିଲା ।

ସେଥିପାଇଁ ଶରତ ତାଙ୍କ ଶାଶୁ ସୁବର୍ଣ୍ଣାଦେବୀଙ୍କୁ ସମ୍ମାନ ଜଣାଇ କହୁଥିଲେ, *"ମୋ ଶଶୁର ଘର ପରିବାରର ସର୍ବୋତ୍ତମ ମଣିଷ ଥିଲେ ମୋ ଶାଶୁ । ତାଙ୍କର ନାମ ଥିଲା ସୁବର୍ଣ୍ଣା ଏବଂ ସେ କୌଣସି ଗୁଣରେ ଶୁଦ୍ଧ ସୁବର୍ଣ୍ଣମୁଣ୍ଡାଠାରୁ କମ୍ ନ ଥିଲେ ।"*

ସେହି ସୁନାମୁଣ୍ଡାଠାରୁ କମ୍ ନ ଥିବା ଭଦ୍ର ମହିଳା ସୁବର୍ଣ୍ଣାଦେବୀ ଯେତେବେଳେ ଶରତଙ୍କ ମା ଛେଉଣ୍ଡ ତିନି ଭାଇଙ୍କୁ ଦେଖୁଥିଲେ, ସେତେବେଳେ ତାଙ୍କ ଆଖିରେ ସ୍ୱତଃପ୍ରବୃତ୍ତ ଲୁହ ଆସିଯାଉଥିଲା । ସେଥିପାଇଁ ସେ ସବୁବେଳେ ଝିଅ ଜାନକୀଙ୍କୁ କହୁଥିଲେ, "ମାଆ ! ଏଇ ପିଲା ତିନିଜଣଙ୍କ ପ୍ରତି ତୋର ବ୍ୟବହାର ଓ ଆଚରଣକୁ ସବୁ ସମୟରେ ମାତୃ ସୁଲଭ ରଖିଥିବୁ ।" ସେଥିପାଇଁ ସବୁ ସମୟରେ ଶରତ ଶାଶୁଙ୍କ ପ୍ରତି ନିଜର ଭକ୍ତି ଓ ଶ୍ରଦ୍ଧା ନିବେଦନ କରି କହୁଥିଲେ, *"ମୋ ଶାଶୁଙ୍କର ଅନ୍ତଃକରଣରୁ ପ୍ରତିଭାତ ହେଉଥିବା ଏତାଦୃଶ ଶିକ୍ଷା ଯୋଗୁଁ ମୋ ସ୍ତ୍ରୀ ସବୁବେଳେ ମୋର ଭାଇମାନଙ୍କୁ ପୁତ୍ରବତ୍ ବ୍ୟବହାର ପ୍ରଦର୍ଶନ କରୁଥିଲେ ।"*

## ରେଭେନ୍‌ସା ମହାବିଦ୍ୟାଳୟରେ ଅଧ୍ୟୟନ

୧୯୪୯ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟ ଦ୍ୱାରା ପରିଚାଳିତ ହାଇସ୍କୁଲ ସାର୍ଟିଫିକେଟ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହେଲା ପରେ ଶରତ ୧୯୪୯-୫୦ ଶିକ୍ଷାବର୍ଷରେ ରେଭେନ୍‌ସା ମହାବିଦ୍ୟାଳୟ, କଟକରେ ବିଜ୍ଞାନର ଛାତ୍ର ହିସାବରେ ଆଇ.ଏସସିରେ ନାମ ଲେଖାଇଲେ । ୧୯୫୧ ମସିହାରେ ଆଇ.ଏସସି ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହେଲେ । ଏହି ମହାବିଦ୍ୟାଳୟରୁ ଉତ୍କଳ ବିଶ୍ୱବିଦ୍ୟାଳୟ ଦ୍ୱାରା ଅନୁଷ୍ଠିତ ବି.ଏସ୍‌ସି ଡିଗ୍ରୀ ପରୀକ୍ଷାରେ ପଦାର୍ଥବିଜ୍ଞାନ ସମ୍ମାନ ସହିତ ୧୯୫୩ ମସିହାରେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଥିଲେ ।

ରେଭେନ୍‌ସା ମହାବିଦ୍ୟାଳୟରେ ଅଧ୍ୟୟନ ସମୟରେ ଐତିହ୍ୟ ସଂପନ୍ନ ପୂର୍ବ ଛାତ୍ରାବାସ ତାଙ୍କର ରହଣିସ୍ଥାନ ଥିଲା । ପୂର୍ବ ଛାତ୍ରାବାସ ଆନୁକୂଲ୍ୟରେ ଅନ୍ତେବାସୀମାନଙ୍କ ମଧ୍ୟରେ ଅନୁଷ୍ଠିତ ହେଉଥିବା ବିଭିନ୍ନ ପ୍ରତିଯୋଗିତାରେ ଅଂଶ ଗ୍ରହଣ କରି ସେ ବିଭିନ୍ନ ପ୍ରତିଯୋଗିତାରେ କୃତିତ୍ୱ ହାସଲ କରୁଥିଲେ ।

## ଅଧ୍ୟାପନାର ପ୍ରଥମ ଯୋଗ୍ୟତା : ଏମ୍.ଏଡ୍.

ସେ ସମୟରେ ମାଧ୍ୟମିକ ଶିକ୍ଷା ସ୍ତରରେ ବରିଷ୍ଠ ଶିକ୍ଷକ ହିସାବରେ କାର୍ଯ୍ୟ କରିବା ନିମନ୍ତେ ବି.ଏଡ୍. ଡିଗ୍ରୀ ଯୋଗ୍ୟତା ସଂପନ୍ନ ଶିକ୍ଷକଙ୍କର ଘୋର ଅଭାବ ଥିଲା ।

ବିଜ୍ଞାନରେ ଜଣେ ଉଚ୍ଚ ଯୋଗ୍ୟତାଧାରୀ ହୋଇଥିବା ହେତୁ ଓ ଶିକ୍ଷକତାକୁ ମୂଳମନ୍ତ୍ର କରିଥିବା ହେତୁ ଶରତ ଚନ୍ଦ୍ର ବି.ଏସ୍‌ସି ଉତ୍ତୀର୍ଣ୍ଣ ହେବା ପରେ ପରେ ପାଟଣା ବିଶ୍ୱବିଦ୍ୟାଳୟରୁ ବି.ଏଡ଼୍ ଡିଗ୍ରୀ ୧୯୫୪ ମସିହାରେ କୃତିତ୍ୱର ସହିତ ହାସଲ କରିଥିଲେ ।

ଶିକ୍ଷାକ୍ଷେତ୍ରରେ ଗୋଟିଏ ପରେ ଗୋଟିଏ ସଫଳତା ହାସଲ କରି ଜଣେ ଅଧ୍ୟାପକ ହେବା ନିମନ୍ତେ ସେ ୧୯୫୪-୫୫ ଶିକ୍ଷାବର୍ଷରେ ଏମ୍.ଏଡ୍ ଅଧ୍ୟୟନ କରିବାକୁ ମନସ୍ଥ କଲେ । ବିଭିନ୍ନ ବାଧାବିଘ୍ନକୁ ସାହାସର ସହିତ ମୁକାବିଲା କରି ସେ ବର୍ଷ କୌଣସି ମତେ ଏମ୍.ଏଡ୍‌ରେ ନାମ ଲେଖାଇଲେ । ସେ ସମୟରେ ଶିକ୍ଷା ଦର୍ଶନ, ଶିକ୍ଷା ମନସ୍ତତ୍ତ୍ୱ, ଶିକ୍ଷା ପ୍ରଶାସନ, ଶିକ୍ଷା ପରିମାପ, ଶିକ୍ଷାଦାନ ପଦ୍ଧତି ଆଦି ସେ ବିଶେଷଭାବେ ଅଧ୍ୟୟନ କଲେ । ଏହା ଫଳରେ ସେ ଅତି ସହଜରେ ଶୈକ୍ଷିକ ଜ୍ଞାନ ବିଜ୍ଞାନକୁ ନିଜର ଚିନ୍ତା ଓ ଚେତନା ମଧ୍ୟରେ ରୂପାୟିତ କରି ପାରିଥିଲେ । ଏହାଦ୍ୱାରା ସେ ଦୀର୍ଘ ଚାରି ଦଶନ୍ଧି ଧରି କାର୍ଯ୍ୟ କରୁଥିବା ଶୈକ୍ଷିକ ପରିବେଶକୁ ନୂତନ ଦିଗ୍‌ଦର୍ଶନ ଦେଇ ପାରୁଥିଲେ ।

ମାତ୍ର ଏମ୍.ଏଡ୍ ଅଧ୍ୟୟନ ସମୟରେ ତାଙ୍କର ଆର୍ଥିକସ୍ଥିତି ଖରାପ ଆଡ଼କୁ ଗତି କରିଥିଲା । ସେ ଶେଷ ପରୀକ୍ଷାରେ ଫର୍ମପୂରଣ ନିମନ୍ତେ ଯାଇପାରି ନ ଥିବା ହେତୁ ଜନୈକ ଅଧ୍ୟାପକ ଯେତେବେଳେ ସେ କାହିଁକି ଫର୍ମ ପୂରଣ ପାଇଁ ଆସି ନାହାଁନ୍ତି ବୋଲି ଜାଣିଲେ, ଦାଙ୍କୁ ଛାତ୍ରାବାସରୁ ଡାକି ପଠାଇଲେ । ନିଜେ ତାଙ୍କର ପରୀକ୍ଷା ଦେୟ ଦେଲେ, ଯାହାକି ସ୍ୱାଭିମାନୀ ଶରତ ନେବାକୁ ଚାହୁଁ ନ ଥିଲେ । ମାତ୍ର ପରବର୍ତ୍ତୀ ସମୟରେ ଅଧ୍ୟାପକ ଜଣକ ସେ ଦେଇଥିବା ଟଙ୍କା ଫେରାଇ ନେବାକୁ ଅଙ୍ଗୀକାରବଦ୍ଧ ହେବାରୁ ସେ ଧାର ସୂତ୍ରରେ ଅର୍ଥ ନେଇ ଫର୍ମ ପୂରଣ କଲେ । ଯେତେବେଳେ ସେ ଧାର ଅର୍ଥ ଫେରସ୍ତ ଦେଲେ ଅଧ୍ୟାପକ ଜଣକ ଏକ ଟଙ୍କା ମାତ୍ର ରଖିଥିଲେ । ଏହା ଥିଲା ସେ ସମୟର ଅନନ୍ୟ ଗୁରୁ ଛାତ୍ର ସଂପର୍କ ।

ସେ ବର୍ଷ ପାଟଣା ବିଶ୍ୱବିଦ୍ୟାଳୟ ଦ୍ୱାରା ୧୯୫୫ ମସିହାରେ ପରିଚାଳିତ ଏମ୍.ଏଡ୍ ପରୀକ୍ଷାରେ ଶରତ ଚନ୍ଦ୍ର ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କରି ଉତ୍ତୀର୍ଣ୍ଣ ହୋଇଥିଲେ ।

ଏମ୍.ଏଡ୍. ଯୋଗ୍ୟତା ହାସଲ କରିଥିବା ଯୋଗୁଁ ସେ ତତ୍‌କାଳୀନ ପ୍ରଚଳିତ ନିୟମ ଅନୁସାରେ ମହାବିଦ୍ୟାଳୟ ସ୍ତରରେ ଶିକ୍ଷା ବିଷୟରେ ଅଧ୍ୟାପକ ହେବାକୁ ଯୋଗ୍ୟ ବିବେଚିତ ହୋଇଥିଲେ ।

## ଓଡ଼ିଶା ଲୋକସେବା ଆୟୁକ୍ତ ଓ ଅଧ୍ୟାପକ ମନୋନୟନ

୧୯୫୫ ମସିହାରେ ଓଡ଼ିଶା ଲୋକସେବା ଆୟୁକ୍ତ ଓଡ଼ିଶାର ସରକାରୀ ମହାବିଦ୍ୟାଳୟ ନିମନ୍ତେ ଶିକ୍ଷା ବିଭାଗର ଅଧ୍ୟାପକ ନିଯୁକ୍ତି ନିମନ୍ତେ ବିଜ୍ଞପ୍ତି ପ୍ରକାଶ କରିଥିଲେ । ଏହି ବିଜ୍ଞପ୍ତି ଅନୁସାରେ ଏକାଧିକ ପ୍ରାର୍ଥୀ ସାକ୍ଷାତାକାର ଦେଇଥିଲେ । ସେହିସବୁ ପ୍ରାର୍ଥୀ ପ୍ରଭାବଶାଳୀ ଏବଂ ଉନ୍ନତ ସାମାଜିକ ପୃଷ୍ଠଭୂମିରୁ ଆସିଥିଲେ । ସେମାନେ କମିଶନଙ୍କଦ୍ୱାରା ମନୋନୀତ ହେବାର ଯଥେଷ୍ଟ ଆଶା ଥିଲା । ମାତ୍ର କମିଶନଙ୍କ ନିରପେକ୍ଷତା ଯୋଗୁଁ ଶରତ ଚନ୍ଦ୍ର ଏକମାତ୍ର ପ୍ରାର୍ଥୀ ଭାବେ ଶିକ୍ଷା ବିଷୟରେ ଆୟୋଗ ଦ୍ୱାରା ଅଧ୍ୟାପକ ରୂପେ ନିଯୁକ୍ତି ହେବା ପାଇଁ ସେ ବର୍ଷ ମନୋନୀତ ହୋଇଥିଲେ ।

## ରେଭେନ୍ସା ମହାବିଦ୍ୟାଳୟରେ ଯୋଗଦାନ

ଓଡ଼ିଶାର ଶିକ୍ଷା ଇତିହାସରେ ରେଭେନ୍ସା କଲେଜର ସ୍ଥାନ ସ୍ୱତନ୍ତ୍ର । ଥୋମାସ ଏଡ୍‌ୱାର୍ଡ଼ ରେଭେନ୍ସା ସାହେବଙ୍କ ଉଦ୍ୟମରେ ଏହି ମହାବିଦ୍ୟାଳୟ ୧୮୬୮ ମସିହାରେ ୬ ଜଣ ପିଲାଙ୍କୁ ନେଇ କଟକ ଜିଲ୍ଲା ସ୍କୁଲରେ ଆରମ୍ଭ ହୋଇଥିଲା । ସଂପ୍ରତି ଏହା ୧୫ ନଭେମ୍ବର, ୨୦୦୬ ମସିହାରେ ରେଭେନ୍ସା ସ୍ୱୟଂଶାସିତ ବିଶ୍ୱବିଦ୍ୟାଳୟରେ ପରିଣତ ହୋଇଅଛି ।

ଏହିପରି ଏକ ଐତିହ୍ୟ ସଂପନ୍ନ ଅନୁଷ୍ଠାନରେ ଶରତ ଚନ୍ଦ୍ର ଶିକ୍ଷା ଅଧ୍ୟାପକ ରୂପେ ୧୯୫୫ ମସିହାରେ ଯୋଗଦାନ କରିଥିଲେ । ସେ ସମୟରେ ଆଇ.ଏ ଓ ବି.ଏ ସ୍ତରରେ ଶିକ୍ଷା ଏକ ସ୍ୱତନ୍ତ୍ର ବିଷୟ ରୂପେ ଶିକ୍ଷାଦାନ କରାଯାଉଥିଲା । କ୍ରମଶଃ ରେଭେନ୍ସା ମହାବିଦ୍ୟାଳୟରେ ଶିକ୍ଷା ବିଭାଗର ପରିସର ବିସ୍ତୃତ ହୋଇ ସ୍ନାତକସ୍ତରରେ ସମ୍ମାନ ବିଷୟରେ ଶିକ୍ଷାଦାନ କରାଗଲା । ସଂପ୍ରତି ଏହି ବିଭାଗଟି ଏତେ ବିସ୍ତୃତ ଯେ ଏଥିରେ ଏମ୍.ଏ. (ଶିକ୍ଷା), ଏମ୍.ଫିଲ୍ (ଶିକ୍ଷା) ଗବେଷଣା ଆଦିର ସୁଫଳ ଶିକ୍ଷାର୍ଥୀମାନେ ପାଇପାରୁଛନ୍ତି ।

ଷାଠିଏ ଦଶକରେ ରେଭେନ୍ସାର ଶିକ୍ଷା ବିଭାଗର ଅଧ୍ୟାପନା ଦାୟିତ୍ୱରେ ଥିବା ବ୍ୟକ୍ତି ବିଶେଷ ହେଲେ ପ୍ରଫେସର ରାମ ନାରାୟଣ ମହାନ୍ତି, ନାଟ୍ୟକାର ପ୍ରାଣବନ୍ଧୁ କର, ଅଧ୍ୟାପକ ତ୍ରିଲୋଚନ ଷଡ଼ଙ୍ଗୀ ପ୍ରମୁଖ ମାନ୍ୟଗଣ୍ୟ ଅଧ୍ୟାପକ ଗଣ ।

ଶରତଙ୍କ ଜୀବନରେ ତତ୍‌କାଳୀନ ରେଭେନ୍ସା ମହାବିଦ୍ୟାଳୟର ଚାକିରି ଜୀବନ ଯଥେଷ୍ଟ ପ୍ରଭାବ ପକାଇ ପାରିଥିଲା ।

ସେ ସଂପର୍କରେ ସେ କହିବାକୁ ଯାଇ "ଲେଟରସ୍ ଫ୍ରମ୍ ଏ ଗ୍ରାଣ୍ଡଫାଦର" ପୁସ୍ତକରେ ଲେଖିଛନ୍ତି, *"୧୯୫୫ ମସିହାରେ ମୁଁ ମୋ ପରିବାର ସହିତ କଟକରେ ଅବସ୍ଥାନ*

*କଲି । ସାଧାରଣତଃ ସହରୀ ଜୀବନରେ ସମାଜଠାରୁ ଦୂରରେ ରହିବାକୁ ପଡ଼ିଥାଏ । ସେଥିପାଇଁ ଅଧିକାଂଶ କ୍ଷେତ୍ରରେ ମାଆ ଯଦି ରୋଗରେ ପଡ଼େ କିମ୍ବା ଅନ୍ୟତ୍ର ଚାକିରି କରେ ତେବେ ବାପାଙ୍କୁ ପରିବାରର ଯାବତୀୟ କାର୍ଯ୍ୟ ବୁଝିବାକୁ ପଡ଼ିଥାଏ । ତାଙ୍କୁ ଘରର ରନ୍ଧନ କାର୍ଯ୍ୟ କରିବାକୁ ପଡ଼ିଥାଏ । ପିଲାଙ୍କୁ ଖୁଆଇବାଠାରୁ ପିଲାଙ୍କ ପୋଷାକପତ୍ର ମଧ୍ୟ ସଫାସୁତୁରା କରିବାକୁ ହୋଇଥାଏ । ଏଇ କଥା ମୁଁ ୧୯୫୬ ମସିହାରେ ଯେତେବେଳେ ମୋ ସ୍ତ୍ରୀ ରୋଗରେ ପଡ଼ିଲେ ଶିକ୍ଷାଲାଭ କଲି । ସେ ସମୟରେ ମୋର ଜଣେ ପଡ଼ୋଶୀ ବନ୍ଧୁଙ୍କ ସ୍ତ୍ରୀ ଆସି ମୋ ପିଲାଙ୍କ ପୋଷାକପତ୍ର ସଫାସୁତୁରା କଲେ । ସେହିଠାରୁ ହିଁ ମୁଁ ମୋ ମଧ୍ୟରେ ଏକ ନୂତନ ପରିସ୍ଥିତିରେ ବାପାଙ୍କର ପିଲାମାନଙ୍କ ପ୍ରତି ଥିବା ଏକ ନୂତନ ଭୂମିକା ଆବିଷ୍କାର କଲି । ସେଥିପାଇଁ ମୁଁ ପରବର୍ତ୍ତୀ ସମୟରେ ଘରର ଯାବତୀୟ କାର୍ଯ୍ୟ କରିବାକୁ ଦ୍ୱିଧାବୋଧ କଲି ନାହିଁ ।"*

ଏ ସଂପର୍କରେ ସେ ପୁନଶ୍ଚ ଏକ ମୂଲ୍ୟବାନ କଥାର ଅବତାରଣା କରିଛନ୍ତି, *" ମୁଁ ମଧ୍ୟ ସବୁବେଳେ ଘରକାମ ପାଇଁ ଲୋକମାନଙ୍କୁ ନିୟୋଜିତ କରିଅଛି । ସେଥିପାଇଁ ମୋ ଉପରେ ଅଧିକ ପାରିବାରିକ ଚାପ ପଡ଼ିନାହିଁ । ସଂପ୍ରତି ସାଧାରଣ ମଣିଷର ଆର୍ଥିକ ସ୍ୱଚ୍ଛଳତା ଯଥେଷ୍ଟ ବଢ଼ିଅଛି । ଏଥିପାଇଁ ନିଜ ଘରକାମ ପାଇଁ ଜଣେ ଲୋକ ଖୋଜି ପାଇବା ଏକ କଷ୍ଟକର ବ୍ୟାପାର । ସେଥିପାଇଁ ନିଶ୍ଚିତ ଭାବେ ବାପାଙ୍କୁ ମାଆର କିଛି କାମ ସ୍ୱତଃପ୍ରବୃତ୍ତ ଭାବେ ଗ୍ରହଣ କରିବାକୁ ପଡ଼ିବ ।"*

ଅଧ୍ୟାପକ ଶରତ ଚନ୍ଦ୍ର ଏହି ମହାବିଦ୍ୟାଳୟରୁ ୧୯୬୨ ମସିହାରେ ସ୍ଥାନାନ୍ତରିତ ହୋଇ ରାଧାନାଥ ପ୍ରଶିକ୍ଷଣ ମହାବିଦ୍ୟାଳୟ କଟକରେ ଅଧ୍ୟାପକ ରୂପେ ଅବସ୍ଥାପିତ ହୋଇଥିଲେ ।

**ରାଧାନାଥ ପ୍ରଶିକ୍ଷଣ ମହାବିଦ୍ୟାଳୟ, କଟକ**

ସମଗ୍ର ଓଡ଼ିଶା ଓ ଭାରତବର୍ଷରେ ରାଧାନାଥ ପ୍ରଶିକ୍ଷଣ ମହାବିଦ୍ୟାଳୟ ଏକ ଜଣାଶୁଣା ଶିକ୍ଷକ ଶିକ୍ଷା ଅନୁଷ୍ଠାନ । ଏହି ଅନୁଷ୍ଠାନ ୧୯୨୩ ମସିହାରେ କଟକ ପ୍ରଶିକ୍ଷଣ ମହାବିଦ୍ୟାଳୟ ନାମରେ ପ୍ରତିଷ୍ଠିତ ହୋଇଥିଲା । ପରବର୍ତ୍ତୀ ସମୟରେ ଏହା ରାଧାନାଥ ପ୍ରଶିକ୍ଷଣ ମହାବିଦ୍ୟାଳୟ ନାମରେ ରାଜ୍ୟରେ ପରିଚିତ ଥିଲା । ଏବେ ଏହାକୁ ୧୯୮୬ ମସିହା ଜାତୀୟ ଶିକ୍ଷାନୀତି ଆଧାରରେ ଉନ୍ନୀତ କରାଯାଇ ୧୯୮୮ ମସିହାରେ ରାଧାନାଥ ଉଚ୍ଚତର ଶିକ୍ଷା ଅନୁଧ୍ୟାନ ପ୍ରତିଷ୍ଠାନ ନାମରେ ନାମିତ କରାଯାଇଅଛି । ଏଠାରେ ବି.ଏଡ୍, ଏମ୍.ଏଡ୍, ଏମ୍.ଫିଲ୍ ପାଠ୍ୟକ୍ରମ ପରିଚାଳନାର ବ୍ୟବସ୍ଥା ସହିତ ଶିକ୍ଷା ସଂପର୍କୀୟ ବିଭିନ୍ନ ଗବେଷଣାମୂଳକ କାର୍ଯ୍ୟକ୍ରମ ଉପରେ ଗୁରୁତ୍ୱ ଦିଆଯାଉଅଛି । ଏହି ପୁରାତନ ଶିକ୍ଷକ ଶିକ୍ଷଣ ପ୍ରତିଷ୍ଠାନରେ ଯୋଗଦାନ କରି ଶରତ ଚନ୍ଦ୍ର ନିଜକୁ ଭାଗ୍ୟବାନ ମନେ କରିଥିଲେ ।

ସେହି ସମୟରେ ରାଧାନାଥ ପ୍ରଶିକ୍ଷଣ ମହାବିଦ୍ୟାଳୟରେ ଅଧ୍ୟକ୍ଷ ଥିଲେ ରାଜ୍ୟର ବିଶିଷ୍ଟ ଓ ପ୍ରଭାବଶାଳୀ ଶିକ୍ଷାବିତ୍ ପ୍ରଫେସର ବୈଦନାଥ ରଥ । ତାଙ୍କ ନେତୃତ୍ୱରେ ଶିକ୍ଷକ ପ୍ରଶିକ୍ଷଣ ଦୀର୍ଘ ୩୯ ବର୍ଷ ଧରି ଚଳଚଞ୍ଚଳ ଥିଲା । ପ୍ରଫେସର ରଥ ଏହି ଅନୁଷ୍ଠାନରେ ୧ ଜୁଲାଇ, ୧୯୪୯ରୁ ୩୧ ଜୁଲାଇ, ୧୯୬୮ ପର୍ଯ୍ୟନ୍ତ କାର୍ଯ୍ୟରତ ଥିଲେ ।

ପ୍ରଫେସର ରଥ ଶିକ୍ଷାଦାନକୁ ଯେତିକି ଗୁରୁତ୍ୱ ଦେଉଥିଲେ ତାହା ସହିତ ପ୍ରଶିକ୍ଷାର୍ଥୀମାନଙ୍କ ପ୍ରଶିକ୍ଷଣ ସଂପର୍କୀୟ ବିକାଶର ବିଭିନ୍ନ ଆବଶ୍ୟକତାକୁ ନେଇ ମହାବିଦ୍ୟାଳୟରେ ବିଭିନ୍ନ କାର୍ଯ୍ୟମାନ ଏକ ବାର୍ଷିକ କାର୍ଯ୍ୟସୂଚୀ ଅନୁସାରେ କରାଉଥିଲେ । ସେ ୧୯୬୨ ମସିହାରେ ଅଧ୍ୟାପକ ଶରତ ଚନ୍ଦ୍ର ଦାଶଙ୍କୁ ନିଜର ସହକର୍ମୀ ହିସାବରେ ପାଇ ନିଜକୁ ଗୌରାବାନ୍ୱିତ ମନେ କରୁଥିଲେ ।

ଅଳ୍ପଦିନ ମଧ୍ୟରେ ଅଧ୍ୟାପକ ଦାଶ ନିଜର ଉଚ୍ଚ ଚିନ୍ତାଧାରା, ଶିକ୍ଷାଦାନ ସଂପର୍କୀୟ ବିଭିନ୍ନ ବିଷୟବସ୍ତୁକୁ ଶ୍ରେଣୀଗୃହରେ ଚମତ୍କାର ଉପସ୍ଥାପନା ଓ ଅମାୟିକ ବ୍ୟବହାର ଯୋଗୁଁ ପ୍ରଶିକ୍ଷାର୍ଥୀଙ୍କ ହୃଦୟରେ ସ୍ଥାନ ପାଇପାରିଥିଲେ । ବିଜ୍ଞାନ ଶିକ୍ଷାଦାନକୁ ସେ ଶ୍ରେଣୀଗୃହରେ ପ୍ରୟୋଗାତ୍ମକ ଦୃଷ୍ଟିକୋଣରୁ ବିଶେଷ ଧ୍ୟାନ ଦେଇ ଉପସ୍ଥାପନା କରୁଥିଲେ ।

ତାଙ୍କର ନିଷ୍ଠା ଓ କାର୍ଯ୍ୟ ଦକ୍ଷତାକୁ ଦେଖି ଅଧ୍ୟକ୍ଷ ରଥ ତାଙ୍କୁ ରାଧାନାଥ ପ୍ରଶିକ୍ଷଣ ମହାବିଦ୍ୟାଳୟର ଛାତ୍ରାବାସର ଦାୟିତ୍ୱରେ ରଖିଥିଲେ । ସେ ସମୟରେ ପ୍ରତ୍ୟେକ ଛାତ୍ରଛାତ୍ରୀ ଛାତ୍ରାବାସରେ ରହିବା ପ୍ରାୟ ଏକପ୍ରକାର ବାଧ୍ୟତାମୂଳକ ଥିଲା । ଏତଦ୍‌ବ୍ୟତୀତ ଛାତ୍ରାବାସର ଶୃଙ୍ଖଳା ରକ୍ଷା କରିବା ନିମନ୍ତେ ଗୁରୁଛାତ୍ରଙ୍କୁ ମଧ୍ୟ ଦାୟିତ୍ୱ ଦିଆଯାଇଥିଲା । ଛାତ୍ରାବାସରେ ଅବସ୍ଥାନ ସମୟରେ ଅନ୍ତେବାସୀମାନଙ୍କ ଶାରୀରିକ, ମାନସିକ ଓ ଆଧ୍ୟାତ୍ମିକ ବିକାଶ ନିମନ୍ତେ ସୁପରିଟେଣ୍ଡେଣ୍ଟ ଅଧ୍ୟାପକ ଦାଶ ବିଶେଷ ଧ୍ୟାନ ଦେଉଥିଲେ ।

ସେ କିପରି ଅନ୍ତେବାସୀମାନଙ୍କ ଶୃଙ୍ଖଳାବୋଧ ଉପରେ ବିଶେଷ ଗୁରୁତ୍ୱ ଦେଉଥିଲେ, ସେ ସଂପର୍କରେ ରାଧାନାଥ ପ୍ରଶିକ୍ଷଣ ମହାବିଦ୍ୟାଳୟରେ ୧୯୬୪-୬୫ ମସିହା ଶିକ୍ଷା ବର୍ଷରେ ଅଧ୍ୟୟନ କରିଥିବା ସେ ସମୟର ଜନୈକ ଗୁରୁଛାତ୍ର ଓ ରାଜ୍ୟର ଜଣେ ବିଶିଷ୍ଟ ଶିକ୍ଷାବିତ୍ ଇନ୍ଦ୍ରମଣି ପାଣିଗ୍ରାହୀ ତାଙ୍କର ଆତ୍ମଚରିତ "ଜୀବନ ଇନ୍ଦ୍ରଧନୁ"ରେ ଉଲ୍ଲେଖ କରିଛନ୍ତି :

"ଅନେକ ସମୟରେ ରବିବାର ସକାଳେ କେତେକ ଅନ୍ତେବାସୀ ସେମାନଙ୍କ ବନ୍ଧୁବାନ୍ଧବମାନଙ୍କ ଘରକୁ ଯିବାକୁ ଅଡ଼ି ବସନ୍ତି । ମୁଁ ସେମାନଙ୍କୁ ଛାଡ଼ିଦିଏ । ନିୟମାନୁସାରେ ଛାତ୍ରାବାସ ଛାଡ଼ି ବାହାରକୁ ଯିବା ନିମନ୍ତେ ସୁପରିଟେଣ୍ଡେଣ୍ଟଙ୍କ ଅନୁମତି ଦରକାର ।

ଥରେ ସୁପରିଟେଣ୍ଡେଣ୍ଟ ଅଧ୍ୟାପକ ଶରତ ଚନ୍ଦ୍ର ଦାଶ ହଠାତ୍ ହଷ୍ଟେଲ୍ ପରିଦର୍ଶନରେ ଆସିଲେ । କେତେକ ଜଣାଶୁଣା ପିଲାଙ୍କୁ ଖୋଜିଲେ । ମାତ୍ର ସେମାନେ ନ ଥିଲେ । ତେଣୁ ଉପସ୍ଥାନ ବହି ମଗାଇଲେ । ମୁଁ ତାହା ଦେଖାଇଲି । ମାତ୍ର ସେମାନଙ୍କର ପ୍ରେଜେଣ୍ଟ ପଡ଼ିଥିଲା । ସୁପରିଟେଣ୍ଡେଣ୍ଟ ମୋ ଉପରେ ବିରକ୍ତ ହେଲେ ।"

ପୁନଶ୍ଚ ପାଣିଗ୍ରାହୀ ଲେଖିଛନ୍ତି, ଯଦିଓ ସେ ସମୟରେ ଛାତ୍ରାବାସର ପରିଚାଳକଙ୍କୁ କୌଣସି ଛାତ୍ର ସିଧା ଦେଖା କରିବା ନିମନ୍ତେ ସେ ସମୟର ନୀତି ନିୟମ ଅନୁସାରେ ବାରଣ କରାଯାଉଥିଲା, ତଥାପି ସେ ପ୍ରିଫେକ୍ଟ (Prefect)ହୋଇଥିବା ଯୋଗୁଁ ତାଙ୍କ ପ୍ରତି ଏ ନିୟମ ଲାଗୁ ନ ଥିଲା । ତେଣୁ ସେ ଦିନ ମୁଁ ଗଲି । ତାଙ୍କର ସୁପରିଟେଣ୍ଡେଣ୍ଟ ଆବାସ ସେହି ହତା ଭିତରେ । ମାଆ (ସୁପରିଟେଣ୍ଡେଣ୍ଟଙ୍କ ପତ୍ନୀ) ମୋ ପାଇଁ ଜଳଖିଆ ନେଇ ଆସିଲେ । ତା' ପରେ ସୁପରିଟେଣ୍ଡେଣ୍ଟ ନିଜେ ଆସିଲେ । ମୁଁ କହିଲି, "ସାର୍, ଆପଣତ ଗୁରୁଛାତ୍ରମାନଙ୍କର କଥା ଜାଣନ୍ତି, ସେମାନଙ୍କୁ ନ ଛାଡ଼ିଲେ କେମିତି ହେବ । ସେମାନେ ପିଲାଛୁଆ ଘରେ ଛାଡ଼ି ପଢ଼ିବାକୁ ଆସିଛନ୍ତି ।"

ଇନ୍ଦ୍ରମଣି ବାବୁଙ୍କ କଥାଶୁଣି ଅଧ୍ୟାପକ ଦାଶ କିଛି କହିଲେ ନାହିଁ । ସବୁଠାରୁ ବଡ଼ କଥା ହେଲା, ଅଧ୍ୟାପକ ଦାଶ - ତଥା - ସୁପରିଟେଣ୍ଡେଣ୍ଟ ତାଙ୍କୁ 'ମହାଶୟ' ଡାକି ସମ୍ବୋଧନ କରୁଥିଲେ ।

ସାଧାରଣତଃ ପ୍ରଶିକ୍ଷଣ ଅନୁଷ୍ଠାନମାନଙ୍କରେ ପ୍ରଶିକ୍ଷକଙ୍କ ପ୍ରଶିକ୍ଷାର୍ଥୀମାନଙ୍କ ପ୍ରତି ଆଚରଣ ଅନେକ ସମୟରେ ଅନୁକୂଳ ହୋଇ ନ ଥାଏ ବୋଲି ଅନେକ ସମୟରେ ଅଭିଯୋଗ ହୋଇଥାଏ । ସେ ଅଧିକାଂଶ ସମୟରେ ପ୍ରଶିକ୍ଷାର୍ଥୀମାନଙ୍କୁ 'ମହାଶୟ' ବୋଲି ସମ୍ବୋଧନ କରୁଥିଲେ । ସେ ପାଣିଗ୍ରାହୀ ମହାଶୟଙ୍କୁ ଅନେକ ସମୟରେ 'ମହାଶୟ' ବୋଲି ସମ୍ବୋଧନ କରିବା କଥା ସେ ତାଙ୍କୁ ଆତ୍ମଜୀବନୀରେ ଉଲ୍ଲେଖ କରିଛନ୍ତି । ତାହା ତାଙ୍କର ଛାତ୍ର ଓ କନିଷ୍ଠମାନଙ୍କ ପ୍ରତି ମନ ମଧ୍ୟରେ ଥିବା ଅସରନ୍ତି ସ୍ନେହ ଓ ଶ୍ରଦ୍ଧାର ନିଦର୍ଶନ ଥିଲା । ସେ ସେହି ପରମ୍ପରା ଜୀବନର ଶେଷ ପର୍ଯ୍ୟନ୍ତ ବଜାୟ ରଖିଥିଲେ ।

**ରାଜ୍ୟ ଶିକ୍ଷା ପ୍ରତିଷ୍ଠାନକୁ ସ୍ଥାନାନ୍ତର ଓ ପିଏଚ.ଡ଼ି ଉପାଧି**

୧୯୬୫ ମସିହାରେ ଅଧ୍ୟାପକ ଶରତ ଚନ୍ଦ୍ର ଦାଶ ରାଜ୍ୟ ଶିକ୍ଷା ପ୍ରତିଷ୍ଠାନ, ଭୁବନେଶ୍ୱରକୁ ଶିକ୍ଷା ବିଷୟର ପ୍ରାଧ୍ୟାପକ ରୂପେ ସ୍ଥାନାନ୍ତର ହୋଇ ଆସିଲେ । ସେତେବେଳେ ଏହି ପ୍ରତିଷ୍ଠାନର ଅଧ୍ୟକ୍ଷ ଥିଲେ ପ୍ରଫେସର ଶତ୍ରୁଘ୍ନ ନାଥ, ଏମ୍.ଏ (ଲଣ୍ଡନ)ଏବଂ ଉପାଧ୍ୟକ୍ଷ ଥିଲେ ବିଶିଷ୍ଟ ଶିକ୍ଷାବିତ୍ ପ୍ରାଧ୍ୟାପକ ପ୍ରାଣବନ୍ଧୁ କର । ସେହି

ସମୟରେ ଏହି ମର୍ଯ୍ୟାଦା ସଂପନ୍ନ ପ୍ରତିଷ୍ଠାନର ଅନ୍ୟ ଶିକ୍ଷାବିତ୍‌ଗଣଙ୍କ ମଧ୍ୟରେ ଶିକ୍ଷାବିତ୍ ବିବେକାନନ୍ଦ ପତି, ଡକ୍ଟର କାଳି କୁମାର ଦାସ, ଡକ୍ଟର ଜଗନ୍ନାଥ ମହାନ୍ତି ପ୍ରମୁଖ ଥିଲେ । ୧୯୬୪ ମସିହା ସଂକଳ୍ପ ନ: ୩୧୩୫ ତା ୧୮।୧୨।୧୯୬୪ ଅନୁଯାୟୀ ପ୍ରତିଷ୍ଠିତ ଏହି ପ୍ରତିଷ୍ଠାନ ପ୍ରାଥମିକ ଶିକ୍ଷାର ଗୁଣାତ୍ମକ ବିକାଶ ହାସଲ କରିବା ନିମନ୍ତେ ରାଜ୍ୟ ପାଇଁ କାର୍ଯ୍ୟ କରୁଥିଲା । ଏହି ପ୍ରତିଷ୍ଠାନ ମାଧ୍ୟମରେ ରାଜ୍ୟର ପ୍ରାଥମିକ ଶିକ୍ଷା ସହିତ ସଂଶ୍ଳିଷ୍ଟ ଶିକ୍ଷକ ଓ ନିରୀକ୍ଷଣ ଅଧିକାରୀମାନଙ୍କୁ ବିଭିନ୍ନ ସମୟରେ ସେବାକାଳୀନ ପ୍ରଶିକ୍ଷଣ ଦିଆଯାଉଥିଲା ଓ ସେମାନଙ୍କର ଜ୍ଞାନକୁ ତତ୍‌କାଳୀନ ଶୈକ୍ଷିକ ଆବଶ୍ୟକତାକୁ ରଖି ପରିମାର୍ଜିତ କରାଯାଉଥିଲା । ଏତଦ୍‌ବ୍ୟତୀତ ଶିକ୍ଷା ସହିତ ସଂଶ୍ଳିଷ୍ଟ ବହୁବିଧ ସୃଜନାତ୍ମକ ଗବେଷଣାକୁ ମଧ୍ୟ ପ୍ରୋତ୍ସାହିତ କରାଯାଉଥିଲା ।

ଏହି ଅନୁଷ୍ଠାନରେ ଯୋଗ ଦେଲା ପରେ ପ୍ରାଧ୍ୟାପକ ଦାଶ ନିଜର କାର୍ଯ୍ୟଶୈଳୀ ଓ ଗବେଷଣାତ୍ମକ ଦିଗ୍‌ଦର୍ଶନ ଯୋଗୁଁ ଅଧ୍ୟକ୍ଷ ଓ ଅନ୍ୟମାନଙ୍କର ଆସ୍ଥାଭାଜନ ହୋଇ ପାରିଥିଲେ । ନିଜର ପିଏଚ.ଡ଼ି. ଗବେଷଣା କାର୍ଯ୍ୟକୁ ମଧ୍ୟ ତ୍ୱରାନ୍ୱିତ କରିଥିଲେ । ଏ କ୍ଷେତ୍ରରେ ପ୍ରାଧ୍ୟାପକ ଦାଶଙ୍କୁ ଦିଗଦର୍ଶନ ଦେଉଥିଲେ ପ୍ରଫେସର ରାଧାଚରଣ ଦାସ ରାଜ୍ୟ ଓ ଦେଶର ଜଣେ ବିଶିଷ୍ଟ ଶିକ୍ଷାବିତ୍ ଓ ଏନ୍.ସି.ଇ.ଆର୍.ଟିର ପୂର୍ବତନ ନିର୍ଦ୍ଦେଶକ ।

ନିଜର କଠିନ ଅଧ୍ୟବସାୟ ଓ ଗବେଷଣା ଯୋଗୁଁ ୧୯୬୭ ମସିହାରେ ପ୍ରାଧ୍ୟାପକ ଦାଶ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଶିକ୍ଷାରେ ପିଏଚ.ଡ଼ି ଉପାଧି ହାସଲ କରିଥିଲେ । ତାଙ୍କର ଗବେଷଣାର ବିଷୟବସ୍ତୁ ଥିଲା, "Standardization of a Battery of Achievement Tests for Students of Class - VII in the Basic and Traditional Schools of Odisha and Comparision of their Achievements and the Factorial Content of the Battery."

ଏ ସଂପର୍କରେ ପ୍ରଫେସର ଦାଶ କହନ୍ତି, *"ଯେତେବେଳେ ମୁଁ ନବ ପ୍ରତିଷ୍ଠିତ ରାଜ୍ୟ ଶିକ୍ଷା ପ୍ରତିଷ୍ଠାନକୁ ପ୍ରାଧ୍ୟାପକ ଭାବେ ରାଧାନାଥ ପ୍ରଶିକ୍ଷଣ ମହାବିଦ୍ୟାଳୟରୁ ସ୍ଥାନାନ୍ତର ହୋଇ ଆସିଲି, ସେତେବେଳେ ରାଜ୍ୟସ୍ତରୀୟ ଏହି ଅନୁଷ୍ଠାନ ପ୍ରତି ମୋର ଦାୟିତ୍ୱ ଓ କର୍ତ୍ତବ୍ୟବୋଧ ଯଥେଷ୍ଟ ବଢ଼ିଗଲା । ମୁଁ ନିଜ ମନକୁ ନିଜେ ପ୍ରଶ୍ନ କଲି ଏହି ଅନୁଷ୍ଠାନ ପ୍ରତି ମୋର ଦାୟିତ୍ୱ ସଂପାଦନ କରିବାକୁ କେତେଦୂର ଯୋଗ୍ୟ ଓ ଦକ୍ଷ । କାରଣ ସରକାରଙ୍କ ଦ୍ୱାରା ପ୍ରତିଷ୍ଠିତ ଏହି ନବ ପ୍ରତିଷ୍ଠିତ ରାଜ୍ୟ ଶିକ୍ଷା ପ୍ରତିଷ୍ଠାନର ଭୂମିକା ପ୍ରଶିକ୍ଷଣ ଅନୁଷ୍ଠାନଗୁଡ଼ିକଠାରୁ ସଂପୂର୍ଣ୍ଣ ଭିନ୍ନ ଥିଲା । ଏଠାରେ ପ୍ରଶିକ୍ଷଣ ଅନୁଷ୍ଠାନର ଶିକ୍ଷାର୍ଥୀମାନଙ୍କୁ ଶିକ୍ଷାଦାନ କରିବା ନିମନ୍ତେ ଆବଶ୍ୟକ ସାଧାରଣ ପାଠ୍ୟପୁସ୍ତକର ସ୍ଥାନ ଓ ଗରିମା କାର୍ଯ୍ୟ କରିବ ନାହିଁ । ଏଠାକୁ ସ୍ୱଳ୍ପକାଳୀନ ପ୍ରଶିକ୍ଷଣ*

*ନେବାକୁ ଆସୁଥିବା ବିଭିନ୍ନ ଶ୍ରେଣୀର ପରିଦର୍ଶକମାନେ ଯଥେଷ୍ଟ ଗୁଣୀ ଓ ଜ୍ଞାନୀ । ସେଥିପାଇଁ ମୁଁ ମୋର ଅଧ୍ୟୟନ, ଶୈକ୍ଷିକ ଗବେଷଣା ଓ କାର୍ଯ୍ୟ ସଂପାଦନ କରିବାର ଶୈଳୀକୁ ଯଥେଷ୍ଟ ଉନ୍ନତ ଓ ସଂଭ୍ରମ କରିବାକୁ ଚେଷ୍ଟା କଲି ।"*

ଏହି ଦୃଷ୍ଟିକୋଣରୁ ପ୍ରାଧ୍ୟାପକ ଦାଶ ସ୍ୱକୀୟ ଗବେଷଣା ସହିତ ବହୁ ଆନୁଷ୍ଠାନିକ ଗବେଷଣାରେ ମନୋନିବେଶ କରିଥିଲେ । ଅନୁଷ୍ଠାନ ପାଇଁ ନୂଆ ନୂଆ ପ୍ରକଳ୍ପର ଭିତ୍ତିଭୂମି ସୃଷ୍ଟି କରିବା ସହିତ ରାଷ୍ଟ୍ରୀୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦ, ନୂଆଦିଲ୍ଲୀରେ ଅନୁଷ୍ଠିତ ବହୁ ଜାତୀୟ ସଂପାନ୍ନରେ ଅଂଶ ଗ୍ରହଣ କରୁଥିଲେ । ଅନ୍ୟର ଜ୍ଞାନ ବଢ଼ାଇବା ସହିତ ନିଜର ଶୈକ୍ଷିକ ଜ୍ଞାନ ଗରିମାକୁ ମଧ୍ୟ ସମୃଦ୍ଧ କରୁଥିଲେ ।

ସେ ରାଜ୍ୟ ଶିକ୍ଷା ପ୍ରତିଷ୍ଠାନରେ ସଫଳତାର ସହିତ ପ୍ରାୟ ଛଅବର୍ଷ କାର୍ଯ୍ୟ କରିଥିଲେ । ପରବର୍ତ୍ତୀ ସମୟରେ ସେଠାରୁ ସ୍ଥାନାନ୍ତର ହୋଇ ୧୯୭୧ ମସିହାରେ ଖଲ୍ଲିକୋଟ ମହାବିଦ୍ୟାଳୟରେ ସ୍ୱତନ୍ତ୍ରଭାବେ ଚାଲୁଥିବା ବିଏଡ୍ ବିଭାଗର ମୁଖ୍ୟ ହିସାବରେ ଯୋଗଦାନ କରିଥିଲେ ।

**ଅଧ୍ୟକ୍ଷ, ସରକାରୀ ପ୍ରଶିକ୍ଷଣ ମହାବିଦ୍ୟାଳୟ, ବ୍ରହ୍ମପୁର**

ରାଜ୍ୟରେ ବି.ଏଡ୍ ତାଲିମ ପ୍ରାପ୍ତ ଶିକ୍ଷକଙ୍କ ଆବଶ୍ୟକତା ଅନୁଭବ କରି ରାଜ୍ୟ ସରକାର ବ୍ରହ୍ମପୁରଠାରେ ଏକ ସରକାରୀ ପ୍ରଶିକ୍ଷଣ ମହାବିଦ୍ୟାଳୟର ଅୟମାରମ୍ଭ କରିଥିଲେ । ପ୍ରାଥମିକ ସ୍ତରରେ ଏହା ଖଲ୍ଲିକୋଟ ମହାବିଦ୍ୟାଳୟର ବି.ଏଡ୍ ଶାଖା ରୂପେ ୧୯୬୬ ମସିହାରେ ଆରମ୍ଭ କରାଯାଇଥିଲା । ଏହି ବି.ଏଡ୍ ବିଭାଗର ମୁଖ୍ୟ ହିସାବରେ ପ୍ରାଧ୍ୟାପକ ଦୁର୍ଲଭ ଚନ୍ଦ୍ର ଚୌଧୁରୀ ୧୬ ସେପ୍ଟେମ୍ବର ୧୯୬୬ରୁ ୮ ଅଗଷ୍ଟ ୧୯୭୧ ପର୍ଯ୍ୟନ୍ତ କାର୍ଯ୍ୟ କରିଥିଲେ । ତାଙ୍କ ପରେ ବିଭାଗୀୟ ମୁଖ୍ୟ ଭାବେ ପ୍ରାଧ୍ୟାପକ ଶରତ ଚନ୍ଦ୍ର ଦାଶ ୯ ଅକ୍ଟୋବର ୧୯୭୧ ମସିହାରୁ - ୮ ଅଗଷ୍ଟ ୧୯୭୩ ମସିହା ପର୍ଯ୍ୟନ୍ତ ବ୍ରହ୍ମପୁର ସରକାରୀ ପ୍ରଶିକ୍ଷଣ ମହାବିଦ୍ୟାଳୟର ଅଧ୍ୟକ୍ଷ ରୂପେ କାର୍ଯ୍ୟ ନିର୍ବାହ କରିଥିଲେ ।

ସେ ସମୟରେ ସଧାରଣତଃ ଦୀର୍ଘଦିନ ଧରି ଶିକ୍ଷକତା କରୁଥିବା ସେବାକାଳୀନ ଶିକ୍ଷକମାନେ ପ୍ରଶିକ୍ଷଣ ମହାବିଦ୍ୟାଳୟକୁ ଶିକ୍ଷା ଲାଭ କରିବାକୁ ଆସୁଥିଲେ । ସେମାନେ ସାଧାରଣତଃ ବୟସ୍କ ଥିଲେ । ତେଣୁ ଖଲ୍ଲିକୋଟ ମହାବିଦ୍ୟାଳୟର ତରୁଣ ଛାତ୍ରଛାତ୍ରୀମାନଙ୍କ ସହିତ ସେମାନଙ୍କ ଭାବଗତ ଓ ମାନସିକ ସମନ୍ୱୟ ପ୍ରତିଷ୍ଠା କ୍ଷେତ୍ରରେ ବିଭିନ୍ନ ସମସ୍ୟା ଉପୁଜିଲା । ଏହାକୁ ଲକ୍ଷ୍ୟ କରି ବିଭାଗୀୟ ମୁଖ୍ୟ ପ୍ରାଧ୍ୟାପକ ଦାଶ ଏହି ମହାବିଦ୍ୟାଳୟକୁ ଖଲ୍ଲିକୋଟ କଲେଜିଏଟ୍ ହାଇସ୍କୁଲର ସେକେଣ୍ଡାରୀ ସ୍କୁଲ ପରିସର

ମଧ୍ୟରେ ଥିବା ଏକ ସ୍ୱତନ୍ତ୍ର କୋଠାଘରକୁ ନେବାର ବନ୍ଦୋବସ୍ତ କରିଥିଲେ । ସେ ବ୍ରହ୍ମପୁର ସରକାରୀ ପ୍ରଶିକ୍ଷଣ ମହାବିଦ୍ୟାଳୟର ଅଧ୍ୟକ୍ଷ ଭାବେ ୯ ଅଗଷ୍ଟ, ୧୯୭୩ରୁ ୨ ଜୁନ୍ ୧୯୭୫ ମସିହା ପର୍ଯ୍ୟନ୍ତ ଅବସ୍ଥାପିତ ଥିଲେ । ଏହି ସମୟରେ ମହାବିଦ୍ୟାଳୟର ଶିକ୍ଷା ଓ ସଂସ୍କୃତିକୁ ଆଗେଇ ନେଉଥିବା ତାଙ୍କର ସହକର୍ମୀମାନେ ଥିଲେ ପ୍ରାଧ୍ୟାପକ ବିଷ୍ଣୁଚରଣ ଜେନା, ଡକ୍ଟର ଯତୀନ୍ଦ୍ର ନାଥ ପାଲ, ଅଧ୍ୟାପିକା ଦେବବାଳା ପଟ୍ଟନାୟକ, ଅଧ୍ୟାପକ ଭେଦୁଲା ଭୀମଶଙ୍କର ଶାସ୍ତ୍ରୀ, ଅଧ୍ୟାପକ ବିରୂପାକ୍ଷ ହୋତା, ଅଧ୍ୟାପକ ଡମ୍ବରୁଧର ପରିଡ଼ା, ଅଧ୍ୟାପକ ଚକ୍ରଧର ବିଶ୍ୱାଳ, ଅଧ୍ୟାପିକା ସୌଭାଗିନୀ ଭୋଇ, ଅଧ୍ୟାପକ ଅକ୍ଷୟ କୁମାର ପ୍ରଧାନ, ଅଧ୍ୟାପକ ଅମରେନ୍ଦ୍ର ପ୍ରସାଦ ଗିରି, ଅଧ୍ୟାପିକା ପୂର୍ଣ୍ଣିମା ଦାସ, ଅଧ୍ୟାପିକା ବନିତା ରାୟ ପ୍ରମୁଖ ବ୍ୟକ୍ତି ବିଶେଷ ।

ଶିକ୍ଷାଦାନ ସହିତ ପ୍ରଫେସର ଦାଶଙ୍କ ନେତୃତ୍ୱରେ ମହାବିଦ୍ୟାଳୟରେ ବିଭିନ୍ନ ଜାତୀୟ ଓ ରାଜ୍ୟର ପ୍ରଧାନ ପ୍ରଧାନ ଉତ୍ସବ ପାଳନ କରାଯାଉଥିଲା । ସେହିସବୁ ଦିବସ ମଧ୍ୟରେ ସ୍ୱାଧୀନତା ଦିବସ, ସାଧାରଣତନ୍ତ୍ର ଦିବସ, ଗଛ୍କା ପୂର୍ଣ୍ଣିମା, ଗୁରୁ ଦିବସ, ଉତ୍କଳ ଦିବସ ଆଦି ପ୍ରଧାନ ଥିଲା ।

ମହାବିଦ୍ୟାଳୟର ସାଂସ୍କୃତିକ ଉତ୍ସବକୁ ରାଜ୍ୟ ଓ ବ୍ରହ୍ମପୁରର ବହୁ ବିଶିଷ୍ଟ ଭଦ୍ରବ୍ୟକ୍ତିଗଣ ନିମନ୍ତ୍ରିତ ଅତିଥିଭାବେ ଯୋଗଦାନ କରୁଥିଲେ ।

୧୯୭୩-୭୪ ଶିକ୍ଷା ବର୍ଷର ତ୍ରିଦିବସୀୟ ସାମ୍ବତ୍ସରିକ ଉତ୍ସବ କବିସୂର୍ଯ୍ୟ ରଙ୍ଗ ମଞ୍ଚରେ ୨୯-୩୧ ମାର୍ଚ୍ଚ, ୧୯୭୪ ପର୍ଯ୍ୟନ୍ତ ସନ୍ଧ୍ୟା ୬ ଘଟିକାରେ ଅନୁଷ୍ଠିତ ହୋଇଥିଲା । ପ୍ରଥମ ଦିନ କାର୍ଯ୍ୟକ୍ରମର ଆଲୋଚନାର ବିଷୟବସ୍ତୁ ଥିଲା, "ସମାଜ ସାହିତ୍ୟ ଓ ଶିକ୍ଷା" ଏହି କାର୍ଯ୍ୟକ୍ରମରେ ମୁଖ୍ୟବକ୍ତା ଭାବେ ଡକ୍ଟର ବେଣୀମାଧବ ପାଢ଼ୀ ଯୋଗଦାନ କରିଥିଲେ । ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଇତିହାସ ବିଭାଗର ମୁଖ୍ୟ ଡକ୍ଟର କୃଷ୍ଣଚନ୍ଦ୍ର ଜେନା ଓ ଖଲ୍ଲିକୋଟ ମହାବିଦ୍ୟାଳୟର ଅର୍ଥନୀତି ବିଭାଗର ମୁଖ୍ୟ ଅଧ୍ୟାପକ ଡକ୍ଟର ରାମଚନ୍ଦ୍ର ପଟ୍ଟନାୟକ ମଧ୍ୟ ଯୋଗଦାନ କରିଥିଲେ । ତୃତୀୟ ଦିନର ଉଦ୍‌ଯାପନୀ ଉତ୍ସବରେ ସ୍କୁଲ ବିଭାଗର ଅବସରପ୍ରାପ୍ତ ଶିକ୍ଷା ନିର୍ଦ୍ଦେଶକ ପ୍ରଫେସର ବୈଦ୍ୟନାଥ ରଥ ମୁଖ୍ୟ ଅତିଥିଭାବେ ଯୋଗଦାନ କରିଥିଲେ । ଅନ୍ୟତମ ସମ୍ମାନିତ ଅତିଥି ଥିଲେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର ଅର୍ଥନୀତି ବିଭାଗର ପ୍ରାଧ୍ୟାପକ ଡକ୍ଟର ଘନଶ୍ୟାମ ଦାସ । ସେ ଦିନର ଆଲୋଚ୍ୟ ବିଷୟବସ୍ତୁ ଥିଲା 'ପଞ୍ଚମ ଯୋଜନାରେ ଶିକ୍ଷା' । ଏହି ତ୍ରିଦିବସୀୟ ଆଲୋଚନା ଚକ୍ରର ଶେଷରେ ମହାବିଦ୍ୟାଳୟର ଛାତ୍ରଛାତ୍ରୀମାନଙ୍କ ଦ୍ୱାରା ବିଭିନ୍ନ ସାଂସ୍କୃତିକ କାର୍ଯ୍ୟକ୍ରମମାନ ଅନୁଷ୍ଠିତ କରାଯାଇଥିଲା ।

ଏତଦ୍‌ବ୍ୟତୀତ ତାଙ୍କ ରହଣି ମଧ୍ୟରେ ବୈଷ୍ଣବ ପାଣିଙ୍କ 'କର୍ଣ୍ଣବଧ' ଅପେରା, ନାଟ୍ୟାକାର ନୀଳକଣ୍ଠ ମିଶ୍ରଙ୍କ 'ଶପଥ' ଅଧ୍ୟାପକ ଅମରେନ୍ଦ୍ର ପ୍ରସାଦ ଗିରିଙ୍କ ନୃତ୍ୟ ନାଟିକା, 'ଆକାଶ ଛିଡ଼ିଲା' ନାଟ୍ୟକାର ବିଶ୍ୱନାଥ ଦାସଙ୍କ ନାଟକ, 'କବରି ବିନ୍ଦୁ', ନାଟ୍ୟକାର ମନୋରଞ୍ଜନ ଦାସଙ୍କ ନାଟକ 'ବନ୍ୟା' ଆଦି ଗଞ୍ଜାମ କଳା ପରିଷଦ ଆନୁକୂଲ୍ୟରେ ଅଭିନିତ ହୋଇଥିଲା । ଏହିସବୁ କାର୍ଯ୍ୟକ୍ରମ ମଧ୍ୟରେ ମହାବିଦ୍ୟାଳୟକୁ ଗୋଷ୍ଠୀ କାର୍ଯ୍ୟକ୍ରମ ସହିତ ସଂଯୋଜିତ କରାଯାଇ ଅନୁଷ୍ଠାନଟି ଯେ ଜନସାଧାରଙ୍କର - ଏ ବାର୍ତ୍ତା ଦେବା ନିମନ୍ତେ ପ୍ରୟାସ କରାଯାଇଥିଲା ।

ଏକ ଶୈକ୍ଷିକ ଅନୁଷ୍ଠାନର ବାର୍ତ୍ତା ସମାଜ ପାଖକୁ ଦେବାକୁ ହେଲେ ଅନୁଷ୍ଠାନର ମୁଖପତ୍ର ପ୍ରମୁଖ ଭୂମିକା ଗ୍ରହଣ କରିଥାଏ । ସେଥିପାଇଁ ଅଧ୍ୟକ୍ଷ ଦାଶ ବ୍ରହ୍ମପୁର ପ୍ରଶିକ୍ଷଣ ମହାବିଦ୍ୟାଳୟର ଦୁଇବର୍ଷର ରହଣି ମଧ୍ୟରେ ପ୍ରଶିକ୍ଷଣ ଅନୁଷ୍ଠାନର ମୁଖପତ୍ରକୁ ନୂତନ ଜୀବନ୍ୟାସ ଦେଇଥିଲେ । ସେ 'ସୃଜନିକା' ଓ 'ଶିକ୍ଷଣିକା' ନାମକ ଦୁଇଟି ପତ୍ରିକା ପ୍ରତିବର୍ଷ ମଧ୍ୟ ପ୍ରକାଶ କରିବାକୁ ପ୍ରୟାସ କରିଥିଲେ । ୧୯୭୨-୭୩ ଶିକ୍ଷା ବର୍ଷରେ 'ସୃଜନିକା' ର ପ୍ରଥମ ବର୍ଷ ପ୍ରଥମ ସଂଖ୍ୟାରେ ମୁଖ୍ୟ ସଂପାଦକ ହିସାବରେ ଯେଉଁ ବାର୍ତ୍ତା ୫।୫।୧୯୭୩ ମସିହା ଅକ୍ଷୟତୃତୀୟା ଦିନ ଲେଖିଥିଲେ, ତାହା ଥିଲା ଏହିପରି :

**"ଶିକ୍ଷଣିକା ଓ ସୃଜନିକା ଯମଜ ଭଗ୍ନୀ । ଆଦ୍ୟାର ଆବିର୍ଭାବ ପରେ ଯଶୋଧନୀ ଜନନୀର ଅଶାନ୍ତ ମାତୃତ୍ୱ ଯେତେବେଳେ ସୃଜନୀ ବୀଣା ଝଙ୍କାରରୁ ନିବୃତ୍ତ ନ ହେଲା, ପ୍ରସବ ବେଦନାକୁ ଶାନ୍ତ କରି ନିମିଷକେ ଆଲୋକ ଦେଖିଲା, ଅନୁଜା-ସୃଜନିକା, ସୃଜନିକାର ସୃଷ୍ଟି ଏକ ଅସୂୟାର ରୂପାୟନ ।"**

**"ଗୁରୁଛାତ୍ରମାନଙ୍କର ପ୍ରକାଶୋନ୍ମୁଖୀ ପ୍ରତିଭା ଯେତେବେଳେ ଗୁରୁଙ୍କୁ ଆଶ୍ରା କରି ବିକଶିତ ହେବାକୁ ବସିଲା, ଅସୂୟାର ଦହନରେ ମନୁଷ୍ୟର ଚିତ୍ତ ବିଚଳିତ ହେଲା । ଏହି ବାଚଳତା ହିଁ ସୃଜନର ଅଭିପ୍ରେରକ ଏବଂ ଏହି ନିବିଡ଼ ଅଭିପ୍ରେରଣାର ସ୍ମାରକୀ ହେଉଛି ସୃଜନିକା ।"**

ପ୍ରଫେସର ଦାଶଙ୍କ ମାର୍ଗ ଦର୍ଶନ ବ୍ରହ୍ମପୁର ପ୍ରଶିକ୍ଷଣ ମହାବିଦ୍ୟାଳୟର ବାତାବରଣକୁ ସୃଜନାତ୍ମକ କରିପାରିଥିଲା ।

**ଏକକ ପାଠ - ଯୋଜନା**

ଶୈକ୍ଷିକ ପାଠ ଯୋଜନାକୁ ଗତାନୁଗତିକ ଧାରା ମଧ୍ୟରୁ ରକ୍ଷା କରିବାକୁ ଯାଇ ପ୍ରଫେସର ଦାଶ କେତେକ ନୂତନ ପ୍ରଣାଳୀ ଅବଲମ୍ବନ ପୂର୍ବକ ଶିକ୍ଷାଦାନ କରିବା ନିମନ୍ତେ ବିଭିନ୍ନ ସମୟରେ ଅଧ୍ୟାପକ, ଅଧ୍ୟାପିକା ଓ ଶିକ୍ଷାର୍ଥୀମାନଙ୍କୁ ପ୍ରେରଣା ଦେଉଥିଲେ ।

ସେଥିମଧ୍ୟରେ ଏକକ-ପାଠ ଯୋଜନା ଅନ୍ୟତମ । ଏହି ଯୋଜନା ମାଧ୍ୟମରେ ଭୂଗୋଳ, ଇତିହାସ ପ୍ରଭୃତି ବିଷୟକୁ ଶ୍ରେଣୀ ଗୃହରେ ଶିକ୍ଷାଦାନ ଦେବା ଏକ ଆୟାସସାଧ୍ୟ କାର୍ଯ୍ୟ ଥିଲା । ଏହି ପଦ୍ଧତି ଅବଲମ୍ବନ ଫଳରେ ଏକ ସାମଗ୍ରିକ ଅଧ୍ୟାୟ କିମ୍ବା ଏକକକୁ ଚାରି ପାଞ୍ଚଟି ପିରିୟଡ୍ ମଧ୍ୟରେ ପଢ଼ାଇବା ସୁବିଧାଜନକ ହୋଇଥିଲା ।

**ଶୁଦ୍ଧ ଲିଖନ ପ୍ରଦର୍ଶିକା**

ଓଡ଼ିଆ ଭାଷା ଓ ସାହିତ୍ୟର ବିକାଶ ନିମନ୍ତେ ଶୁଦ୍ଧ ଲିଖନର ଆବଶ୍ୟକତା ରହିଅଛି । ଅନେକ ସମୟରେ ଦେଖାଯାଏ ଯେ ଓଡ଼ିଆ ଭାଷା ଲିଖନ ସମୟରେ ଶିକ୍ଷକ ଶିକ୍ଷୟିତ୍ରୀଗଣ ସାଧାରଣ ବନାନଗତ ଭୁଲ କରିଥାନ୍ତି । ତା'ର ନିରାକରଣ ପାଇଁ ପ୍ରଫେସର ଦାଶ ବ୍ରହ୍ମପୁର ପ୍ରଶିକ୍ଷଣ ମହାବିଦ୍ୟାଳୟର ଭାଷା ଓ ସାହିତ୍ୟ କ୍ଷେତ୍ରର ଦକ୍ଷ ଅଧ୍ୟାପକମାନଙ୍କ ସାହାଯ୍ୟରେ ପିଲାମାନେ ବ୍ୟବହାର କରୁଥିବା ସାଧାରଣ ଓଡ଼ିଆ ଶବ୍ଦକୁ ଚିହ୍ନଟ କରିବା ନିମନ୍ତେ ଏକ ଅନୁଷ୍ଠାନଭିତ୍ତିକ ପ୍ରକଳ୍ପ ନେଇଥିଲେ । ଏହା ଫଳରେ ସାଧାରଣ ଶବ୍ଦଗୁଡ଼ିକୁ ଚିହ୍ନଟ କରାଯାଇ ଶିକ୍ଷାର୍ଥୀ କରୁଥିବା ସମ୍ଭାବ୍ୟ ବନାନ ଭୁଲଗୁଡ଼ିକ ପ୍ରଦର୍ଶନ ପୂର୍ବକ ଏକ ଶୁଦ୍ଧଲିଖନ ପ୍ରଦର୍ଶିକା ପ୍ରସ୍ତୁତ କରାଯାଇଥିଲା । ଏହି ପ୍ରଦର୍ଶିକା ପ୍ରଶିକ୍ଷାର୍ଥୀମାନଙ୍କ ଶୁଦ୍ଧ ଲିଖନର ମାର୍ଗଦର୍ଶିକା ରୂପେ କାର୍ଯ୍ୟ କରିଥିଲା । ଏଥିରେ ଏହି ମାର୍ଗଦର୍ଶିକା ଏକ ପ୍ରଶ୍ନାବଳୀ ଭିତ୍ତିକ ଥିଲା । ଏଥିରେ ଓଡ଼ିଆ ଲିଖନରେ ସାଧାରଣଭାବେ ଭୁଲ ଯଥା : ଅକ୍ଷୁଣ୍ଣ, ଅନଟନ, ଆଶିଷ, ଐତିହ୍ୟ, ଓତପ୍ରୋତ, କାଳିନ୍ଦୀ, କୃତିତ୍ୱ, ଚଳଚ୍ଚିତ୍ର, ତଦ୍ରୂପ, ଧ୍ରୁବ, ପର୍ଯ୍ୟବସିତ, ବିଶ୍ୱସନୀୟ ଆଦି ୯୮ଟି ଶବ୍ଦ ସ୍ଥାନିତ କରାଯାଇଥିଲା । ଯେଉଁ ଶବ୍ଦଟି ଠିକ୍ ଥିଲା ତାହାର ଡାହାଣ କଡ଼ରେ ଠିକ୍ ଚିହ୍ନ (✓) ମାରିବାକୁ ଉତ୍ତରଦାତାଙ୍କୁ କୁହାଯାଇଥିଲା । ଯେଉଁ ଶବ୍ଦଟି ଭୁଲଥିଲା ତାହା ଠିକ୍ କରି ଲେଖିବାକୁ କୁହାଯାଇଥିଲା । ଏହା ଉତ୍ତରଦାତାଙ୍କ ଶବ୍ଦଜ୍ଞାନ ପରୀକ୍ଷଣ ସହିତ ଶୁଦ୍ଧ ଲିଖନର ବିଶେଷ ସହାୟକ ଥିଲା ।

**ଉଚ୍ଚଶିକ୍ଷା ପାଇଁ ଲଣ୍ଡନ ଯାତ୍ରା**

ଅଧ୍ୟକ୍ଷ ଦାଶ ବ୍ରିଟିଶ କାଉନସିଲ ଟେକ୍‌ନିକାଲ୍ କୋ ଅପରେସନ୍ ପ୍ରଶିକ୍ଷଣ ବୃତ୍ତି ଲାଭ କରି ଶିକ୍ଷା ସଂପର୍କୀୟ ବିଷୟରେ ଅଧ୍ୟୟନ କରିବା ନିମନ୍ତେ ୧୬ ଜାନୁୟାରୀ ୧୯୭୪ ମସିହାରେ ତିନିମାସ ପାଇଁ ଲଣ୍ଡନ ଯାଇଥିଲେ । ୨୨ ଫେବୃୟାରୀ, ୧୯୭୫ ମସିହାରେ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କରି ପୁନଶ୍ଚ ସରକାରୀ ପ୍ରଶିକ୍ଷଣ ମହାବିଦ୍ୟାଳୟ ବ୍ରହ୍ମପୁରରେ ଯୋଗଦାନ କରିଥିଲେ ।

ଲଣ୍ଡନ ସହରରେ ତିନିମାସର ରହଣି ମଧ୍ୟରେ ସେ ଲଣ୍ଡନ, ବର୍ମିଂହାମ, ମାଞ୍ଚେଷ୍ଟାର, ନଟିଂହାମ ଆଦି ସ୍ଥାନ ବୁଲି ଗ୍ରେଟ୍ ବ୍ରିଟେନ୍‌ର ଶିକ୍ଷା ସଂସ୍କୃତି ଓ ଜନଜୀବନ ସଂପର୍କରେ ଅନୁଧ୍ୟାନ କରିଥିଲେ ।

**ଉପାଧ୍ୟକ୍ଷ : ରାଜ୍ୟ ଶିକ୍ଷା ପ୍ରତିଷ୍ଠାନ**

ଲଣ୍ଡନରୁ ଫେରି ବ୍ରହ୍ମପୁର ପ୍ରଶିକ୍ଷଣ ମହାବିଦ୍ୟାଳୟର ଅଧ୍ୟକ୍ଷ ହିସାବରେ ଅଧ୍ୟକ୍ଷ ଦାଶ ୨ ଜୁନ୍ ୧୯୭୫ ମସିହା ପର୍ଯ୍ୟନ୍ତ ମାତ୍ର ଚାରିମାସ କାର୍ଯ୍ୟ କଲେ । ପୁନଶ୍ଚ ତାଙ୍କର ପୂର୍ବ ଅନୁଷ୍ଠାନ ରାଜ୍ୟ ଶିକ୍ଷା ପ୍ରତିଷ୍ଠାନକୁ ବଦଳି ହୋଇଥିଲା । ସେଠାରେ ସେ ଉପାଧ୍ୟକ୍ଷ ହିସାବରେ ଯୋଗଦାନ କଲେ । ସେ ସମୟରେ ରାଜ୍ୟ ଶିକ୍ଷା ପ୍ରତିଷ୍ଠାନର ଅଧ୍ୟକ୍ଷ ଥାଆନ୍ତି ଦୀନବନ୍ଧୁ ପାଣିଗ୍ରାହୀ ।

ସେ ସମୟରେ ରାଜ୍ୟ ଶିକ୍ଷା ପ୍ରତିଷ୍ଠାନର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଭୁବନେଶ୍ୱର ୟୁନିଟ୍-୧ ସ୍ଥିତ ସରକାରୀ ବାଳକ ବିଦ୍ୟାଳୟ ଓ ପ୍ରାଥମିକ ବିଦ୍ୟାଳୟ ଥିଲା । ସେ ସମୟରେ ଅଧ୍ୟକ୍ଷ ଓ ଉପାଧ୍ୟକ୍ଷଙ୍କ ପ୍ରଚେଷ୍ଟାରେ ଏହି ଦୁଇଟି ଅନୁଷ୍ଠାନର ପରିଦର୍ଶନ ବିଷୟ-ବିଶେଷଜ୍ଞଙ୍କ ଦ୍ୱାରା ନିୟମିତ ବ୍ୟବଧାନରେ କରାଯାଉଥିଲା । ତେଣୁ ଏହି ପରିଦର୍ଶନ ବ୍ୟକ୍ତିଭିତ୍ତିକ ନ ହୋଇ ଦଳଭିତ୍ତିକ ବିଶେଷଜ୍ଞଙ୍କ ଦ୍ୱାରା କରାଯିବାରୁ ଏହାର ସୁଫଳ ପ୍ରତିଷ୍ଠାନ ଦ୍ୱୟ ପାଇ ପାରୁଥିଲେ । ଏହି ପରିଦର୍ଶକ ଦଳରେ ରହୁଥିଲେ ନିଜେ ଅଧ୍ୟକ୍ଷ ଦୀନବନ୍ଧୁ ପାଣିଗ୍ରାହୀ, ଉପାଧ୍ୟକ୍ଷ ଶରତ ଚନ୍ଦ୍ର ଦାଶ, ପ୍ରାଧ୍ୟାପକ ଜଗମୋହନ ରାଠୋର, ପ୍ରାଧ୍ୟାପକ ମଦନମୋହନ ମିଶ୍ର, ଅଧ୍ୟାପକ ଧ୍ରୁବଚରଣ ମିଶ୍ର, ଅଧ୍ୟାପକ ଭାଗ୍ୟଧର ମହାନ୍ତି, ଡକ୍ଟର ବଂଶୀଧର ତ୍ରିପାଠୀ, ପ୍ରାଧ୍ୟାପକ ଭାଗିରଥୀ ନାୟକ ଏବଂ ଅଧ୍ୟାପକ ପୂର୍ଣ୍ଣଚନ୍ଦ୍ର ମିଶ୍ର ।

ସେ ସମୟରେ ଭାରତ ସରକାରଙ୍କ ଦ୍ୱାରା ପ୍ରଥମ ଥର ପାଇଁ ପ୍ରାକ୍ ବିଦ୍ୟାଳୟ ଓ ସମନ୍ୱିତ ଶିଶୁ ବିକାଶ ଯୋଜନା କାର୍ଯ୍ୟକାରୀ କରିବାର ଦାୟିତ୍ୱ ଉପାଧ୍ୟକ୍ଷ ଶରତ ଚନ୍ଦ୍ର ଦାଶଙ୍କୁ ଦିଆଯାଇଥିଲା । ସେ ଏହି କାର୍ଯ୍ୟକ୍ରମର ଯୋଜନା ଓ ପରିଚାଳନା ଏପରି ଭାବରେ କରିଥିଲେ ଯେ ଏହି କାର୍ଯ୍ୟକ୍ରମ ସମଗ୍ର ଭାରତ ବର୍ଷରେ ପ୍ରଥମ ସ୍ଥାନ ଅଧିକାର କରିଥିଲା । ସେଥିପାଇଁ ୟୁନେସ୍କୋ ତରଫରୁ ଏହି କାର୍ଯ୍ୟକ୍ରମର ଦାୟିତ୍ୱରେ ଥିବା ଅଧ୍ୟାପକ ଡକ୍ଟର ଭାଗ୍ୟଧର ମହାନ୍ତି ୧୯୮୧ ମସିହାରେ ବ୍ୟାଙ୍କକ୍ ଠାରେ ଆୟୋଜିତ ହୋଇଥିବା କାର୍ଯ୍ୟକ୍ରମରେ ଯୋଗଦେଇ ରାଜ୍ୟ ତରଫରୁ ସ୍ୱତନ୍ତ୍ର ନିବନ୍ଧ ଉପସ୍ଥାପନ କରିଥିଲେ । ଏହି କନ୍‌ଫରେନ୍‌ସର ପ୍ରସ୍ତାବ ସଂପର୍କରେ ଆଲୋଚନା

ହେଲାବେଳେ ୟୁନେସ୍କୋ ତରଫରୁ ପ୍ରଫେସର ଦାଶ ସ୍ୱତନ୍ତ୍ର ଭାବେ ନିମନ୍ତ୍ରିତ ହୋଇ ବ୍ୟାଙ୍କକ୍‌ସ୍ଥିତ ଆନ୍ତର୍ଜାତିକ ସମ୍ମିଳନୀରେ ପରବର୍ତ୍ତୀ ସମୟରେ ୧୯୮୫ ମସିହାରେ ଯୋଗ ଦେଇଥିଲେ ।

**ଉପାଧ୍ୟକ୍ଷରୁ ପ୍ରଫେସର ପଦବୀରେ ଅବସ୍ଥାପିତ**

ତତ୍‌କାଳୀନ ଓଡ଼ିଶା ସରକାରଙ୍କ ନୀତି ନିୟମ ଅନୁସାରେ ପ୍ରାଧାପକ ଶରତ ଚନ୍ଦ୍ର ଦାଶ ୧୯୭୩ ମସିହାରୁ ପ୍ରଫେସର ପଦବୀରେ ଅବସ୍ଥାପିତ ହେବା କଥା । ମାତ୍ର ସରକାର ଏଥିରେ ବ୍ୟତିକ୍ରମ କରି ଅଧ୍ୟକ୍ଷ ବିବେକାନନ୍ଦ ପତିଙ୍କୁ ରାଧାନାଥ ପ୍ରଶିକ୍ଷଣ ମହାବିଦ୍ୟାଳୟ, କଟକର ପ୍ରଫେସର - ତଥା - ଅଧ୍ୟକ୍ଷ ରୂପେ ଅବସ୍ଥାପିତ କଲେ । ଏହା ଥିଲା ପ୍ରାଧାପକ ଦାଶଙ୍କ ପାଇଁ ଚରମ ଅନ୍ୟାୟ ।

ସେଥିପାଇଁ ସେ ଓଡ଼ିଶା ସରକାରଙ୍କ ଆଦେଶନାମା ବିରୋଧରେ ଓଡ଼ିଶା ଉଚ୍ଚ ନ୍ୟାୟାଳୟରେ ୧୯୭୫ ମସିହାରେ ଏକ ମାମଲା ଦାୟର କଲେ ଏବଂ ଜିତିଲେ । ସେତେବେଳେ ରାଜ୍ୟରେ ଜରୁରୀକାଳୀନ ପରିସ୍ଥିତି ଚାଲିଥାଏ । ଶ୍ରୀମତୀ ନନ୍ଦିନୀ ଦେବୀ ଥାଆନ୍ତି ଓଡ଼ିଶାର ମୁଖ୍ୟମନ୍ତ୍ରୀ । କେତେକ ବନ୍ଧୁ ପ୍ରାଧାପକ ଦାଶଙ୍କୁ ନନ୍ଦିନୀ ସରକାରଙ୍କ ବିରୋଧରେ ନ ଯିବାପାଇଁ ପ୍ରବର୍ତ୍ତାଇଥିଲେ । ମାତ୍ର ସେ କହିଲେ, *"ମୁଁ ସତ୍ୟନିଷ୍ଠ ପରିବାରର ପିଲା । ଚାକିରି ଛାଡ଼ି ପଛେ ଅନ୍ୟବୃତ୍ତି ଅବଲମ୍ବନ କରି ଚଳିବି, ମାତ୍ର ନ୍ୟାୟ ପାଇଁ ନ୍ୟାୟାଳୟକୁ ଯିବି ।"*

ସେଥିପାଇଁ ସେ ପରିବାର ତରଫରୁ ସମର୍ଥନ ପାଇଥିଲେ । ବଡ଼ ପୁଅ ନିର୍ମଳଙ୍କୁ ଯେତେବେଳେ ପଚାରିଲେ, ସେ ହସି ହସି ତାଙ୍କର ପ୍ରସ୍ତାବକୁ ସମର୍ଥନ କରିଥିଲେ । ଏହି ଆଦେଶନାମା କାର୍ଯ୍ୟକାରୀ ହେବା ପାଇଁ ବିଳମ୍ବ ହେବାରୁ ମୁଖ୍ୟମନ୍ତ୍ରୀ ନନ୍ଦିନୀ ଦେବୀଙ୍କୁ ସାକ୍ଷାତ କରି ନିଜ ଆପତ୍ତି ଜଣାଇବା ପାଇଁ ତାଙ୍କର ବନ୍ଧୁ ଦେବେନ୍ଦ୍ର ଶତପଥୀ ପରାମର୍ଶ ଦେଲେ । ପ୍ରଫେସର ଦାଶ ଦେଖା କରିବା ପରେ ମୁଖ୍ୟମନ୍ତ୍ରୀ ନନ୍ଦିନୀ ଦେବୀ କହିଲେ "ଦାଶ ବାବୁ ! ମୁଁ ଆପଣଙ୍କ ଫାଇଲ କରି ଦେଇଛି । ମାତ୍ର ସେ ଦେଇଥିବା ଆଦେଶ ଅନୁକୂଳ ନ ଥିଲା । ଏହି କଥା ମୁଖ୍ୟମନ୍ତ୍ରୀଙ୍କୁ କହିବାରୁ ସେ ସଙ୍ଗେ ସଙ୍ଗେ ଆଦେଶନାମା ବଦଳାଇ ଦେଲେ ଓ ତା' ପରଦିନ ପ୍ରଫେସର-ତଥା-ଅଧ୍ୟକ୍ଷ ଭାବେ ସରକାରୀ ପ୍ରଶିକ୍ଷଣ ମହାବିଦ୍ୟାଳୟ, ସମ୍ବଲପୁରରେ ଯୋଗ ଦେବାକୁ ପରାମର୍ଶ ଦେଲେ । ଏହା ହେଉଛି ୨ ଅକ୍ଟୋବର, ୧୯୭୬ ମସିହାର ଘଟଣା ।

**ପ୍ରଫେସର - ତଥା - ଅଧ୍ୟକ୍ଷ , ସରକାରୀ ପ୍ରଶିକ୍ଷଣ ମହାବିଦ୍ୟାଳୟ, ସମ୍ବଲପୁର**

ଏକ ନାଟକୀୟ ଘଟଣାକ୍ରମରେ ପ୍ରଫେସର ଶରତ ଚନ୍ଦ୍ର ଦାଶ ରାଜ୍ୟ ଶିକ୍ଷା ପ୍ରତିଷ୍ଠାନ, ଓଡ଼ିଶାର ଉପାଧ୍ୟକ୍ଷ ପଦରୁ ଉନ୍ନୀତ ହୋଇ ପ୍ରଫେସର-ତଥା-ଅଧ୍ୟକ୍ଷ ପଦବୀରେ

ସରକାରୀ ପ୍ରଶିକ୍ଷଣ ମହାବିଦ୍ୟାଳୟ, ସମ୍ବଲପୁରରେ ତା ୨୧ ଅକ୍ଟୋବର, ୧୯୭୬ ରେ ଯୋଗଦାନ କଲେ । ଏହି ମହାବିଦ୍ୟାଳୟରେ ପ୍ରଥମେ ସୃଷ୍ଟି ହୋଇଥିବା ପ୍ରଫେସର ପଦବୀରେ ସେ ହେଉଛନ୍ତି ପ୍ରଥମ ବ୍ୟକ୍ତି ଯେକି ଶିକ୍ଷାରେ ପ୍ରଫେସର ହିସାବରେ ମହାବିଦ୍ୟାଳୟରେ ଯୋଗଦାନ କରିଥିଲେ । ଏହା ଫଳରେ ଅଧ୍ୟାପକ, ଛାତ୍ରଛାତ୍ରୀ, ଏହି ମହାବିଦ୍ୟାଳୟ ପରିଚାଳନା ଓ ପରିଦର୍ଶନର ତତ୍ତ୍ୱାବଧାନରେ ଥିବା ଚନ୍ଦ୍ରଶେଖର ବେହେରା ଜିଲ୍ଲା ସ୍କୁଲର ପ୍ରଧାନ ଶିକ୍ଷକ ଓ ଶିକ୍ଷକ ଶିକ୍ଷୟିତ୍ରୀମାନଙ୍କ ମଧ୍ୟରେ ଆନନ୍ଦ ସଞ୍ଚରିତ ହୋଇଥିଲା । ସବୁଠାରୁ ବେଶୀ ଖୁସି ହୋଇଥିଲେ ଶିକ୍ଷା ସହିତ ସଂଶ୍ଳିଷ୍ଟ ଏହି ଅଞ୍ଚଳର ଶିକ୍ଷାପ୍ରେମୀ ବ୍ୟକ୍ତିବିଶେଷ । ସେମାନେ ପ୍ରଫେସର ଦାଶଙ୍କୁ ତାଙ୍କର ନୂତନ ଅବସ୍ଥାନ ନିମନ୍ତେ ସ୍ୱାଗତ ଜଣାଇଥିଲେ । ଏହି ଅନୁଷ୍ଠାନରେ ସେ ଏକ ବର୍ଷରୁ ଅଧିକ ସମୟ ରହିଥିଲେ ମଧ୍ୟ ଅନୁଷ୍ଠାନର ଶୈକ୍ଷିକ, ପ୍ରଶାସନିକ ବାତାବରଣକୁ କେବଳ ପ୍ରଶିକ୍ଷାର୍ଥୀ ଓ ଅଧ୍ୟାପକମାନଙ୍କ ମଧ୍ୟରେ ସୀମିତ ନ ରଖି ପ୍ରଶିକ୍ଷଣ ମହାବିଦ୍ୟାଳୟକୁ ଗୋଷ୍ଠୀ ସହିତ ଏପରି ସଂଯୋଜିତ କରିଥିଲେ ଯେ ତାହା ସ୍ଥାନୀୟ ଅଞ୍ଚଳରେ ପ୍ରଶିକ୍ଷଣ ଅନୁଷ୍ଠାନର ଗୌରବ ବୃଦ୍ଧି କରିଥିଲା ।

ଏହି ଘଟଣାର ସ୍ୱଳ୍ପ ବ୍ୟବଧାନ ପରେ ଏଇ ଲେଖକ ଜଣକ ସରକାରୀ ପ୍ରଶିକ୍ଷଣ ମହାବିଦ୍ୟାଳୟରେ ଅଧ୍ୟାପକ ରୂପେ ୧୫ ଜାନୁୟାରୀ, ୧୯୭୭ ମସିହାରେ ନୂତନ ଭାବେ ଅବସ୍ଥାପିତ ହୋଇଥିଲେ । ଏହା ଫଳରେ ସେ ପ୍ରଫେସର ଦାଶଙ୍କ କାର୍ଯ୍ୟଶୈଳୀ ଓ ବହୁମୁଖୀ ପ୍ରତିଭା ସହିତ ପରିଚିତ ହେବାର ସୌଭାଗ୍ୟ ଲାଭ କରିଥିଲେ । ସେ ସମୟରେ ଶିକ୍ଷା ଜଗତରେ ନୂତନ ଭାବେ ପ୍ରବେଶ କରିଥିବା ଅନ୍ୟାନ୍ୟ ବନ୍ଧୁମାନଙ୍କୁ ମଧ୍ୟ ପ୍ରଫେସର ଦାଶଙ୍କ ତତ୍କାଳୀନ କାର୍ଯ୍ୟକଳାପ ବିଶେଷ ଭାବେ ପ୍ରଭାବିତ କରୁଥିଲା । ସେମାନେ ସମସ୍ତେ ଜାଣିଥିଲେ ଯେ ଏହି କୃତବିଦ୍ ମଣିଷ ଜଣକ କେବଳ ବୃତ୍ତିରେ ଜଣେ ପ୍ରଫେସର ବା ଆଚାର୍ଯ୍ୟ ନ ଥିଲେ ବରଂ ସେ ନିଜର କାର୍ଯ୍ୟଧାରାରେ ଅନେକ ଶୈକ୍ଷିକ ବିଶ୍ୱାସ ଓ ମତବାଦକୁ ଶରତ ଆକାଶର ନିର୍ମଳ ଚନ୍ଦ୍ର ପରି ପ୍ରତିଫଳିତ କରୁଥିଲେ ।

ପ୍ରଫେସର ଦାଶ ଥିଲେ ଶିକ୍ଷକ ଶିକ୍ଷା ଗଢ଼ା କାରଖାନାର ଜଣେ କୁଶଳୀ କାରିଗର । ତେଣୁ ସେ ସମ୍ବଲପୁର ପ୍ରଶିକ୍ଷଣ ମହାବିଦ୍ୟାଳୟର ଅଧ୍ୟକ୍ଷ ଭାବେ ରହିବାର ସ୍ୱଳ୍ପ ଅବଧି ମଧ୍ୟରେ ଯାହା କିଛି ଅନୁଷ୍ଠାନ ପାଇଁ କରିଥିଲେ, ତାହାର ସ୍ଥିତି ଉପରେ ମହାବିଦ୍ୟାଳୟର ଭବିଷ୍ୟତ କାର୍ଯ୍ୟ ପନ୍ଥା ଦୀର୍ଘଦିନ ପାଇଁ ଅବସ୍ଥାପିତ ଥିଲା । ଏ ପ୍ରସଙ୍ଗରେ କେତେକ କଥା ଆଲୋଚନା କଲେ ପ୍ରାସଙ୍ଗିକ ହେବ ।

## ଅନୁଷ୍ଠାନ ସହିତ ଡକ୍ଟର ପର୍ଶୁରାମ ମିଶ୍ରଙ୍କ ନାମ

ଡକ୍ଟର ପର୍ଶୁରାମ ଅଗ୍ରଗାମୀ ଶିକ୍ଷା ପ୍ରତିଷ୍ଠାନ ନାମରେ ଆଜି ସମ୍ବଲପୁର ପ୍ରଶିକ୍ଷଣ ମହାବିଦ୍ୟାଳୟ ନାମିତ । ପ୍ରଫେସର ଦାଶ ସମ୍ବଲପୁର ଅଞ୍ଚଳର ବିଶିଷ୍ଟ ଶିକ୍ଷାବିତ୍ ଓ ତାଙ୍କର ରେଭେନ୍‌ସା ମହାବିଦ୍ୟାଳୟର ଶିକ୍ଷାଗୁରୁ ପ୍ରଫେସର ମିଶ୍ରଙ୍କ ନାମରେ ମହାବିଦ୍ୟାଳୟକୁ ନାମିତ କରିବା ନିମନ୍ତେ ବିଭିନ୍ନ ସମୟରେ ସରକାରଙ୍କୁ ଲେଖିଥିଲେ । ସେ ସମୟରେ ଏ କ୍ଷେତ୍ରରେ ସେ ଯେଉଁ ଉଦ୍ୟମ କରିଥିଲେ, ତାହା ପରବର୍ତ୍ତୀ ସମୟରେ ସାକାର ହୋଇଥିଲା ।

## ଶିକ୍ଷା ଗବେଷଣା ପରିଷଦ : ପ୍ରତିଷ୍ଠାତା ସଭାପତି

ଶିକ୍ଷା ସହିତ ଗବେଷଣା ଓତପ୍ରୋତଭାବେ ସଂଶ୍ଳିଷ୍ଟ । ଆମ ରାଜ୍ୟରେ ସେ ସମୟରେ ଶିକ୍ଷା ଓ ଗବେଷଣାର ଉନ୍ନତି କଳ୍ପେ କୌଣସି ଆସୋସିଏସନ ନ ଥିଲା । ତେଣୁ ସେ ସମ୍ବଲପୁର ସରକାରୀ ପ୍ରଶିକ୍ଷଣ ମହାବିଦ୍ୟାଳୟର ସହକର୍ମୀ ବନ୍ଧୁମାନଙ୍କ ସହାୟତାରେ ଓଡ଼ିଶା ଶିକ୍ଷା ଗବେଷଣା ଆସୋସିଏସନ୍ ନାମରେ ଏକ ଗବେଷଣା ସଂସ୍ଥା ଗଢ଼ିଥିଲେ । ତାଙ୍କ ଉଦ୍ୟମରେ ଏହି ଗବେଷଣା ସଂସ୍ଥା ରେଜେଷ୍ଟ୍ରିଭୁକ୍ତ ହୋଇଥିଲା । ପ୍ରାଥମିକ ସ୍ତରରେ ସରକାରୀ ପ୍ରଶିକ୍ଷଣ ମହାବିଦ୍ୟାଳୟର ସମସ୍ତ ଅଧ୍ୟାପକ ସ୍ୱତଃପ୍ରବୃତ୍ତ ଭାବେ ଏହି ସଂସ୍ଥାର ଆଜୀବନ ସଭ୍ୟ ହୋଇଥିଲେ ।

ପ୍ରଫେସର ଦାଶ ଏହି ଶିକ୍ଷା ଗବେଷଣା ଆସୋସିଏସନ୍‌ର ସଭାପତି ଓ ଅଧ୍ୟାପକ ସୁନୀଲ ବିହାରୀ ମହାନ୍ତି ଏହାର ସଂପାଦକ ଥିଲେ । ପରବର୍ତ୍ତୀ ସମୟରେ ପ୍ରଫେସର ଦାଶଙ୍କ ପ୍ରତିଷ୍ଠିତ ଶିକ୍ଷା ଗବେଷଣା ସଂସ୍ଥା ଆନୁକୂଲ୍ୟରେ ଗବେଷଣା ସମ୍ବନ୍ଧିତ ବିଭିନ୍ନ ଗବେଷଣାଧର୍ମୀ ସନ୍ଦର୍ଭ ପ୍ରସ୍ତୁତ ହୋଇଅଛି । ସଂସ୍ଥାର ପ୍ରକାଶିତ ଜର୍ଣ୍ଣାଲ ମାଧ୍ୟମରେ ବହୁ ଗବେଷଣାତ୍ମକ ନିବନ୍ଧମାନ ମଧ୍ୟ ବିଭିନ୍ନ ସମୟରେ ପ୍ରକାଶିତ ହୋଇଅଛି । ଏହା ଫଳରେ ଏହି ସଂସ୍ଥା ସର୍ବଭାରତୀୟ ସ୍ତରରେ ଅଳ୍ପଦିନ ମଧ୍ୟରେ ପରିଚିତ ହେବା ସହିତ ରାଜ୍ୟର ଶିକ୍ଷା ଇତିହାସରେ ଏକ ନୂତନ ଅଧ୍ୟାୟ ସୃଷ୍ଟି କରିଅଛି । ମାତ୍ର ସେ ସମୟର ସ୍ଥିତି ବର୍ତ୍ତମାନ ପ୍ରାୟତଃ ନାହିଁ ।

## ପ୍ରଶିକ୍ଷଣ ମହାବିଦ୍ୟାଳୟର ପ୍ରଶାସନିକ ଓ ବିଦ୍ୟାଗତ ନିୟନ୍ତ୍ରଣ

ସେ ସମୟରେ ସମ୍ବଲପୁର ସରକାରୀ ପ୍ରଶିକ୍ଷଣ ମହାବିଦ୍ୟାଳୟର ପ୍ରଶାସନିକ ନିୟନ୍ତ୍ରଣରେ କେବଳ ଏକମାତ୍ର ମାଧ୍ୟମିକ ଉଚ୍ଚ ବିଦ୍ୟାଳୟ ଥିଲା । ସେହି ବିଦ୍ୟାଳୟଟି ହେଉଛି ଚନ୍ଦ୍ରଶେଖର ବେହେରା ଜିଲ୍ଲା ସ୍କୁଲ । ଏହି ଉଚ୍ଚ ବିଦ୍ୟାଳୟ ଏକ ଐତିହ୍ୟ ସଂପନ୍ନ ବିଦ୍ୟାଳୟ । ଏହା ୧୮୫୮ ମସିହାରେ ପ୍ରତିଷ୍ଠିତ । ପ୍ରଶିକ୍ଷଣ ମହାବିଦ୍ୟାଳୟର ଅଧ୍ୟକ୍ଷ ହେଉଛନ୍ତି ଏହାର ପରିଦର୍ଶକ । ସଂପ୍ରତି ଏହି ଅନୁଷ୍ଠାନର ପ୍ରଶାସନିକ ନିୟନ୍ତ୍ରଣ ଜିଲ୍ଲା ଶିକ୍ଷା ଅଧିକାରୀଙ୍କ ଅଧୀନରେ ଅଛି ।

ସେତେବେଳେ ବି.ଏଡ୍ ଛାତ୍ରଛାତ୍ରୀ ଚନ୍ଦ୍ରଶେଖର ବେହେରା ଜିଲ୍ଲା ସ୍କୁଲ ଓ ସମ୍ବଲପୁର ଟାଉନସ୍ଥ ବିଭିନ୍ନ ବିଦ୍ୟାଳୟକୁ ଅଭ୍ୟାସ ପାଠଦାନ ନିମନ୍ତେ ଯାଉଥିଲେ । ସେହିସବୁ ବିଦ୍ୟାଳୟ ତତ୍‌କାଳୀନ ଶିକ୍ଷା ମଣ୍ଡଳାଧୀଶ (ବର୍ତ୍ତମାନର ଜିଲ୍ଲା ଶିକ୍ଷା ଅଧିକାରୀ)ଙ୍କ ଅଧୀନରେ ଥିଲା । ତେଣୁ କୌଣସି ବିଦ୍ୟାଳୟକୁ ଶୈକ୍ଷିକ କାର୍ଯ୍ୟକ୍ରମରେ ଲଗାଇବା ନିମନ୍ତେ ବିଭିନ୍ନ ସମୟରେ ଶିକ୍ଷା ଅଧିକାରୀଙ୍କ ଅନୁମତି ଉପରେ ନିର୍ଭର କରିବାକୁ ପଡୁଥିଲା । ମାତ୍ର ପ୍ରଶିକ୍ଷଣ ଅନୁଷ୍ଠାନର ମର୍ଯ୍ୟାଦାଜନକ ସ୍ଥିତି ଯୋଗୁଁ କୌଣସି ସ୍ତରରୁ କୌଣସି ପ୍ରକାରର ପ୍ରଶାସନିକ ଅସୁବିଧା ପ୍ରାୟତଃ ହେଉ ନ ଥିଲା ।

ସତୁରି ଦଶକରେ ରାଜ୍ୟର ଶିକ୍ଷକ ଶିକ୍ଷା ସଂପର୍କରେ ଯଦି କେହି ବିଶେଷ ଚିନ୍ତା କରୁଥିଲେ, ସେମାନଙ୍କ ମଧ୍ୟରେ ଶିକ୍ଷାବିତ୍ ଶତ୍ରୁଘ୍ନ ନାଥ, ପ୍ରାଣବନ୍ଧୁ କର, ଦୀନବନ୍ଧୁ ପାଣିଗ୍ରାହୀ, ଶରତ ଚନ୍ଦ୍ର ଦାଶ, ପୂର୍ଣ୍ଣ ଚନ୍ଦ୍ର ରାଉତ, କାଳି କୁମାର ଦାସ, ଜଗନ୍ନାଥ ମହାନ୍ତି, ପ୍ରଫୁଲ୍ଲ ଚନ୍ଦ୍ର ମହାପାତ୍ର ଆଦିଙ୍କ ନାମ ଉଲ୍ଲେଖ ଯୋଗ୍ୟ ।

ଭାରତୀୟ ଶିକ୍ଷା କମିଶନ, ୧୯୬୪-୬୬ଙ୍କ ଅନେକ ସୁପାରିଶ ମଧ୍ୟରେ ବିଦ୍ୟାଳୟ ସଙ୍ଗମ (School Complex) କାର୍ଯ୍ୟକ୍ରମ ସଂପର୍କୀୟ ସୁପାରିଶ ହେଉଛି ଏକ ଯୁଗାନ୍ତକାରୀ ସୁପାରିଶ । ଏହି ସୁପାରିଶ ଅନୁସାରେ ଗୋଟିଏ ଅଞ୍ଚଳର ଉଚ୍ଚ ବିଦ୍ୟାଳୟକୁ ସେହି ଅଞ୍ଚଳର ଉଚ୍ଚ ପ୍ରାଥମିକ ବିଦ୍ୟାଳୟ, ଉଚ୍ଚ ପ୍ରାଥମିକ ବିଦ୍ୟାଳୟକୁ ନିମ୍ନ ପ୍ରାଥମିକ ବିଦ୍ୟାଳୟ ସହିତ ସଂଯୋଜିତ କରି ବିଦ୍ୟାଳୟ ସଙ୍ଗମ କାର୍ଯ୍ୟକ୍ରମ କରାଯିବା ନିମନ୍ତେ ପ୍ରସ୍ତାବ ଦିଆଯାଇଥିଲା । ଏହା ଫଳରେ ସେ ଅଞ୍ଚଳର ବିଭିନ୍ନ ସ୍ତରର ବିଦ୍ୟାଳୟ ମଧ୍ୟରେ ଭାବ ବିନିମୟ ହେବା ସହିତ ପ୍ରଶାସନିକ, ଶୈକ୍ଷିକ ଓ ବିଦ୍ୟାଗତ ଉନ୍ନତି ସାଧିତ ସମ୍ଭବ ହେବ । ଗୋଟିଏ ବିଦ୍ୟାଳୟର ମାନବ ସମ୍ବଳଠାରୁ ଆରମ୍ଭ କରି ଭୌତିକ ସମ୍ବଳ ମଧ୍ୟ ଅନ୍ୟ ବିଦ୍ୟାଳୟର ବିକାଶରେ ଲାଗି ପାରିବ । ଏହା ଫଳରେ ବିଦ୍ୟାଳୟ ଶିକ୍ଷା କ୍ଷେତ୍ରରେ ପ୍ରତ୍ୟେକ ବିଦ୍ୟାଳୟ ପରସ୍ପର ସହିତ ସମ୍ବନ୍ଧିତ ହୋଇ ତୃଣମୂଳ ସ୍ତରରେ ଛାତ୍ରଛାତ୍ରୀମାନଙ୍କର ଶୈକ୍ଷିକ ଶାରୀରିକ, ମାନସିକ ଓ ଆଧ୍ୟାତ୍ମିକ ବିକାଶର ସହାୟକ ହେବେ ।

ପ୍ରଫେସର ଦାଶ ସରକାରଙ୍କ ଅନୁମୋଦନ କ୍ରମେ ସମ୍ବଲପୁର ସହରର ଦଶଟି ବିଦ୍ୟାଳୟକୁ ପ୍ରଶିକ୍ଷଣ ମହାବିଦ୍ୟାଳୟର ବିଦ୍ୟାଗତ ନିୟନ୍ତ୍ରଣ (Academic Control)କୁ ଆଣିଥିଲେ । ସେହିସବୁ ବିଦ୍ୟାଳୟର ପ୍ରଧାନଶିକ୍ଷକ ଓ ପ୍ରଶିକ୍ଷଣ ମହାବିଦ୍ୟାଳୟର ଅଧ୍ୟାପକମାନଙ୍କୁ ନେଇ ବିଦ୍ୟାଳୟ ସଙ୍ଗମ କାର୍ଯ୍ୟକ୍ରମ ୧୯୭୮ ମସିହାରେ କାର୍ଯ୍ୟକାରୀ କରାଇଥିଲେ । ମାତ୍ର ରାଜ୍ୟ ଶିକ୍ଷା ପ୍ରତିଷ୍ଠାନ, ଓଡ଼ିଶା,



ରାଜ୍ୟ ଜନଶିକ୍ଷା ସାଧନା କେନ୍ଦ୍ରରେ ଏକ ନବବର୍ଷ ପାଳନ
ଅବସରରେ ପ୍ରଫେସର ଦାଶ ଏବଂ ଅନ୍ୟମାନେ



ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦର ଏକ ଉତ୍ସବରେ
ପ୍ରଫେସର ଦାଶଙ୍କ ବକ୍ତୃତା ପ୍ରଦାନ



ବ୍ରହ୍ମପୁର ସରକାରୀ ପ୍ରଶିକ୍ଷଣ ମହାବିଦ୍ୟାଳୟର ବାର୍ଷିକ
ଉତ୍ସବରେ ପ୍ରଫେସର ଦାଶଙ୍କ ଅଭିଭାଷଣ



ବ୍ରହ୍ମପୁର ସରକାରୀ ପ୍ରଶିକ୍ଷଣ ମହାବିଦ୍ୟାଳୟର ପ୍ରଥମ ନାଟ୍ୟୋତ୍ସବରେ ପ୍ରଫେସର ଦାଶ,
ପ୍ରଧାପକ ମଦନ ମୋହନ ମିଶ୍ର ଓ ଅନ୍ୟ ସହକର୍ମୀ ତଥା ଛାତ୍ରଛାତ୍ରୀଙ୍କ ଗହଣରେ

Source: Author, Digitized by PPRACHIN, SOA



ପ୍ରଫେସର ପୂର୍ଣ୍ଣଚନ୍ଦ୍ର ରାଉତଙ୍କ ସହ ପ୍ରଫେସର ଦାଶ



ରାଜ୍ୟ ଶିକ୍ଷା ପ୍ରତିଷ୍ଠାନର ଏମ୍.ଏ. ଶିକ୍ଷା ବିଭାଗର ବାର୍ଷିକ ଉତ୍ସବରେ
ସହଧର୍ମିଣୀଙ୍କ ସହ ପ୍ରଫେସର ଦାଶ

Source: Author, Digitized by PPRACHIN, SOA



ପ୍ରଫେସର ଦାଶଙ୍କ ଜନ୍ମସ୍ଥାନ : କେନ୍ଦୁଡିପ ଗ୍ରାମ



ପ୍ରଫେସର ଦାଶଙ୍କ ଜନ୍ମସ୍ଥାନ କେନ୍ଦୁଡିପରେ ଥିବା ମହେଶ୍ୱର ଦାଶଙ୍କ ଦ୍ୱାରା ୧୯୫୨ ମସିହାରେ ନିର୍ମିତ ନିର୍ମଳ ମଣ୍ଡପ

ଭୁବନେଶ୍ୱରକୁ ତାଙ୍କର ପରବର୍ତ୍ତୀ ସ୍ଥାନାନ୍ତର ହେଲାପରେ ସେହିସବୁ କାର୍ଯ୍ୟକ୍ରମ କ୍ଷେତ୍ରରେ ଆପେ ଆପେ ଯବନିକା ପଡ଼ିଗଲା ।

## ବିଦ୍ୟାଳୟ ପରିଦର୍ଶନର ବିଧିବିଧାନ

ସମ୍ବଲପୁର ସରକାରୀ ପ୍ରଶିକ୍ଷଣ ମହାବିଦ୍ୟାଳୟର ପ୍ରଶାସନିକ ନିୟନ୍ତ୍ରଣରେ ଚନ୍ଦ୍ରଶେଖର ବେହେରା ଜିଲ୍ଲା ସ୍କୁଲ ଏକମାତ୍ର ଅନୁଷ୍ଠାନ ଥିଲା । ପ୍ରଫେସର ଦାଶ ପ୍ରଶିକ୍ଷଣ ଅନୁଷ୍ଠାନର ଅଧ୍ୟକ୍ଷ ଥିବାବେଳେ ଚନ୍ଦ୍ରଶେଖର ବେହେରା ଜିଲ୍ଲା ସ୍କୁଲର ପ୍ରଧାନ ଶିକ୍ଷକ ଥିଲେ ଶଶୀଭୂଷଣ ତ୍ରିପାଠୀ । ବିଦ୍ୟାଳୟର ପ୍ରଧାନ ଶିକ୍ଷକ ଭାବେ ଶ୍ରୀଯୁକ୍ତ ତ୍ରିପାଠୀଙ୍କର ଯଥେଷ୍ଟ ଅଭିଜ୍ଞତା ଥିଲା । ସେ ପରିଦର୍ଶକ ପ୍ରଫେସର ଦାଶଙ୍କ ସହିତ ଉପଯୁକ୍ତ ଶୈକ୍ଷିକ ସମନ୍ୱୟ ରକ୍ଷା କରି ଏହି ଐତିହ୍ୟ ସଂପନ୍ନ ମାଧ୍ୟମିକ ବିଦ୍ୟାଳୟର ପରିଚାଳନା କରୁଥିଲେ । ଉଭୟେ ପରିଦର୍ଶକ ଓ ପ୍ରଧାନଶିକ୍ଷକଙ୍କ ମଧ୍ୟରେ ସୁସଂପର୍କ ଥିବା ହେତୁ ସମ୍ବଲପୁର ଜିଲ୍ଲାସ୍କୁଲ ଓ ଶିକ୍ଷକ ପ୍ରଶିକ୍ଷଣ ଅନୁଷ୍ଠାନ ମଧ୍ୟରେ ଶିକ୍ଷାର ପ୍ରୟୋଗାତ୍ମକ ଦୃଷ୍ଟିକୋଣରୁ ଅନୁକୂଳ ବାତାବରଣ ଶୀର୍ଷ ସ୍ଥାନରେ ପହଞ୍ଚିପାରିଥିଲା ।

ଆଜିକାଲି ବିଦ୍ୟାଳୟ ଶିକ୍ଷାରେ ପରିଦର୍ଶନ ଓ ନିରୀକ୍ଷଣ (Inspection and Supervision) ପ୍ରାୟତଃ ନାହିଁ କହିଲେ ଚଳେ । ଯେଉଁ ପରିଦର୍ଶକମାନେ ବିଦ୍ୟାଳୟକୁ ଯାଉଛନ୍ତି ସେମାନଙ୍କ ପକ୍ଷରେ ଆବଶ୍ୟକ ମାନବ ସମ୍ବଳ ଓ ସମୟର ଅଭାବ ଯୋଗୁଁ ବିଦ୍ୟାଳୟ ପରିଦର୍ଶନ ନୀତି ନିୟମ ଅନୁସାରେ କରିବା ସମ୍ଭବ ହେଉନାହିଁ । ମାତ୍ର ଶିକ୍ଷା କମିଶନ, ୧୯୬୪ (କୋଠାରି କମିଶନ) ଜଣେ ପରିଦର୍ଶକ ଏକ ବିଦ୍ୟାଳୟ ପରିଦର୍ଶନରେ ଗଲାବେଳେ ବିଷୟ ବିଶେଷଜ୍ଞମାନଙ୍କୁ ନେଇ ଯିବା ଆବଶ୍ୟକ ବୋଲି କହିଥିବା ସତ୍ତ୍ୱେ କମିଶନଙ୍କ ଏହି ସୁପାରିଶ ଆଜି ସ୍ୱପ୍ନରେ ପରିଣତ ହୋଇଅଛି ।

ପ୍ରଫେସର ଦାଶ ଚନ୍ଦ୍ରଶେଖର ବେହେରା ଜିଲ୍ଲା ସ୍କୁଲକୁ ପରିଦର୍ଶନରେ ଗଲାବେଳେ ତାଙ୍କ ସହିତ ପ୍ରଶିକ୍ଷଣ ମହାବିଦ୍ୟାଳୟର ବିଷୟ ଭିତ୍ତିକ ବିଶେଷଜ୍ଞମାନଙ୍କୁ ନେଇ ଯାଉଥିଲେ । ତାଙ୍କ ସହିତ ଯେଉଁ ବିଶେଷଜ୍ଞଗଣ ଯାଉଥିଲେ ସେମାନେ ହେଲେ ଗଣିତରେ ପ୍ରାଧ୍ୟାପକ ଦେବେନ୍ଦ୍ରନାଥ ରାଉତ, ଇତିହାସରେ ଅଧ୍ୟାପକ କ୍ଷେତ୍ରମୋହନ ଶତପଥୀ, ଇଂରାଜୀରେ ଡକ୍ଟର ମୋହନ ଚରଣ ନାୟକ, ଭୂଗୋଳରେ ଅଧ୍ୟାପକ ପ୍ରଭାକର ରାମ ଆଦି ବିଷୟ ବିଶେଷଜ୍ଞ । ଯଥା ସମୟରେ ବିଦ୍ୟାଳୟ ପରିଦର୍ଶନ ଓ ନିରୀକ୍ଷଣଭିତ୍ତିକ ରିପୋର୍ଟ ମଧ୍ୟ ବିଦ୍ୟାଳୟକୁ ପଠାଯାଇ ଶିକ୍ଷାଦାନ କ୍ଷେତ୍ରରେ ଉନ୍ନତି ଆଣିବା ନିମନ୍ତେ ପ୍ରୟାସ କରାଯାଇଥିଲା ।

## ବରିଷ୍ଠ ଓ କନିଷ୍ଠଙ୍କ ମଧ୍ୟରେ ସମନ୍ୱୟ ପ୍ରତିଷ୍ଠା

କୌଣସି ଏକ ଶିକ୍ଷକ ଶିକ୍ଷା ଅନୁଷ୍ଠାନର ବିକାଶ ମୁଖ୍ୟତଃ ସେହି ଅନୁଷ୍ଠାନରେ କାର୍ଯ୍ୟରତ ଥିବା ବରିଷ୍ଠ ଓ କନିଷ୍ଠ ଅଧ୍ୟାପକମାନଙ୍କ ସମ୍ମିଳିତ ପ୍ରଚେଷ୍ଟା ଉପରେ ନିର୍ଭର କରିଥାଏ । ସେ ପ୍ରଶିକ୍ଷଣ ଅନୁଷ୍ଠାନରେ ଉଭୟଗୋଷ୍ଠୀ ମଧ୍ୟରେ ଯଦି ଭାବଗତ ଏକତା ନ ରହେ, ତେବେ ଶୈକ୍ଷିକ ବାତାବରଣ କ୍ଷତିଗ୍ରସ୍ତ ହୋଇଥାଏ ।

ପ୍ରଫେସର ଦାଶଙ୍କ ସହକର୍ମୀ ଭାବେ ସେ ସମୟରେ କାର୍ଯ୍ୟରତ ଥିଲେ ପ୍ରାଧ୍ୟାପକ ଦେବେନ୍ଦ୍ରନାଥ ରାଉତ, ଅଧ୍ୟାପକ କ୍ଷେତ୍ରମୋହନ ଶତପଥୀ, ଅଧ୍ୟାପକ ଉତ୍କଳ ମୋହନ ଚରଣ ନାୟକ, ଅଧ୍ୟାପକ କୈଳାସଚନ୍ଦ୍ର ଦାଶ, ଅଧ୍ୟାପକ ପ୍ରଭାକର ରାମ, ଅଧ୍ୟାପକ ଭି.ବି. ଶାସ୍ତ୍ରୀ, ଅଧ୍ୟାପକ ଶରତ ଚନ୍ଦ୍ର ମହାନ୍ତି, ଅଧ୍ୟାପକ ସୁନୀଲ ବିହାରୀ ମହାନ୍ତି, ଅଧ୍ୟାପକ ଦୈତାରୀ ପଣ୍ଡା ପ୍ରମୁଖ ବ୍ୟକ୍ତି ବିଶେଷ ।

ସେ ସମୟରେ ସେହି ଅନୁଷ୍ଠାନରେ ନବାଗତ ଅଧ୍ୟାପକ ଓ ଅଧ୍ୟାପିକା ଭାବେ ଯେଉଁମାନେ କାର୍ଯ୍ୟ କରୁଥିଲେ, ସେମାନେ ହେଲେ ଅଧ୍ୟାପକ ଗୋବିନ୍ଦ ଚନ୍ଦ୍ର ବାଘସିଂହ, ଅଧ୍ୟାପିକା ଚାରୁବାଳା ମହାନ୍ତି, ଅଧ୍ୟାପକ ଦିଗରାଜ ବ୍ରହ୍ମା (ପୁସ୍ତକର ଲେଖକ), ଅଧ୍ୟାପକ ଡମ୍ବରୁଧର ପରିଡ଼ା, ଅଧ୍ୟାପକ ଆର୍ତ୍ତତ୍ରାଣ ମହାନ୍ତି ଓ ଅଧ୍ୟାପିକା ଭାରତୀ ଶାସ୍ତ୍ରୀ ।

ପ୍ରଫେସର ଦାଶ ବିଭିନ୍ନ ସମୟରେ ସହକର୍ମୀମାନଙ୍କ ସଭା ଆହୂତ କରୁଥିଲେ । ସେହି ସଭାରେ ସେ ଶିକ୍ଷାର ବିଭିନ୍ନ ବିଭାବ ଓ ଗବେଷଣା ସଂପର୍କରେ ଆଲୋଚନା କରୁଥିଲେ । ଏତଦ୍‌ବ୍ୟତୀତ ସେ ଅନୁଷ୍ଠାନ ପାଇଁ ବିଭିନ୍ନ ସମୟରେ ହେଉଥିବା ସୃଜନାତ୍ମକ କାର୍ଯ୍ୟକ୍ରମ (Innovative Programme) ଯଥା - ସିଲାବସ୍ ପ୍ରସ୍ତୁତି, ପାଠ୍ୟକ୍ରମ ନବୀକରଣ, ସହ-ପାଠ୍ୟକ୍ରମ ଭିତ୍ତିକ କାର୍ଯ୍ୟକ୍ରମ, ଜାତୀୟ ସେବା ସଂସ୍ଥା ସଂପର୍କୀୟ କାର୍ଯ୍ୟକ୍ରମ ସଂପର୍କରେ ଆଲୋଚନା କରି ଦାୟିତ୍ୱ ବଣ୍ଟନ କରୁଥିଲେ । ଦାୟିତ୍ୱ ବଣ୍ଟନ ସମୟରେ ସେ ବରିଷ୍ଠ ଓ କନିଷ୍ଠ ସହକର୍ମୀମାନଙ୍କ ମଧ୍ୟରେ ମଧ୍ୟ ଉପଯୁକ୍ତ ସମନ୍ୱୟ ପ୍ରତିଷ୍ଠା କରୁଥିଲେ ।

ପ୍ରଫେସର ଦାଶଙ୍କ ଦ୍ୱାରା ଆହୂତ ସଭା ଏକ ଗତାନୁଗତିକ ସଭା ନ ଥିଲା । ଅନେକ ସମୟରେ ଏହି ସଭାରେ ଶିକ୍ଷାର ତତ୍‌କାଳୀନ ନୂତନ ଧାରା, ଶିକ୍ଷାନୀତି, ଗବେଷଣାଲବ୍ଧ ଜ୍ଞାନ, ଶିକ୍ଷା ସଂପର୍କୀୟ ସମସ୍ୟା, ଶିକ୍ଷାଦର୍ଶନ, ଶିକ୍ଷା ମନସ୍ତତ୍ତ୍ୱ ଆଦି ସଂପର୍କରେ ଆଲୋଚନା କରାଯାଉଥିଲା । ଆବଶ୍ୟକ ସ୍ଥଳେ କେହି କେହି ଭିତ୍ତି ପ୍ରବନ୍ଧମାନ ମଧ୍ୟ ଉପସ୍ଥାପିତ କରୁଥିଲେ ।

ବେଳେବେଳେ ଏହି ଆଲୋଚନା ସଭାରେ ମଧ୍ୟ ପ୍ରଫେସର ଦାଶଙ୍କ ସ୍ୱଭାବ ସୁଲଭ ମନ୍ତବ୍ୟ ହାସ୍ୟରୋଳ ସୃଷ୍ଟି କରୁଥିଲା । ବେଳେବେଳେ ଶିକ୍ଷାର ନୂତନ ଧାରା,

ତଥ୍ୟ କିମ୍ବା ବିଷୟବସ୍ତୁ ସଂପର୍କରେ ଯଦି କୌଣସି ଯୁବ ଅଧ୍ୟାପକ ଜାଣୁ ନ ଥିଲେ, ସେ ହସି ହସି କହୁଥିଲେ, *"ଏସବୁ ବିଷୟ ଜାଣି ନାହଁ ବୋଲି ମୋ ଆଗରେ ଯାହା କହିଲ କହିଲ, ଆଉ କାହାକୁ କହିବ ନାହିଁ । ରାତିରେ ତତ୍ ସଂପର୍କୀୟ ବିଷୟବସ୍ତୁ ଲୁଚିଲୁଚି ପଢ଼ିଦେବ । ନଚେତ୍ କାଳକ୍ରମେ ତୁମମାନଙ୍କର ଅଜ୍ଞତା ପିଲାମାନଙ୍କ ଆଗରେ ଧରା ପଡ଼ିଯିବ ।"*

ସେ ଯାହା ହେଉନା କାହିଁକି ଏହି ହାସ୍ୟରୋଳ ଆସର ମଧ୍ୟରେ ଉଭୟ ବରିଷ୍ଠ ଓ କନିଷ୍ଠ ଅଧ୍ୟାପକମାନଙ୍କ ପାଖକୁ ଯେପରି ବାର୍ତ୍ତା ଦେବାର ଥିଲା ତାହା ସକାରାତ୍ମକଭାବେ ଚାଲି ଯାଉଥିଲା ।

## ଜାତୀୟ ସେବା ସଂସ୍ଥା କାର୍ଯ୍ୟକ୍ରମ

୧୯୬୨ ମସିହାରେ ରାଜ୍ୟ ସରକାରଙ୍କ ଦ୍ୱାରା ସରକାରୀ ପ୍ରଶିକ୍ଷଣ ମହାବିଦ୍ୟାଳୟ, ସମ୍ବଲପୁର ପ୍ରତିଷ୍ଠା ହୋଇଥିଲା । ସମ୍ବଲପୁର ବିଶ୍ୱବିଦ୍ୟାଳୟ ୧୯୬୭ ମସିହାରେ ପ୍ରତିଷ୍ଠା ହେବାର ଅଳ୍ପ ବର୍ଷ ବ୍ୟବଧାନ ମଧ୍ୟରେ ସରକାରୀ ପ୍ରଶିକ୍ଷଣ ମହାବିଦ୍ୟାଳୟରେ ଏହି ସଂସ୍ଥାର ଏକ ଶାଖା ଖୋଲା ଯାଇଥିଲା । ୧୯୭୨ ମସିହାରେ ଏହି ଅନୁଷ୍ଠାନରେ ଜାତୀୟ ସେବା ସଂସ୍ଥାର ଏକ ଶାଖା ଥିଲା । ଏହି ଶାଖା ସମସ୍ତ ଛାତ୍ରଛାତ୍ରୀଙ୍କୁ ନେଇ ଗଠିତ ହୋଇଥିଲା । ସେତେବେଳେ ଏହି ସଂସ୍ଥାର ଅଧିକାରୀ ହିସାବରେ ଅଧ୍ୟାପକ ପ୍ରଫୁଲ୍ଲ ଚନ୍ଦ୍ର ମହାପାତ୍ର କାର୍ଯ୍ୟ କରୁଥିଲେ । ସେ ଜଣେ କର୍ମଠ ଓ ଦୂରଦୃଷ୍ଟି ସଂପନ୍ନ ଅଧିକାରୀ ଥିବା ହେତୁ ଜାତୀୟ ସ୍ତରରେ ମଧ୍ୟ ବହୁ ସେବାମୂଳକ କାର୍ଯ୍ୟ କରିବାର ସୁଯୋଗ ପ୍ରଶିକ୍ଷଣ ମହାବିଦ୍ୟାଳୟର ଗୁରୁଛାତ୍ରଛାତ୍ରୀଗଣ ପାଇଥିଲେ । ସେତେବେଳେ ଏହି ଲେଖକ ଅନୁଷ୍ଠାନର ବି.ଏଡ୍ ଛାତ୍ର ଥିବା ହେତୁ ସେବା ସଂସ୍ଥା ମାଧ୍ୟମରେ ବହୁ ଅନୁଭୂତିର ଅଧିକାରୀ ହୋଇଥିଲେ ।

ପ୍ରଫେସର ଶରତ ଚନ୍ଦ୍ର ଦାଶ ୧୯୭୬ ମସିହାରେ ଏହି ପ୍ରଶିକ୍ଷଣ ମହାବିଦ୍ୟାଳୟର ଅଧ୍ୟକ୍ଷଭାବେ ଅକ୍ଟୋବର ମାସ ୨୧ ତାରିଖରେ ଯୋଗଦାନ କରିବା ପରେ ପରେ ଲକ୍ଷ୍ୟ କଲେ ଯେ ଅଳ୍ପ କେତେଜଣ ଅଧ୍ୟାପକଙ୍କ ପରିଚାଳନାରେ ସମସ୍ତ ପ୍ରଶିକ୍ଷାର୍ଥୀଙ୍କୁ ନ ରଖି ସଂସ୍ଥାର ସଦସ୍ୟମାନଙ୍କୁ ଅଧିକ ସଂଖ୍ୟକ ଅଧ୍ୟାପକମାନଙ୍କ ଅଧୀନରେ ରଖିଲେ ସଂସ୍ଥାଟିର ବିଭିନ୍ନ ଶାଖା ସମଗ୍ର ଜିଲ୍ଲାରେ କାର୍ଯ୍ୟ କରିପାରିବ । ଏହା ଫଳରେ ଜିଲ୍ଲାରେ ପ୍ରଶିକ୍ଷଣ ଅନୁଷ୍ଠାନର ସୁଫଳ ଜିଲ୍ଲାବାସୀ ନେଇ ପାରିବେ । ସେଥିପାଇଁ ସେ ସଂସ୍ଥାଟିକୁ ସର୍ବମୋଟ ପାଞ୍ଚଟି ଶାଖାରେ ବିଭକ୍ତ କରି ଦେଲେ ଓ ଗୋଟିଏ ଗୋଟିଏ ବିଭାଗରେ ଜଣେ ଜଣେ ଅଧ୍ୟାପକଙ୍କୁ ରଖିଲେ । ଫଳତଃ ପାଞ୍ଚଜଣ ଅଧ୍ୟାପକ ସ୍ୱତନ୍ତ୍ର

ଓ ସ୍ୱାଧୀନ ଭାବେ ଅଳ୍ପ ସଦସ୍ୟଙ୍କୁ ନେଇ କାର୍ଯ୍ୟ କଲେ । ସେ ସମୟରେ ଯେଉଁମାନଙ୍କୁ ଏନ୍.ଏସ୍.ଏସ୍ ଅଫିସର ଭାବେ ରଖାଯାଇଥିଲା, ସେମାନେ ହେଲେ ଅଧ୍ୟାପକ ସୁନୀଲ ବିହାରୀ ମହାନ୍ତି, ଅଧ୍ୟାପକ ଦୈତାରୀ ପଣ୍ଡା, ଅଧ୍ୟାପକ ଶରତ ମହାନ୍ତି, ଅଧ୍ୟାପକ ଡମ୍ବରୁଧର ପରିଡ଼ା ଏବଂ ଅଧ୍ୟାପକ ଦିଗରାଜ ବ୍ରହ୍ମା ।

**ତାଳବ ଓ ଶାସନ ଅଞ୍ଚଳରେ ଜାତୀୟ ସେବା ସଂସ୍ଥା କାର୍ଯ୍ୟକ୍ରମ**

ପ୍ରଫେସର ଦାଶ ଏନ୍.ଏସ୍.ଏସ୍ କାର୍ଯ୍ୟକ୍ରମକୁ ଲୋକାଭିମୁଖୀ କରିବାକୁ ଚାହୁଁଥିବା ହେତୁ ସେ ଏନ୍.ଏସ୍.ଏସ୍ ଅଫିସରମାନଙ୍କୁ ତାଳବ ଓ ଶାସନ ଅଞ୍ଚଳରେ ଭୂମିହୀନମାନଙ୍କୁ ବଣ୍ଟାଯାଇଥିବା ପତିତ ଜମିଗୁଡ଼ିକୁ ଉଦ୍ଧାର କରି ଚାଷ ଉପଯୋଗୀ କରିବା ନିମନ୍ତେ ପଦକ୍ଷେପ ନେବାକୁ ପରାମର୍ଶ ଦେଲେ । ଏହାର ଫଳସ୍ୱରୂପ ଏନ୍.ଏସ.ଏସର ଦୁଇତିନିଜଣ ଅଧିକାରୀ ଓ ସ୍ୱେଚ୍ଛାସେବୀଗଣ ପ୍ରାୟ ୧୫ ଦିନ ପର୍ଯ୍ୟନ୍ତ ସେ ଅଞ୍ଚଳରେ କାର୍ଯ୍ୟ କରିଥିଲେ । ଯେଉଁ ଜମିରେ ପଥର ଖଣ୍ଡ ଥିଲା, ଅନାବନା ଜଙ୍ଗଲ ଜାତୀୟ ଗଛ ଥିଲା ସେ ସବୁକୁ କାଟି ପିଲାମାନେ ସଫା କଲେ ଓ ଜମିରୁ ପଥର ଖଣ୍ଡମାନ ଉଠାଇ ସମତଳ କଲେ । ଏହା ଏକ କଷ୍ଟଦାୟକ କାର୍ଯ୍ୟଥିଲା । ଆଶା କରାଯାଉଥିଲା ଏ କାର୍ଯ୍ୟକ୍ରମରେ ହିତାଧିକାରୀମାନେ ଆସି ସାହାଯ୍ୟ କରିବେ । ମାତ୍ର ସେପରି କିଛି ଘଟିଲା ନାହିଁ । ମଝିରେ ମଝିରେ ଜଣେ ଅଧେ ହିତାଧିକାରୀ ଆସି ଦୂରରେ ରହି ସ୍ୱେଚ୍ଛାସେବୀମାନଙ୍କ କାମ ଦେଖୁଥିଲେ । କିଛି ସମୟ ପରେ କାହାକୁ କିଛି ନ କହି ଚାଲି ଯାଉଥିଲେ । ସେମାନେ ପ୍ରାୟତଃ ଆଦିବାସୀ ଶ୍ରେଣୀୟ ଲୋକ ଥିଲେ । ପ୍ରଫେସର ଦାଶ ସେ ସ୍ଥାନକୁ ନ ଗଲେ ମଧ୍ୟ କାର୍ଯ୍ୟର ଅଗ୍ରଗତି ସଂପର୍କରେ ବିଭିନ୍ନ ସୂତ୍ରରୁ ବୁଝୁଥିଲେ ।

ଦିନେ ଆମେ କାମ କରୁଥିବା ସମୟରେ ପ୍ରଫେସର ଦାଶଙ୍କ ପାଖରୁ ଏକ ବାର୍ତ୍ତା ଗଲା ଯେ କାର୍ଯ୍ୟ ଶେଷ ହେବାର ପୂର୍ବଦିନ ସେଠାରେ ଏକ ଗୋଷ୍ଠୀ ସଭାର ଆୟୋଜନ କରାଯିବ । ଏହି ସଭାରେ ଗ୍ରାମର ସମସ୍ତ ଅଧିବାସୀଙ୍କୁ ନିମନ୍ତ୍ରଣ କରାଯିବା ସହିତ ହିତାଧିକାରୀମାନଙ୍କୁ ମଧ୍ୟ ଉପସ୍ଥିତ ରହିବା ପାଇଁ ଅନୁରୋଧ କରାଯିବ ।

ପ୍ରଫେସର ଦାଶଙ୍କ ବାର୍ତ୍ତା ଆମ ପାଖରେ ପହଞ୍ଚିଲା ପରେ ଆମେ ସରକାର ଯେଉଁ ଭୂମିହୀନ ଲୋକମାନଙ୍କୁ ଜାଗା ଦେଇଥିଲେ, ସେମାନଙ୍କୁ ଖୋଜିଲୁ । ତାଳବ ଅଞ୍ଚଳର ଜଣେ ବି.ଏଡ୍ ଛାତ୍ର ରବିନାରାୟଣ ପଣ୍ଡାଙ୍କୁ ଏ ଦାୟିତ୍ୱ ଦିଆଗଲା । ସେ ଆମେ ପତିତ ଜମିକୁ ଉଦ୍ଧାର କରିଥିବା ଜମି ମାଲିକଙ୍କ ପାଖରେ କୌଣସି ମତେ ପହଞ୍ଚି ଯେତେବେଳେ ପରଦିନ ସଭାକୁ ଆସିବା ପାଇଁ କହିଲେ, ସେମାନେ ସେଥିପ୍ରତି

କୌଣସି ଦୃଷ୍ଟି ଦେଲେ ନାହିଁ । ସଭାକୁ ଆସିବାକୁ ମଧ୍ୟ ଅମଙ୍ଗ ହେଲେ । ମନେ ମନେ ଭାବି ନେଇଥିଲେ ଯେ ଆମେ ଯେହେତୁ ତା'ର ପତିତ ଜମିକୁ ଉଦ୍ଧାର କରିଅଛୁ, ସେଥିପାଇଁ ତାଙ୍କୁ ଆମ ଶ୍ରମ ବିନିମୟରେ କିଛି ଟଙ୍କା ମାଗିବୁ । ହଇରାଣ ହରକତ କରିବୁ ।

ସେଥିପାଇଁ ଶ୍ରଦ୍ଧେୟ ଛାତ୍ର ରବିନାରାୟଣ ତାଙ୍କୁ ଆଶା ଆଶ୍ୱାସନା ଦେଇ କହିଲେ, "ଆମେ ତାଙ୍କୁ ଆଦୌ ହଇରାଣ ହରକତ କରିବୁ ନାହିଁ ।" ତା'ପରେ ସେ ରବି ନାରାୟଣଙ୍କ ଆଗରେ ଯାହା ବର୍ଣ୍ଣନା କରିଥିଲେ, ତାହା ଥିଲା ସ୍ୱାଧୀନ ଭାରତର କତିପୟ ଅମଲାମାନଙ୍କର ଦୁଃଖୀ, ଗରିବ ଓ ଭୂମିହୀନ ଲୋକାମାନଙ୍କ ପାଇଁ ଦୁର୍ନୀତି ପୂର୍ଣ୍ଣ ଆଚରଣ ଓ କଦର୍ଯ୍ୟ ମନୋଭାବ ।

ଭୂମିହୀନ ବ୍ୟକ୍ତିମାନେ ଯାହା କହିଥିଲେ ତାହା ଥିଲା ଏହିପରି :

ଯେଉଁଦିନଠାରୁ ସରକାରଙ୍କଠାରୁ ଜମି ପାଇଲୁ ସେବେଠାରୁ ଆମର ଦୁଃଖ ବଢ଼ିଗଲା । ସ୍ଥାନୀୟ ରାଜସ୍ୱ ନିରୀକ୍ଷକ ଆସି ମଝିରେ ମଝିରେ ଟଙ୍କା ମାଗିଲେ ଓ ତାଙ୍କୁ ସରକାର କରଜ ସୂତ୍ରରେ ଏ ଜମି ଦେଇଛନ୍ତି ବୋଲି କହିଲେ । କରଜ ପାଉଣା ଫେରସ୍ତ ନ ଦେଲେ ସେମାନେ ରହୁଥିବା ଭିଟାମାଟି ଖଣ୍ଡରୁ ସେମାନଙ୍କୁ ବହିଷ୍କାର କରାଯିବ ବୋଲି ମଧ୍ୟ ଧମକ ଦେଲେ । ସେଥିପାଇଁ ତାଙ୍କ ମନରେ ଭୟ ଅଛି ଯେ ଯେହେତୁ ଆମେ ତାଙ୍କର ପତିତ ଜମିକୁ ଚାଷ ଉପଯୋଗୀରେ ପରିଣତ କରିଅଛୁ, କିଛି ଟଙ୍କା ମାଗିବୁ । ଆର.ଆଇଙ୍କ ଭଳି ମଧ୍ୟ ମଝିରେ ମଝିରେ ଆସି ହଇରାଣ ହରକତ କରିବୁ ।

ଏହା ଥିଲା ଆମ ସ୍ୱାଧୀନ ଭାରତର ଅଶୀ ଦଶକ ପାଖାପାଖି ଏକ ଘଟଣା । ଗରିବ ଲୋକମାନଙ୍କ ପାଇଁ ଆମ ଜାତୀୟ ସରକାର କରୁଥିବା ବିଭିନ୍ନ ଜନହିତକର କାର୍ଯ୍ୟକ୍ରମର ସୁଫଳ ଗରିବମାନଙ୍କ ପାଖରେ ପହଞ୍ଚିଲାବେଳେ, ତାହା କିପରି କେତେକ ନ୍ୟସ୍ତ ସ୍ୱାର୍ଥପର ଲୋକଙ୍କ ଯୋଗୁ ବାଧାପ୍ରାପ୍ତ ହେଉଥିଲା ଓ ହିତାଧିକାରୀ ଜଣକ ଶୋଷଣର ଶିକାର ହେଉଥିଲେ ତାହାର ଏକ ବାସ୍ତବ ଚିତ୍ର ।

ପୂର୍ବକାର୍ଯ୍ୟ ଅନୁଯାୟୀ ଶିବିର ଉଦ୍‌ଯାପନର ଶେଷ ଦିନ ଅଧ୍ୟକ୍ଷ ପ୍ରଫେସର ଶରତ ଚନ୍ଦ୍ର ଦାଶ ସେ ପାହାଡ଼ିଆ ଅଞ୍ଚଳକୁ ଏନ୍.ଏସ୍.ଏସ୍ କାର୍ଯ୍ୟକ୍ରମର ସଫଳତା ଦେଖିବାକୁ ଯାଇଥିଲେ । ସେଦିନ ସନ୍ଧ୍ୟାରେ ଆୟୋଜିତ ସଭାରେ ହିତାଧିକାରୀମାନେ ନିଜ ନିଜର ବକ୍ତବ୍ୟ ନିଜ ଭାଷାରେ ରଖି ଏପରି ଏକ କାର୍ଯ୍ୟକ୍ରମ ସେ ଅଞ୍ଚଳରେ ଆୟୋଜିତ କରିଥିବା ହେତୁ କୃତଜ୍ଞତା ଜ୍ଞାପନ କରିଥିଲେ ।

ଦୂରଦୃଷ୍ଟି ସଂପନ୍ନ ପ୍ରଫେସର ଦାଶଙ୍କ ଏହି କାର୍ଯ୍ୟକ୍ରମ ଆମ ଭଳି ନବାଗତ ଅଧ୍ୟାପକ ଓ ଏନ୍.ଏସ.ଏସ୍‌ର ସ୍ୱେଚ୍ଛାସେବୀମାନଙ୍କ ପାଇଁ ଏକ ଶିକ୍ଷଣୀୟ କାର୍ଯ୍ୟକ୍ରମ ଥିଲା । ସେମାନେ କିପରି ଏକ ଅନୁଷ୍ଠାନ ଗୋଷ୍ଠୀ ସହିତ ସଂପର୍କ ରଖି ଗୋଷ୍ଠୀର ହିତରେ କାର୍ଯ୍ୟ କରି ପାରିବ; ତାହା ଶିକ୍ଷା ଲାଭ କରିଥିଲେ ।

**ଗୁରୁ ଦିବସରେ 'ଗୁରୁ' ଶବ୍ଦର ହାସ୍ୟ ରସାତ୍ମକ ବ୍ୟାଖ୍ୟା**

୧୯୭୭ ମସିହା ସେପ୍ଟେମ୍ବର ମାସ ୫ ତାରିଖ । ଏହି ଦିବସଟି ସ୍ୱାଧୀନ ଭାରତର ଦ୍ୱିତୀୟ ରାଷ୍ଟ୍ରପତି ସର୍ବପଲ୍ଲୀ ରାଧାକ୍ରିଷ୍ଣନ୍‌ଙ୍କ ଜନ୍ମ ଦିବସ । ଏହି ଦିନଟି ଭାରତ ବର୍ଷରେ 'ଶିକ୍ଷକ ଦିବସ' ଓ ଆମ ରାଜ୍ୟରେ 'ଗୁରୁ ଦିବସ' ରୂପେ ପାଳିତ ହୋଇଥାଏ । ସର୍ବପଲ୍ଲୀ ରାଧାକ୍ରିଷ୍ଣନ୍‌ଙ୍କୁ ୧୯୬୨ ମସିହାରେ କେତେଜଣ ବନ୍ଧୁ ସାକ୍ଷାତକରି ତାଙ୍କର ଜନ୍ମ ଦିବସକୁ ପାଳନ କରିବା ନିମନ୍ତେ ପ୍ରସ୍ତାବ ଦେଇଥିଲେ । ପ୍ରଥମେ ସେ ଏଇ ପ୍ରସ୍ତାବରେ ରାଜି ହୋଇ ନ ଥିଲେ । ମାତ୍ର ବନ୍ଧୁମାନଙ୍କ ଆଗ୍ରହ ଦେଖି ସେ କହିଥିଲେ ଯେ ତାଙ୍କର ଜନ୍ମଦିବସକୁ ଯଦି ଶିକ୍ଷକ ଦିବସ ରୂପେ ପାଳନ କରାଯାଏ, ତେବେ ତାଙ୍କ ପକ୍ଷରୁ କୌଣସି ଆପତ୍ତି ରହିବ ନାହିଁ ।

ସର୍ବପଲ୍ଲୀ ରାଧାକ୍ରିଷ୍ଣନ୍ ହେଉଛନ୍ତି ଶିକ୍ଷକ ଜାତିର ଗର୍ବ ଓ ଗୌରବ । ସାଧାରଣତଃ ଆମ ରାଜ୍ୟର ବିଭିନ୍ନ ଶିକ୍ଷାନୁଷ୍ଠାନରେ ତାଙ୍କର ଜନ୍ମ ଦିବସକୁ ଗୁରୁ ଦିବସ ରୂପେ ପାଳନ କରାଯାଏ । ପ୍ରଫେସର ଦାଶ ୧୯୭୭ ମସିହାରେ ଗୁରୁଦିବସକୁ ପ୍ରଶିକ୍ଷଣ ମହାବିଦ୍ୟାଳୟ ପରିସରରେ ସନ୍ଧ୍ୟାବେଳେ ପାଳନ କରିବାକୁ କହିଥିଲେ । ଏଥି ସହିତ ଏକ ଆଲୋଚନାଚକ୍ରର ଆୟୋଜନ କରିବାକୁ ମଧ୍ୟ ପରାମର୍ଶ ଦେଇଥିଲେ । ସେଥିପାଇଁ ସେପ୍ଟେମ୍ବର ମାସ ୫ ତାରିଖ ସନ୍ଧ୍ୟାରେ ମହା ବିଦ୍ୟାଳୟର ଆଲୋଚନା ଗୃହରେ ସମସ୍ତ ଅଧ୍ୟାପକ, ଅଧ୍ୟାପିକା ଓ ପ୍ରଶିକ୍ଷାର୍ଥୀମାନେ ଆସି କାର୍ଯ୍ୟକ୍ରମରେ ଅଂଶ ଗ୍ରହଣ କରିଥିଲେ ।

କଲେଜ ଛାତ୍ର ସଂସଦର ସଂପାଦକ ନିଗମାନନ୍ଦ ପାଣିଗ୍ରାହୀ ତାଙ୍କ ସ୍ୱାଗତ ଅଭିଭାଷଣରେ କଥା ପ୍ରସଙ୍ଗରେ କହି ପକାଇଲେ, "ଆଜି ଏ ଆଲୋଚନା ଚକ୍ରରେ ଯୋଗ ନ ଦେଇ ସମ୍ବଲପୁର ଗୋଲବଜାରରେ କିଛି ଛାତ୍ର ବୁଲୁଛନ୍ତି । କିଛି ଛାତ୍ର ମଧ୍ୟ ସମ୍ବଲପୁର ସହରର ବିଭିନ୍ନ ସିନେମା ହଲ୍‌ରେ ଅଛନ୍ତି । ଏହାଠାରୁ ଆଉ ଦୁଃଖଦାୟକ ଘଟଣା କ'ଣ ଅଛି ?''

ତାଙ୍କର ଏହି ବକ୍ତବ୍ୟ ସେଠାରେ ଏକ ରକମ ହାସ୍ୟରୋଳ ସୃଷ୍ଟି କଲା । ସ୍ୱାଗତ ଭାଷଣ ପରେ ପରେ ଅଧ୍ୟାପକ, ଅଧ୍ୟାପିକା ଓ ଛାତ୍ରଛାତ୍ରୀଗଣ ସର୍ବପଲ୍ଲୀ ରାଧାକ୍ରିଷ୍ଣନ୍‌ଙ୍କ ବହୁମୁଖୀ ପ୍ରତିଭା ଓ ଶିକ୍ଷକ ଦିବସର ତାତ୍ପର୍ଯ୍ୟ ସଂପର୍କରେ ବିଭିନ୍ନ

ଦୃଷ୍ଟିକୋଣରୁ ଆଲୋଚନା କଲେ । ଏହିସବୁ ଆଲୋଚନା ଉପାଦେୟ ଓ ତାତ୍ତ୍ୱିକ ମଧ ଥିଲା ।

କାର୍ଯ୍ୟକ୍ରମର ଶେଷ ଭାଗରେ ଅଧ୍ୟକ୍ଷ ଦାଶ ତାଙ୍କର ସ୍ୱଭାବ ସୁଲଭ ଭଙ୍ଗୀରେ ଶିକ୍ଷକ ଦିବସର ତାତ୍ପର୍ଯ୍ୟ ସଂପର୍କରେ ଆଲୋଚନା କରିଥିଲେ । ରାଧାକ୍ରିଷ୍ଣନ୍‌ଙ୍କ ଜୀବନ ବୃତ୍ତାନ୍ତ, ଆନ୍ତର୍ଜାତୀୟ ଶିକ୍ଷାକୁ ତାଙ୍କର ଅବଦାନ, ଭାରତର ଶୈକ୍ଷିକ ଧାରାର ପ୍ରୟୋଗାତ୍ମକ ଦିଗ ସଂପର୍କରେ ବିଭିନ୍ନ ଉଦାହରଣ ପୂର୍ବକ ସେ ତାଙ୍କ ବକ୍ତବ୍ୟର ଉପସଂହାର ଟାଣିବାକୁ ଯାଇ କହିଥିଲେ , *"ମୁଁ ଆଶା କରୁଛି ମୋର ପ୍ରିୟ ଶିକ୍ଷାର୍ଥୀଗଣ ସେମାନଙ୍କ ଶୈକ୍ଷିକ ଜୀବନ ଓ କାର୍ଯ୍ୟଧାରାରେ ରାଧାକ୍ରିଷ୍ଣନ୍‌ଙ୍କ ପ୍ରଦର୍ଶିତ ମାର୍ଗ ଅନୁସରଣ କରିବେ ।"*

ବକ୍ତବ୍ୟର ଶେଷରେ ସେ ଛାତ୍ରସଂସଦର ସଂପାଦକ ନିଗମାନନ୍ଦ ପାଣିଗ୍ରାହୀଙ୍କ ବକ୍ତବ୍ୟର ପରିପ୍ରେକ୍ଷୀରେ ଯାହା କହିଥିଲେ ତାହା ଆଲୋଚନାଚକ୍ରରେ ଯୋଗ ଦେଇଥିବା ବ୍ୟକ୍ତି ବିଶେଷଙ୍କ ମଧ୍ୟରେ ହାସ୍ୟରୋଳ ସୃଷ୍ଟି କରିଥିଲା ।

ପ୍ରଫେସର ଦାଶ କହିଥିଲେ, *"ଆଦରଣୀୟ ନିଗମ ତାଙ୍କ ବକ୍ତବ୍ୟରେ କିଛି ଛାତ୍ର ଅନୁପସ୍ଥିତ ରହିବା କଥା ଦର୍ଶାଇଛନ୍ତି । ସମସ୍ତ ଛାତ୍ର ଯେ ଆଜିର କାର୍ଯ୍ୟକ୍ରମରେ ଯୋଗଦେବେ ତା'ର କିଛି ମାନେ ନାହିଁ । ମୁଁ ଭାରି ଖୁସି ଯେ ଆଜିର କାର୍ଯ୍ୟକ୍ରମରେ ଯେଉଁ ଛାତ୍ରମାନେ ଏଠାରେ ଯୋଗଦାନ କରିଛନ୍ତି, ସେମାନେ ଶିକ୍ଷକ ଅବସ୍ଥାରେ ଅଛନ୍ତି । ତେଣୁ ସେମାନେ ଶିକ୍ଷକ ଶିକ୍ଷା ସଂପର୍କରେ କିଛି ଶିକ୍ଷା ଲାଭ କରୁଛନ୍ତି । ଏତଦ୍‌ବ୍ୟତୀତ ଶିକ୍ଷଣର ମହତ୍ତ୍ୱ ମଧ ବୁଝିଛନ୍ତି ଓ ଆଲୋଚନା ଚକ୍ରରେ ଅଂଶ ଗ୍ରହଣ କରି ନିଜର ଉପସ୍ଥିତି ମାଧ୍ୟମରେ ଏପରି ଏକ ମହାର୍ଘ ଆଲୋଚନା ଚକ୍ରକୁ ନିଜର ସମର୍ଥନ ଜଣାଇଛନ୍ତି । ଏହା ହେଉଛି ଶିକ୍ଷକ ପ୍ରଶିକ୍ଷଣ ପ୍ରତିଷ୍ଠାନ ପାଇଁ ଏକ ଗୌରବର କଥା । ଯେଉଁମାନେ ନିଜକୁ 'ଗୁରୁ' ବୋଲି ମନେ କରିଛନ୍ତି, ସେମାନେ ଏହି ଆଲୋଚନା ଚକ୍ରକୁ ନ ଆସି ଗୋଲବଜାରର ଏଣେତେଣେ ବୁଲୁଛନ୍ତି କାରଣ ସେମାନଙ୍କର ଶିକ୍ଷା ବି ସମାପ୍ତ ହୋଇ ଯାଇଛି । ଆଉ ଯେଉଁମାନେ ସ୍ୱୟଂ 'ଆଚାର୍ଯ୍ୟ' ଅବସ୍ଥାରେ ଅଛନ୍ତି, ସେମାନଙ୍କର ଆଉ ତ କୌଣସି ପରିସ୍ଥିତିରେ କିଛି ଶିଖିବାର ନାହିଁ । ତେଣୁ ସେମାନେ ସିନେମା ହଲରେ ଚଳଚ୍ଚିତ୍ର ଦେଖି ମନୋରଞ୍ଜନ କରୁଛନ୍ତି ।"*

ସେଦିନ ପ୍ରଫେସର ଦାଶଙ୍କ ଏପରି ଲଘୁ ମନ୍ତବ୍ୟ ଓ ଭାଷଣ ଦେବାର ଚାତୁର୍ଯ୍ୟ ସଭାଗୃହରେ ହାସ୍ୟରୋଳ ସୃଷ୍ଟି କରିଥିଲା ।

## ଶୃଙ୍ଖଳା ହିଁ ଶିକ୍ଷକ ଜୀବନର ନିର୍ଯ୍ୟାସ

ନିଜର ବହୁବିଧ କର୍ମପ୍ରବାହ ଓ ଆଚରଣରେ ପ୍ରଫେସର ଦାଶଙ୍କ ଆତ୍ମ ସମ୍ମାନ ଓ ଶୃଙ୍ଖଳାବୋଧର ନିର୍ଯ୍ୟାସ ସରକାରୀ ପ୍ରଶିକ୍ଷଣ ମହାବିଦ୍ୟାଳୟର ଚାରିକାନ୍ଥ ମଧ୍ୟରେ ଦେଖିବାକୁ ମିଳିଥିଲା । ଏହାର ଉଦ୍‌ଗୀରଣ ବେଳେବେଳେ ଏତେ କଠୋର ଓ

ଉଦାହରଣ ପ୍ରବଣ ଥିଲା ଯାହାକି ଅନୁଷ୍ଠାନର ଶିକ୍ଷାର୍ଥୀ ଓ ଅଧ୍ୟାପକମାନଙ୍କ ମଧ୍ୟରେ ଯଥେଷ୍ଟ ଶୈକ୍ଷିକ ପ୍ରଭାବ ପକାଉଥିଲା ।

ଶୃଙ୍ଖଳା ରକ୍ଷାର ଏକ ଚିରନ୍ତନ ନିୟମ ହେଲା, ଅନ୍ୟକୁ ଆଚରଣଗତ ଶିକ୍ଷା ଦେବା ପୂର୍ବରୁ ନିଜର କାର୍ଯ୍ୟ କଳାପ ଓ ଆଚରଣରେ ନିଜେ ପରିପ୍ରକାଶ କର ଓ ନିଜେ ଅନ୍ୟ ପାଇଁ ଏକ ଉଦାହରଣ ହୁଅ । ପ୍ରଫେସର ଦାଶ ଯେଉଁ ଆଚରଣ ସଂପର୍କରେ ଅନ୍ୟକୁ କହୁଥିଲେ, ତାହା ସେ ମଧ୍ୟ ନିଜ ଆଚରଣରେ ପରିପ୍ରକାଶ କରୁଥିଲେ । ତାଙ୍କର ସମୟାନୁବର୍ତ୍ତିତା, ସହନଶୀଳତା, କ୍ଷମା, ଦୟା, ତିତିକ୍ଷା ଆଦି ଗୁଣ ମହାବିଦ୍ୟାଳୟର ସହକର୍ମୀ ଓ ଛାତ୍ରଛାତ୍ରୀଙ୍କ ଉପରେ ଯଥେଷ୍ଟ ପ୍ରଭାବ ପକାଇ ପାରୁଥିଲା ।

ସେ ନିର୍ଦ୍ଧାରିତ ସମୟରେ ମହାବିଦ୍ୟାଳୟକୁ ଆସୁଥିଲେ, ପ୍ରଶାସନିକ ଓ ଶିକ୍ଷାଗତ କାର୍ଯ୍ୟ ସାରୁଥିଲେ ଓ ସହକର୍ମୀମାନଙ୍କ ମଧ୍ୟରେ ପ୍ରଥମ ସଦସ୍ୟ ହୋଇଥିବା ହେତୁ ଆବଶ୍ୟକ ସ୍ଥଳେ ଦିଗ୍‌ଦର୍ଶନ ଦେଉଥିଲେ । ମହାବିଦ୍ୟାଳୟର କୌଣସି ଅଧ୍ୟାପକ କିମ୍ବା କର୍ମଚାରୀଙ୍କ କାର୍ଯ୍ୟ ଯଦି ବୃତ୍ତିଗତ ନୀତି ଓ ନିୟମ ପ୍ରତିକୂଳ ହେଉଥିଲା, ସେ ବୌଦ୍ଧିକ ପଦକ୍ଷେପ ନେଇ ତା'ର ନିରାକରଣ କରୁଥିଲେ ।

ସେ ସମୟରେ ସମ୍ବଲପୁରର ବୁଢ଼ାରାଜାଠାରେ ଥିବା ମହିଳା ମାଧ୍ୟମିକ ପ୍ରଶିକ୍ଷଣ ସ୍କୁଲର ଶିକ୍ଷିକା ଓ ଛାତ୍ରୀମାନଙ୍କ ମଧ୍ୟରେ ଘଟୁଥିବା ବିଶୃଙ୍ଖଳା ଏପରି ଚରମସୀମାକୁ ଯାଇଥିଲା ଯେ ରାଜ୍ୟ ସରକାରଙ୍କ ଶିକ୍ଷା ବିଭାଗ ପ୍ରଫେସର ଦାଶଙ୍କୁ ତଦନ୍ତକରି ଏକ ରିପୋର୍ଟ ଦେବାକୁ କହିଥିଲେ । ତଦନୁଯାୟୀ ପ୍ରଫେସର ଦାଶ ନିଜେ ତଦନ୍ତ କରିବାକୁ ଯାଇଥିଲେ । ସେଠାରୁ ଫେରି ଆସି ସେ ନିଜ ସହକର୍ମୀମାନଙ୍କ ସହିତ ଆଲୋଚନା କରିବା ପ୍ରସଙ୍ଗରେ କହିଥିଲେ, "ଦେଖ ! ସେଠାରେ ସିଟି ପଢୁଥିବା ଛାତ୍ରୀମାନଙ୍କ ମଧ୍ୟରୁ ଅଧିକାଂଶ ଉଚ୍ଚ ଶିକ୍ଷିତା । ଅଧିକାଂଶଙ୍କର ଶିକ୍ଷାଗତ ଯୋଗ୍ୟତା ଏମ୍.ଏ. ଓ ବି.ଏସ୍‌ସି ଅଛି । ସେହି ପିଲାମାନଙ୍କୁ ସିଟି ସ୍କୁଲର ଶିକ୍ଷୟିତ୍ରୀମାନେ ତ ଠିକ୍ ଭାବେ ପାଠ ପଢ଼ାଉ ନାହାଁନ୍ତି, ବରଂ ଗୋଷ୍ଠୀ କନ୍ଦଳରେ ଲିପ୍ତ ରହି ଅଶୋଭନୀୟ ଆଚରଣ ପ୍ରଦର୍ଶନ କରୁଛନ୍ତି । ଏପରି ଘଟୁଛି କେବଳ ପାଠ୍ୟକ୍ରମ ପରିଚାଳନା କ୍ଷେତ୍ରରେ ପ୍ରଧାନଶିକ୍ଷୟିତ୍ରୀ ଓ ଅନ୍ୟାନ୍ୟ ଶିକ୍ଷୟିତ୍ରୀଙ୍କ ଅଜ୍ଞାନତା ଓ ପ୍ରଶାସନିକ ଅପାରଗତା ।"

ସେ ସରକାରକୁ ତାଙ୍କର ତଦନ୍ତ ରିପୋର୍ଟ କ'ଣ ଦେଲେ ତାହା ତାଙ୍କ ମଧ୍ୟରେ ଗୋପନୀୟ ରହିଲା । ମାତ୍ର ଏହି ଘଟଣାର ପରେ ପରେ ସେ ପ୍ରତିଦିନ ବୁଢ଼ାରଜା ନିକଟସ୍ଥ ମହିଳା ମାଧ୍ୟମିକ ପ୍ରଶିକ୍ଷଣ ଅନୁଷ୍ଠାନରେ ଶୈକ୍ଷିକ ସଂସ୍କାରମୂଳକ କାର୍ଯ୍ୟକ୍ରମ

ଆରମ୍ଭ କରିଦେଲେ । ସେଠାରେ ଛାତ୍ରୀମାନଙ୍କୁ କିଛି ଦିନ ପାଇଁ ନୂତନ ଶିକ୍ଷାଦାନ ପଦ୍ଧତି ଓ ପ୍ରୋଜେକ୍ଟର ମାଧ୍ୟମରେ ଶିକ୍ଷା ଦେବାକୁ କେତେକ ଅଧ୍ୟାପକଙ୍କୁ ନିୟୋଜିତ କଲେ । ଏତଦ୍‌ବ୍ୟତୀତ ଶିକ୍ଷାଦାନ ସମୟରେ ମହିଳା ମାଧ୍ୟମିକ ପ୍ରଶିକ୍ଷଣ ବିଦ୍ୟାଳୟର ପ୍ରଧାନଶିକ୍ଷୟିତ୍ରୀ ଶିକ୍ଷକ-ଶିକ୍ଷିକା ମଧ୍ୟ ଉପସ୍ଥିତ ରହିବାକୁ କୁହାଗଲା । ଏହା ଫଳରେ ଅଳ୍ପଦିନ ମଧ୍ୟରେ ପ୍ରଶିକ୍ଷଣ ଅନୁଷ୍ଠାନର ଶୈକ୍ଷିକ ବାତାବରଣ ଫେରି ଆସିଲା । ପ୍ରଧାନଶିକ୍ଷୟିତ୍ରୀ ଓ ଶିକ୍ଷକ ଶିକ୍ଷିକାଙ୍କ ଆଚରଣରେ ମଧ୍ୟ ଆବଶ୍ୟକ ପରିବର୍ତ୍ତନ ଘଟିଲା ।

ସେହିପରି ଏକ ଘଟଣା ଘଟିଥିଲା ତାଙ୍କ ନିଜ ଅନୁଷ୍ଠାନ, ସରକାରୀ ପ୍ରଶିକ୍ଷଣ ମହାବିଦ୍ୟାଳୟ, ସମ୍ବଲପୁରରେ । ସେ ସମୟରେ ଜନୈକ ଅଧ୍ୟାପକଙ୍କ ପ୍ରଶିକ୍ଷାର୍ଥୀଙ୍କ ପ୍ରତି ବ୍ୟବହାର ଶିକ୍ଷକ-ଛାତ୍ର ସଂପର୍କ ଅନୁକୂଳ ହେଲା ନାହିଁ । ଏହା ପ୍ରଫେସର ଦାଶ ବୋଧହୁଏ ଅନୁଭବ କରିପାରିଲେ । ଦିନେ ସେ ସହକର୍ମୀମାନଙ୍କ ସହିତ ଆଲୋଚନା କରିବା ନିମନ୍ତେ ଏକ ଆଲୋଚନା ସଭା ଡକାଇଥିଲେ । ସେଥିରେ ଅନୁଷ୍ଠାନର କାର୍ଯ୍ୟକ୍ରମ ଓ ଶିକ୍ଷା ସଂପର୍କୀୟ ବିଭିନ୍ନ ବିଷୟ ଆଲୋଚନା ହେଉଥାଏ । ହଠାତ୍ ଅଲୋଚନା ମଧ୍ୟରେ ତାଙ୍କ ମୁଖମଣ୍ଡଳ ଟିକିଏ ଗମ୍ଭୀର ହୋଇ ଆସିଲା ।

ସେ ଆରମ୍ଭ କଲେ, *"ମୁଁ ଶୁଣୁଛି କିଛି ସହକର୍ମୀଙ୍କ ପିଲାମାନଙ୍କ ପ୍ରତି ମନ୍ତବ୍ୟ ଅତି କଠୋର । ସେମାନେ ମନେ ରଖିବା ଉଚିତ ଯେ ଏଠାକୁ ଯେଉଁ ପିଲାମାନେ ପଢ଼ିବାକୁ ଆସୁଛନ୍ତି ସେମାନଙ୍କର ବୟସ କେତେ କମ୍ । ସେମାନଙ୍କୁ ଯେଉଁ ଭଦ୍ରବ୍ୟକ୍ତି ଅଶାଳୀନ ମନ୍ତବ୍ୟ ଦେଉଛନ୍ତି, ସେମାନେ ଜୀବନବ୍ୟାପି ତାଙ୍କର ବଦନାମି କରିବେ । ଆଜି ସିନା ସେମାନେ ପରିସ୍ଥିତିରେ ପଡ଼ି କିଛି କହୁ ନାହାଁନ୍ତି । ପରବର୍ତ୍ତୀ ସମୟରେ ସେମାନଙ୍କ କଟୂମନ୍ତବ୍ୟ କ'ଣ ଆପଣମାନଙ୍କୁ ଭଲ ଲାଗିବ । ଯଦି ଆପଣମାନେ ଆପଣମାନଙ୍କ ବ୍ୟବହାର ନ ବଦଳାନ୍ତି, ତେବେ ମୁଁ ବଦଳି ନିମନ୍ତେ ସରକାରଙ୍କୁ ଲେଖିବି । ମୋର ଆଶା ଓ ବିଶ୍ୱାସ ସରକାର ମୋ କଥା ରଖିବେ ।"*

ବାସ୍ ! ସେତିକିରେ ସରିଗଲା ସହକର୍ମୀଙ୍କ ସହ ହେଉଥିବା ସଭା । ଯେଉଁ ବାର୍ତ୍ତା ସେ ଦେବାକୁ ଚାହୁଁଥିଲେ, ତାହା ଦେଇଦେଲେ । ଯାହାଙ୍କ ପ୍ରତି ଏଇ ବାର୍ତ୍ତା ଉଦ୍ଦିଷ୍ଟ ଥିଲା, ସେ ମଧ୍ୟ ବୁଝିଗଲେ ।

**ଅଭ୍ୟାସ ଶିକ୍ଷାଦାନ ଓ ପାଠ-ଯୋଜନାର ନବୀକରଣ**

ସାଧାରଣତଃ ପ୍ରତିବର୍ଷ ବି.ଏଡ୍ ଗୁରୁଛାତ୍ରଛାତ୍ରୀଗଣ ଜାନୁୟାରୀ ମାସରୁ ଫେବୃଆରୀ ମାସର ଶେଷ ପର୍ଯ୍ୟନ୍ତ ଶ୍ରେଣୀଗୃହରେ ଶିକ୍ଷାଦାନ ସହିତ ପ୍ରତ୍ୟକ୍ଷ ଅନୁଭୂତି ହାସଲ କରିବା ନିମନ୍ତେ ସମ୍ବଲପୁରରେ ଅବସ୍ଥିତ ବିଭିନ୍ନ ବଦ୍ୟାଳୟକୁ ଯାଇଥାନ୍ତି । ସେଥିପାଇଁ ଅଭ୍ୟାସକାଳୀନ ପାଠଯୋଜନାର ଏକ ନିର୍ଦ୍ଧାରିତ ମୁଦ୍ରିତ ଢାଞ୍ଚା ପିଲାମାନଙ୍କ

ପାଠ-ଯୋଜନା ଖାତାରେ ଦିଆଯାଇଥାଏ । ଏହି ଖାତାଟିରେ ଯେପରି ସେମାନେ ଦୁଇଟି ବିଷୟରେ ୧୫+୧୫=୩୦ ପାଠଦାନ କରିବେ ତା'ର ବ୍ୟବସ୍ଥା ଥାଏ । ଏହି ମୁଦ୍ରିତ ପାଠଯୋଜନା ଖାତାଟି ବହୁଦିନରୁ ପ୍ରଚଳିତ । ଏହା ସଧାରଣତଃ ହାରବର୍ଟଙ୍କ ପଞ୍ଚସୋପାନ ପଦ୍ଧତି ଅନୁସରଣରେ ପ୍ରସ୍ତୁତ କରାଯାଇଥାଏ । ତାଙ୍କ ପ୍ରଦତ୍ତ ମୁଖ୍ୟତଃ ତିନୋଟି ସୋପାନ ଯଥା - ଉପକ୍ରମ, ଉପସ୍ଥାପନ ଓ ପ୍ରୟୋଗ ଉପରେ ଗୁରୁତ୍ୱ ଦିଆଯାଇଥାଏ ।

ପ୍ରଫେସର ଦାଶ ସେ ବର୍ଷ ବହୁ ଦିନର ପ୍ରଚଳିତ ପାଠ ଯୋଜନାକୁ ଶିକ୍ଷା ଓ ଶିକ୍ଷଣ ଦୃଷ୍ଟିକୋଣରୁ ନୂତନ ଜୀବନ୍ୟାସ ଦେଇଥିଲେ । ଉପକ୍ରମ ଓ ଉପସ୍ଥାପନ କ୍ଷେତ୍ରରେ ସେ ବିଶେଷ ପରିବର୍ତ୍ତନ ଆଣି ନ ଥିଲେ ମଧ୍ୟ ପ୍ରୟୋଗ ସ୍ଥାନରେ 'ମୂଲ୍ୟାୟନ'କୁ ସ୍ଥାନିତ କରିଥିଲେ । ଏହା ମୂଲ୍ୟାୟନ ସଂପର୍କୀୟ ଆଧୁନିକ ଅବବୋଧ (Concept) ଉପରେ ପର୍ଯ୍ୟବସିତ ଥିଲା । ଏହି ନିୟମ ଅନୁସାରେ ସମସ୍ତ ଅବବୋଧ ତିନୋଟି ଉପ ଅବବୋଧ ଯଥା : ଲକ୍ଷ୍ୟ (Objective), ଶିକ୍ଷଣ ଅନୁଭୂତି (Learning experi-ence) ଏବଂ ମୂଲ୍ୟାୟନ (Evaluation) ଉପରେ ନିର୍ଭର କରେ ।

ଏତଦ୍‌ବ୍ୟତୀତ ଜଣେ ଶିକ୍ଷକ ପ୍ରଶିକ୍ଷକ ଯେତେବେଳେ ବିଦ୍ୟାଳୟକୁ ଯାଇ ପିଲାଙ୍କ ଶିକ୍ଷାଦାନ ନିରୀକ୍ଷଣ କରିବେ ସେ କେଉଁ କେଉଁ ସ୍ତରରେ କେଉଁ କେଉଁ ଉପାଦାନ ଦେଖିବେ ତାହା ଅଧ୍ୟାପକମାନଙ୍କ ସହିତ ବିଷଦଭାବେ ଆଲୋଚନା କରି ସ୍ଥିର କରିଥିଲେ । ଏହା ଫଳରେ ଶ୍ରେଣୀ ଗୃହ ପରିଦର୍ଶନ ବସ୍ତୁନିଷ୍ଠ (Objective) ହୋଇ ପାରିଥିଲା ।

ଅଭ୍ୟାସ ଶିକ୍ଷାଦାନ ନିମନ୍ତେ ଉପଯୋଗ କରାଯାଉଥିବା ଦୁଇ ତିନିମାସ ପ୍ରଶିକ୍ଷାର୍ଥୀ ଓ ଅଧ୍ୟାପକମାନଙ୍କ ପାଇଁ ଏକ କଷ୍ଟଦାୟକ ସମୟ । ପିଲାମାନେ ସେ ସମୟରେ ରାତି ଅନିଦ୍ରା ହୋଇ ପାଠଯୋଜନା ପ୍ରସ୍ତୁତ କରୁଥାନ୍ତି ଓ ପରଦିନ ଶ୍ରେଣୀଗୃହରେ ପାଠ ଯୋଜନା ଅନୁଯାୟୀ ପ୍ରଣାଳୀ ଅବଲମ୍ୱନ ପୂର୍ବକ ଶିକ୍ଷାଦାନ କରନ୍ତି । ଅଧ୍ୟାପକମାନେ ବିଦ୍ୟାଳୟର ପ୍ରତ୍ୟେକ ଶ୍ରେଣୀରେ କାର୍ଯ୍ୟକାରୀ ହେଉଥିବା କାର୍ଯ୍ୟ-ନିର୍ଘଣ୍ଟ (Routine) ଅନୁଯାୟୀ ଗୋଟିଏ ଶ୍ରେଣୀରେ ପାଞ୍ଚ ଦଶ ମିନିଟ ରହି ଅନ୍ୟ ଶ୍ରେଣୀକୁ ଯାଉଥାନ୍ତି । ପ୍ରଶିକ୍ଷାର୍ଥୀର ଶିକ୍ଷାଦାନ ନିରୀକ୍ଷଣ କରି ଶିକ୍ଷାଦାନର ଉନ୍ନତି କଳ୍ପେ ଆବଶ୍ୟକ ସ୍ଥାନରେ ନିଜର ମତାମତ ଲିପିବଦ୍ଧ କରନ୍ତି । ନିର୍ଦ୍ଦିଷ୍ଟ ବ୍ୟବଧାନରେ ପ୍ରାୟତଃ ସପ୍ତାହକୁ ଥରେ ପିଲାମାନଙ୍କର ଶିକ୍ଷାଦାନର ଅଗ୍ରଗତି ଶ୍ରେଣୀଗୃହରେ ଶିକ୍ଷା ପରିଦର୍ଶନ କରୁଥିବା ଅଧ୍ୟାପକମାନଙ୍କ ସହିତ ଆଲୋଚିତ ହେଉଥିଲା । ସେହି ସମୟରେ ଜଣେ ଗୁରୁ ଛାତ୍ର

ଜଣେ ଅଧ୍ୟାପକଙ୍କ କୌଣସି ବିଷୟଗତ ତ୍ରୁଟି ପ୍ରଦର୍ଶିତ କଲେ । ସେ କ'ଣ କହୁଛନ୍ତି ଓ କାହିଁକି ଅଧ୍ୟାପକଙ୍କ ତଥ୍ୟ ସହିତ ଏକମତ ନୁହଁନ୍ତି, ତାହା ସର୍ବ ସମକ୍ଷରେ ପ୍ରତିପାଦନ କଲେ । ଶେଷରେ ଅଧ୍ୟାପକ ଜଣକ ଯେ ଭୁଲ କହିଛନ୍ତି ଏହା ଅଧ୍ୟକ୍ଷଙ୍କ ତରଫରୁ ମହାବିଦ୍ୟାଳୟର ବରିଷ୍ଠ ପ୍ରାଧ୍ୟାପକ ଦେବେନ୍ଦ୍ର ନାଥ ରାଉତ ସ୍ପଷ୍ଟ ଭାବରେ କହିଲେ ।

ଏହାଥିଲା ପ୍ରଫେସର ଦାଶଙ୍କ ସମୟରେ ଶିକ୍ଷା ସଂପର୍କୀୟ ମୁକ୍ତ ଆଲୋଚନା । ସେ ଆଲୋଚନା ସମୟରେ ଶିକ୍ଷକ ଓ ଶିକ୍ଷାର୍ଥୀଙ୍କ ମଧ୍ୟରେ ପାଠ୍ୟ ସଂପର୍କୀୟ ଆଲୋଚନା ନିର୍ଭୀକ ଭାବରେ କରାଯାଇଥାଏ । ଆଲୋଚନା ସମୟରେ ଶିକ୍ଷଣ ଦୃଷ୍ଟିକୋଣରୁ କିଏ ବଡ଼ ଓ କିଏ ସାନ ଏପରି ବିଭେଦତା ନ ଥିଲା । ଏହା ଫଳରେ ପ୍ରତ୍ୟେକ ପ୍ରଶିକ୍ଷାର୍ଥୀ ଅଧ୍ୟାପକମାନଙ୍କୁ ନିର୍ଭୟରେ ପ୍ରଶ୍ନ ପଚାରି ଆବଶ୍ୟକ ତଥ୍ୟ ଆଦାୟ କରି ନିଜର ଜ୍ଞାନ ଗରିମା ବଢ଼ାଉ ଥିଲେ ।

## ଶିକ୍ଷାନୁଷ୍ଠାନରେ ସମାନତା ବାର୍ତ୍ତା

ଶିକ୍ଷକ ଓ ଶିକ୍ଷାର୍ଥୀଙ୍କ ମଧ୍ୟରେ ଅନେକ ସମୟରେ ଆଚରଣଗତ ବୈଷମ୍ୟ ଓ ବିଭେଦତା ଦେଖାଯାଏ । ଏହା ଏହି ଲେଖକ ଜଣକ ତାଙ୍କର ସାମଗ୍ରିକ ଶୈକ୍ଷିକ ଜୀବନରେ ଲକ୍ଷ୍ୟ କରିଛନ୍ତି । ମାତ୍ର ପ୍ରଫେସର ଦାଶ ଏପରି ଜଣେ ମଣିଷ ଥିଲେ ଯିଏ ଜାତି ଧର୍ମ ଓ ବର୍ଣ୍ଣ ନିର୍ବିଶେଷରେ ସମସ୍ତଙ୍କୁ ସମାନ ଦୃଷ୍ଟିକୋଣରୁ ଦେଖୁଥିଲେ ।

ସେ ସମୟରେ ସମ୍ବଲପୁର ବିଶ୍ୱବିଦ୍ୟାଳୟ ବି.ଏଡ୍ ପାଠ୍ୟକ୍ରମରେ 'ଟର୍ମ ପେପର' (Term Paper) ପ୍ରସ୍ତୁତି ଏକ କ୍ଷୁଦ୍ର ଗବେଷଣା ଥିଲା । ଏହାର ପରୀକ୍ଷା କରିବା ନିମନ୍ତେ ବିଶ୍ୱବିଦ୍ୟାଳୟ ବାହାରୁ ଜଣେ ପରୀକ୍ଷକ ଆସିଥାନ୍ତି ଓ ନିଜେ ଅଧ୍ୟକ୍ଷ ରହିଥାନ୍ତି । ପ୍ରତ୍ୟେକ ପରୀକ୍ଷାର୍ଥୀ ଜଣଜଣ କରି ନିଜର ଗବେଷଣା ଆଧାରିତ ନିବନ୍ଧ ନେଇ ପରୀକ୍ଷା ସମୟରେ ଉପସ୍ଥାପନ କରିଥାନ୍ତି ଓ ମୌଖିକ ପରୀକ୍ଷା ମଧ୍ୟ ଦେଉଥାନ୍ତି । ସେ ପରୀକ୍ଷାର୍ଥୀମାନଙ୍କୁ ଏପରି ପ୍ରଶ୍ନ ପଚାରୁଥାନ୍ତି ଯେ ପ୍ରଶ୍ନ ପରୀକ୍ଷାର୍ଥୀ ଅନୁକୂଳ ହୋଇଥାଏ । ସେଦିନ ସମସ୍ତ ପରୀକ୍ଷାର୍ଥୀଙ୍କ ଗୋଟିଏ ମତ ଥିଲା, "ଆମ ଅଧ୍ୟକ୍ଷ ଆମକୁ ସତରେ କେତେ ଭଲ ପାଆନ୍ତି । ସେପରି ନ ହୋଇଥିଲେ ଆମ ମନ ଜାଣି ପ୍ରଶ୍ନ ପଚାରି ନ ଥା'ନ୍ତେ ?"

ପ୍ରଫେସର ଦାଶଙ୍କ ନିକଟକୁ ଯେ କୌଣସି ମାନବୀୟ ସମସ୍ୟା ଆସିଲେ ସେ ସମସ୍ୟାର ପ୍ରୟୋଗାତ୍ମକ ଦିଗ ଦେଖି ସମାଧାନ କରୁଥିଲେ । ଏହାଦ୍ୱାରା କେହି ମାନସିକ ସ୍ତରରେ ଆଘାତ ପ୍ରାପ୍ତ ହୁଅନ୍ତୁ ସେ ଚାହୁଁ ନ ଥିଲେ । ଥରେ ଜନୈକା ଅଧ୍ୟାପିକା ଜଣେ ଶିକ୍ଷାର୍ଥୀର ପାଠଯୋଜନା ଖାତାରେ ତାଙ୍କ ଶିକ୍ଷାଦାନ ସଂପର୍କୀୟ ମନ୍ତବ୍ୟ ଦେବାକୁ

ଯାଇଁ ଲେଖିଲେ, "ତୁମର ଶିକ୍ଷାଦାନ ହକିନ୍‌ସ ଡେମୋନ୍‌ଷ୍ଟ୍ରେଟରଙ୍କ ଭଳି ।" ସେ ଭାବପ୍ରବଣ ହୋଇ ଏପରି ଲେଖିଥିଲେ । କାରଣ ଦୁଇଦିନ ପୂର୍ବରୁ ହକିନ୍‌ସ ପ୍ରେସର କୁକର କିପରି ଉପଯୋଗୀ, ତାହା ଦର୍ଶାଇବା ପାଇଁ ମହାବିଦ୍ୟାଳୟ ଲେକ୍‌ଚର ଗୃହରେ କମ୍ପାନୀ ତରଫରୁ ଜଣେ ପ୍ରଦର୍ଶନକାରୀ ଓ ତାଙ୍କର ସହଯୋଗୀ ଆସି ଏହି ପ୍ରେସର କୁକର ମାଧ୍ୟମରେ ରନ୍ଧନ ପ୍ରକ୍ରିୟା ଓ ଅଳ୍ପ ଜାଳେଣିର ଉପଯୋଗିତା ସଂପର୍କରେ ବୁଝାଇଥିଲେ । ସେତେବେଳେ ଏହି ପ୍ରେସରକୁକୁରଟି ନୂଆ ନୂଆ ବଜାରକୁ ବିକ୍ରୟ ନିମନ୍ତେ ଆସିଥାଏ ।

ମାତ୍ର ଅଧ୍ୟାପିକାଙ୍କ ଏପରି ମନ୍ତବ୍ୟ ଏମ୍.ଏସ୍‌ସି ପଢ଼ିଥିବା ଏବଂ ପୂର୍ବରୁ ଓଡ଼ିଶାର ଏକ ନାମଜାଦା ମହାବିଦ୍ୟାଳୟରେ ଛାତ୍ର ସଭାପତି ହୋଇଥିବା ବି.ଏଡ୍ ଛାତ୍ରଙ୍କୁ ମାନସିକ ଆଘାତ ଦେଇଥିଲା । ସେ ପିଲାଟି ସଂପୃକ୍ତ ଅଧ୍ୟାପିକାଙ୍କୁ ସିନା କିଛି କହିଲା ନାହିଁ, ମାତ୍ର ଶିକ୍ଷାଦାନ ପରେ ପରେ ପାଠଯୋଜନା ଖାତାଟି ଧରି ଅଧ୍ୟକ୍ଷଙ୍କ ପ୍ରକୋଷ୍ଠକୁ ପ୍ରବେଶ କରି କହିଲା, "ସାର୍ ! ମୋର ଯଦି ଶିକ୍ଷାଦାନରେ କୌଣସି ଦୋଷତ୍ରୁଟି ଅଛି, ତେବେ ତାହା ସଂପୃକ୍ତ ଅଧ୍ୟାପିକା ଜଣକ ଦର୍ଶାଇବା କଥା, ମାତ୍ର ମୋ ଖାତାରେ ଏପରି ଲେଖିବା କେତେଦୂର ଯଥାର୍ଥ ତାହା ଆପଣ ବିଚାର କରନ୍ତୁ ।" ଏହା କହି ସେ ସେହି ଖାତାଟିକୁ ପ୍ରଫେସର ଦାଶଙ୍କ ହାତକୁ ବଢ଼ାଇ ଦେଲା ।

ଅଧ୍ୟାପିକା ଜଣଙ୍କର ମନ୍ତବ୍ୟ ଦେଖି ପ୍ରଫେସର ଦାଶ ହସି ହସି କହିଲେ, ***"ସୁଧାକର ! ଏଇ ଛୋଟିଆ କଥାରେ ତୁମ ଭଳି ଜଣେ ଜାଣିବା ଶୁଣିବା ମେଧାବୀ ବିଜ୍ଞାନ ଛାତ୍ର ଏତେ ବିବ୍ରତ ! କିଏ କ'ଣ ଲେଖିଦେଲେ ଯେ ଆମେ ତାହା ହୋଇଯିବା, ଏପରି ଭାବିବା ଠିକ୍ ନୁହେଁ । ତୁମେ ମନ ଖୁସିରେ ଘରକୁ ଯାଅ । ମୁଁ ତୁମ ଅଭିଯୋଗ ଉପରେ ଠିକ୍ କାର୍ଯ୍ୟାନୁଷ୍ଠାନ ନେବି । ପିଲାଙ୍କ ଖାତାରେ କେହି ଯେପରି ଏପରି ମନ୍ତବ୍ୟ ଦେବେନି, ସେଥିପ୍ରତି ଦୃଷ୍ଟି ଦେବି ।"***

ଛାତ୍ରଜଣକ ପ୍ରଫେସର ଦାଶଙ୍କୁ ନମସ୍କାର କରି ଅଧ୍ୟକ୍ଷଙ୍କ ପ୍ରକୋଷ୍ଠ ଛାଡ଼ି ଚାଲିଗଲା । କିଛି ସମୟପରେ ସେ ଅଧ୍ୟାପିକା ଜଣଙ୍କ କୌଣସି କାମରେ ପ୍ରଫେସର ଦାଶଙ୍କୁ ଦେଖା କରିବାକୁ ଆସିଲେ । କଥା ପ୍ରସଙ୍ଗରେ ପ୍ରଫେସର ଦାଶ ତାଙ୍କୁ କହିଲେ ***"ତୁମେ ତ ବର୍ତ୍ତମାନ ଷ୍ଟୋଭରେ ରାନ୍ଧୁଛ, ପୁଣି ସେ ସୁଧାକରଙ୍କୁ କାହିଁକି ତୁମ ଷ୍ଟୋଭରେ ଜଳାଉଛ ?"***

ସେ ହସି ହସି ଯେଉଁ ବାର୍ତ୍ତା ଦେବାକୁ ଚାହୁଁଥିଲେ, ତାହା ସଂପୃକ୍ତ ବ୍ୟକ୍ତିଙ୍କ ପାଖକୁ ଚାଲିଗଲା । ଅନେକ ସମୟରେ ଅଭିଜ୍ଞତା ନ ଥିବା ପ୍ରଶାସକଗଣ ଗୋଟିଏ ଗୋଟିଏ ଛୋଟିଆ ଘଟଣାକୁ ଏପରି କରି ଦିଅନ୍ତି ଯେ ତାହା ଜଟିଳ ଗଣିତର ଖିଅଭଳି

ବିଭିନ୍ନ ସମସ୍ୟା ସୃଷ୍ଟି କରିଥାଏ । ଏହାଦ୍ୱାରା ଅନୁଷ୍ଠାନର ଶାନ୍ତି ଓ ଶୃଙ୍ଖଳା ମଧ୍ୟ ଭଙ୍ଗ ହୋଇଥାଏ ।

**ମହାବିଦ୍ୟାଳୟର ମୁଖପତ୍ର, ପ୍ରେରଣା**

ଅଭିଜ୍ଞ ଅଧ୍ୟକ୍ଷ ମହାବିଦ୍ୟାଳୟର ମୁଖପତ୍ର 'ପ୍ରେରଣା'କୁ ଗତାନୁଗତିକ ମୁଖପତ୍ର ଭାବରେ ପ୍ରକାଶ କରିବା ସପକ୍ଷରେ ନ ଥିଲେ । କାରଣ ପୂର୍ବରୁ ଯେଉଁ ମୁଖପତ୍ର ବାହାରୁଥିଲା ତାହା ସାଧାରଣ ପତ୍ରିକା ଭଳି କବିତା, ଗଳ୍ପ ଓ ପ୍ରବନ୍ଧ ଆଦି ମଧ୍ୟରେ ସୀମାବଦ୍ଧ ଥିଲା । ମାତ୍ର ପ୍ରଫେସର ଦାଶ ସହକର୍ମୀମାନଙ୍କୁ ଆଲୋଚନା ପ୍ରସଙ୍ଗରେ କହିଥିଲେ, *"ଆମ ମହାବିଦ୍ୟାଳୟର ମୁଖପତ୍ରକୁ ଆମେ ଶୈକ୍ଷିକ ରୂପରେଖ ଦେବା । ଅର୍ଥାତ୍ ଯଦି କବିତାଟିଏ ବାହାରିବ ତାହା ଶିକ୍ଷା ଓ ଶିକ୍ଷକତା ବିଷୟକୁ ନେଇ ହେବ । ସେହିଭଳି ଗଳ୍ପ, ପ୍ରବନ୍ଧ ଆଦି ଶୈକ୍ଷିକ ବିଷୟବସ୍ତୁକୁ ନେଇ ଉପସ୍ଥାପିତ ହେବ ।"* ତଦନୁଯାୟୀ ତାଙ୍କ ରହଣି ସମୟରେ ବାହାରିଥିବା କଲେଜର ମୁଖପତ୍ର 'ପ୍ରେରଣା' ଶୈକ୍ଷିକ ବିଷୟବସ୍ତୁ ଆଧାରରେ ପ୍ରକାଶିତ ହୋଇ ନୂତନ ପରମ୍ପରା ସୃଷ୍ଟି କରିଥିଲା ।

ଏହିସବୁ ଦୃଷ୍ଟିକୋଣରୁ ବିଚାର କଲେ ଜଣାଯାଏ ଯେ ପ୍ରଫେସର ଶରତ ଚନ୍ଦ୍ର ଦାଶଙ୍କ ଅଧ୍ୟକ୍ଷ ହିସାବରେ ସମ୍ବଲପୁର ଶିକ୍ଷକ ପ୍ରଶିକ୍ଷଣ ମହାବିଦ୍ୟାଳୟର ରହଣି କାଳ (୨୧ ଅକ୍ଟୋବର, ୭୬-୧୭ ମେ, ୭୮) ପ୍ରଶିକ୍ଷଣ ମହାବିଦ୍ୟାଳୟ ଜୀବନକୁ ଚଳଚଞ୍ଚଳ ଓ ବୌଦ୍ଧିକ କରି ପାରିଥିଲା । ସେ ସମୟରେ ସେ ଏମ୍.ଏଡ୍ ଶିକ୍ଷାର୍ଥୀଙ୍କ ଗବେଷଣାକୁ ବାସ୍ତବ ରୂପରେଖ ଦେଇଥିଲେ । ମହାବିଦ୍ୟାଳୟରେ ବିଭିନ୍ନ ସମୟରେ ଆଲୋଚନା ଚକ୍ର ଓ ସଂପାନମାନ ଆୟୋଜନ କରି ମହାବିଦ୍ୟାଳୟର ଛାତ୍ରଛାତ୍ରୀ ଅଧ୍ୟାପକମାନଙ୍କ ସହିତ ବାହାରର ଗବେଷକମାନଙ୍କ ସଂପର୍କ ପ୍ରତିଷ୍ଠା ପୂର୍ବକ ଶୈକ୍ଷିକ ବାତାବରଣ ସୃଷ୍ଟି କରି ପାରିଥିଲେ । ତାଙ୍କ ସମୟରେ ଶ୍ରୀ ଅରବିନ୍ଦଙ୍କ ଶିକ୍ଷା ଦର୍ଶନ ଉପରେ ଆୟୋଜିତ ସେମିନାର ଥିଲା ସେ ସମୟରେ କଲେଜ ଇତିହାସର ଏକ ନୂତନ ପୃଷ୍ଠା, ଯାହାକି ପରବର୍ତ୍ତୀ ସମୟ ପାଇଁ ଯଥାଯଥ ମାର୍ଗଦର୍ଶନ କରିଥିଲା । ସେହିପରି ସେ ଦକ୍ଷ ଅଧ୍ୟାପକମାନଙ୍କ ସାହାଯ୍ୟ ଓ କର୍ମନିଷ୍ଠ ଗ୍ରନ୍ଥାଗାରିକ ବିନୋଦ ଭୂଷଣ ପରିଜାଙ୍କ ସହଯୋଗରେ ମହାବିଦ୍ୟାଳୟର ପାଠାଗାରକୁ ନୂତନ ଜୀବନ୍ୟାସ ଦେଇ ପାରିଥିଲେ ।

**ସମ୍ବଲପୁରରୁ ସ୍ଥାନାନ୍ତର ଓ ରାଜ୍ୟ ଶିକ୍ଷା ପ୍ରତିଷ୍ଠାନରେ ଯୋଗଦାନ**

ସମ୍ବଲପୁର ସରକାରୀ ପ୍ରଶିକ୍ଷଣ ମହାବିଦ୍ୟାଳୟରୁ ପ୍ରଫେସର ଦାଶ ବଦଳି ହୋଇ ରାଜ୍ୟ ଶିକ୍ଷା ପ୍ରତିଷ୍ଠାନ, ଓଡ଼ିଶା ଭୁବନେଶ୍ୱରରେ ନିର୍ଦ୍ଦେଶକ ଭାବେ ୧୬ ଜୁନ୍, ୧୯୭୮ରେ କାର୍ଯ୍ୟ ଆରମ୍ଭ କରିଥିଲେ । ନିଜର ବଳିଷ୍ଠ ଉଦ୍ୟମ ଓ ଦୂରଦୃଷ୍ଟି ସଂପନ୍ନ

କାର୍ଯ୍ୟପଦ୍ଧା ଯୋଗୁଁ ସେ ଏହି ଅନୁଷ୍ଠାନକୁ ୧୯୭୯ ମସିହାରେ ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦ, ଓଡ଼ିଶାରେ ପରିଣତ କରିପାରିଥିଲେ ଓ ଏହାର ନିର୍ଦ୍ଦେଶକ ଭାବେ ୨୦ ସେପ୍ଟେମ୍ବର, ୧୯୮୮ ପର୍ଯ୍ୟନ୍ତ କାର୍ଯ୍ୟ ନିର୍ବାହ କରିଥିଲେ । ରାଜ୍ୟ ଶିକ୍ଷା ପ୍ରତିଷ୍ଠାନ, ଓଡ଼ିଶା ରାଜ୍ୟ ଶିକ୍ଷା ଓ ଗବେଷଣା ପରିଷଦ ହେବା ଫଳରେ ଏହାର କାର୍ଯ୍ୟ ପରିସର କ୍ରମଶଃ ବ୍ୟାପକ ହେବାକୁ ଲାଗିଲା ।

ଆମ ଦେଶରେ ବିଦ୍ୟାଳୟ ସ୍ତରର ଗୁଣାତ୍ମକ ଶିକ୍ଷା ବିକାଶ ଦିଗରେ କାର୍ଯ୍ୟ କରିବା ନିମନ୍ତେ ରାଷ୍ଟ୍ରୀୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦ, ନୂଆଦିଲ୍ଲୀ ଭାରତ ସରକାରଙ୍କ ଦ୍ୱାରା ୧୯୬୧ ମସିହାରେ ପ୍ରତିଷ୍ଠିତ ହୋଇଅଛି । ଏହା ଏକ ସ୍ୱୟଂଚାଳିତ ସଂସ୍ଥା ଯାହାକି ସମଗ୍ର ଦେଶ ପାଇଁ ବିଦ୍ୟାଳୟ ଶିକ୍ଷାର ନୀତି ନିର୍ଦ୍ଧାରଣ କରିବା ସହିତ ବୈଷୟିକ ପରାମର୍ଶ ଦେଇଥାଏ । ଏହି ସଂସ୍ଥା ମଧ୍ୟମରେ ଶିକ୍ଷା ଗବେଷଣା, ଶିକ୍ଷକ ଶିକ୍ଷା କ୍ଷେତ୍ରରେ ସମନ୍ୱୟ ପ୍ରତିଷ୍ଠା, ଶିକ୍ଷା ସଂପର୍କୀୟ ପୁସ୍ତକ ଓ ପତ୍ରିକା ପ୍ରକାଶିତ କରାଯାଇଥାଏ ।

ସେହିପରି ଭାରତର ବିଭିନ୍ନ ରାଜ୍ୟ ସ୍ତରରେ ବିଦ୍ୟାଳୟ ଶିକ୍ଷାର ଗୁଣାତ୍ମକ ବିକାଶ ଲକ୍ଷ୍ୟ ହାସଲ କରିବା ଦିଗରେ ରାଜ୍ୟ ଶିକ୍ଷା ପ୍ରତିଷ୍ଠାନ କିମ୍ବା ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦ ଗଠନ କରାଯାଇଅଛି । ଆମ ରାଜ୍ୟରେ ପ୍ରଫେସର ଶରତ ଚନ୍ଦ୍ର ଦାଶଙ୍କ ଉଦ୍ୟମ ଫଳରେ ରାଜ୍ୟ ସରକାର ୧୯୭୯ ମସିହାରେ ରାଜ୍ୟ ଶିକ୍ଷା ପ୍ରତିଷ୍ଠାନକୁ ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦରେ ପରିଣତ କରିଛନ୍ତି । ଏହି ନୂତନ ସଂସ୍ଥାଟି ସେ ସମୟରେ କେନ୍ଦ୍ର ଶିକ୍ଷା ମନ୍ତ୍ରୀ ପ୍ରତାପ ଚନ୍ଦ୍ର ଚୁନ୍ଦରଙ୍କ ଦ୍ୱାରା ଉଦ୍‌ଘାଟିତ ହୋଇଥିଲା । ଅନ୍ୟ ମାନ୍ୟଗଣ୍ୟ ଅତିଥି ମଧ୍ୟରେ ରାଜ୍ୟ ଶିକ୍ଷା ମନ୍ତ୍ରୀ ପ୍ରଦୀପ୍ତ କିଶୋର ଦାସ ଉପସ୍ଥିତ ଥିଲେ । ଏହି ପରିଷଦର ପ୍ରଥମ ମୁଖ୍ୟ ତଥା ନିର୍ଦ୍ଦେଶକ ହେବାର ସୌଭାଗ୍ୟ ଅର୍ଜ୍ଜନ କରିଥିଲେ ପ୍ରଫେସର ଦାଶ ।

ସର୍ବଭାରତୀୟ ସ୍ତରରେ ଓଡ଼ିଶାର ରାଜ୍ୟ ଶିକ୍ଷା ଓ ପ୍ରଶିକ୍ଷଣ ପରିଷଦକୁ ଏକ ସ୍ୱତନ୍ତ୍ର ମର୍ଯ୍ୟାଦା ଦେବା ନିମନ୍ତେ ଓ ଶିକ୍ଷକ ଶିକ୍ଷା ନିର୍ଦ୍ଦେଶାଳୟରେ ପରିଣତ କରିବା ନିମନ୍ତେ ଏହି ଦୂରଦୃଷ୍ଟି ସଂପନ୍ନ ଶିକ୍ଷାବିତ୍ ଜଣକ ନିଜ କାର୍ଯ୍ୟଶୈଳୀରେ ଯେଉଁସବୁ ଆଭିମୁଖ୍ୟ ନେଇ ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦକୁ ଚଳାଉଥିଲେ ସେଗୁଡ଼ିକ ହେଲା :

– ରାଜ୍ୟର ସମସ୍ତ ଶିକ୍ଷକ ପ୍ରଶିକ୍ଷଣ ଅନୁଷ୍ଠାନକୁ ପରିଷଦର ଅଧୀନକୁ ଆଣି ଶିକ୍ଷକ ଶିକ୍ଷାର ଗୁଣାତ୍ମକ ବିକାଶ ସାଧନ କରିବା ;

– ରାଷ୍ଟ୍ରୀୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦ ସହିତ ସମନ୍ୱୟ ପ୍ରତିଷ୍ଠା କରି ଜାତୀୟସ୍ତରରେ କାର୍ଯ୍ୟକାରୀ ହେଉଥିବା ପ୍ରକଳ୍ପଗୁଡ଼ିକୁ ତ୍ୱରାନ୍ୱିତ କରିବା ଓ ରାଜ୍ୟ ନିମନ୍ତେ ଏହାର ସୁଫଳ ଦେବା ;

– ବିଭିନ୍ନ ସଂବ୍ୟାପକ ସେବା ମଧ୍ୟରେ ସମନ୍ୱୟ ପ୍ରତିଷ୍ଠା ଓ ଯଥାଯଥ ପରିଚାଳନା ;

– ରାଜ୍ୟ ଅଣଆନୁଷ୍ଠାନିକ ଶିକ୍ଷା ଅନୁଷ୍ଠାନ ଏବଂ ନବସାକ୍ଷରଙ୍କ ନିମନ୍ତେ ଉଚ୍ଚମାନର ଶିକ୍ଷଣ ସାମଗ୍ରୀ ପ୍ରସ୍ତୁତ ଓ ପ୍ରକାଶନ କରିବା ସହିତ ଆବଶ୍ୟକ ସ୍ଥଳେ ବୈଷୟିକ ପରାମର୍ଶ ଦେବା ;

– ଶିକ୍ଷା କ୍ଷେତ୍ରରେ ସୃଜନାତ୍ମକ ଗବେଷଣାମାନ କରିବା ନିମନ୍ତେ ଅନୁକୂଳ ପରିବେଶ ସୃଷ୍ଟି କରିବା, ଗବେଷଣାତ୍ମକ ନିବନ୍ଧମାନ ପ୍ରକାଶ କରିବା ଏବଂ ଶିକ୍ଷା ସଂପର୍କୀୟ ତଥ୍ୟ ବିତରଣ କରିବା ;

– ଶିକ୍ଷା ପ୍ରଶାସକ ତଥା ଶିକ୍ଷା ପରିଦର୍ଶକମାନଙ୍କ ନିମନ୍ତେ ବିଭିନ୍ନ ଶୈକ୍ଷିକ କାର୍ଯ୍ୟକ୍ରମାନ କରି ପାରସ୍ପରିକ ଭାବର ଆଦାନ ପ୍ରଦାନ ମାଧ୍ୟମରେ ଜ୍ଞାନର ନବୀକରଣ କରିବା ;

– ପାଠ୍ୟକ୍ରମ, ଶିକ୍ଷାଦାନ ପ୍ରଣାଳୀ ଓ ଗବେଷଣାତ୍ମକ ନିବନ୍ଧର ତଥ୍ୟାନୁଯାୟୀ ଶିକ୍ଷା ସମସ୍ୟାର ସମାଧାନ କରିବା ଓ

– ସମୟଭିତ୍ତିକ ଶୈକ୍ଷିକ କାର୍ଯ୍ୟକ୍ରମମାନଙ୍କର ମୂଲ୍ୟାୟନ କରିବା ।

ପ୍ରଫେସର ଦାଶ ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦର ନିର୍ଦ୍ଦେଶକ ଥିଲାବେଳେ ସମଗ୍ର ଦେଶରେ ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦକୁ ସ୍ୱତନ୍ତ୍ର ସ୍ଥିତି ଦେଇପାରିଥିଲେ । ସେଥିପାଇଁ କେହି କେହି କହନ୍ତି ଯେ ତାଙ୍କ ସମୟ ଓଡ଼ିଶାର ଶିକ୍ଷକ ଶିକ୍ଷା ଓ ଗବେଷଣା ନିମନ୍ତେ ଏକ ସୁବର୍ଣ୍ଣଯୁଗ ଆନୟନ କରିଥିଲା । ଯେଉଁମାନେ ଏଇ କଥା କହୁଥିଲେ, ସେମାନେ ମୁଖ୍ୟତଃ ପ୍ରଫେସର ଦାଶଙ୍କ ଦ୍ୱାରା ଅନୁସୃତ ବହୁମୁଖୀ କାର୍ଯ୍ୟପନ୍ଥା ଓ ପ୍ରକଳ୍ପଗୁଡ଼ିକର କାର୍ଯ୍ୟକାରିତାର ଫଳାଫଳ ଓ ରୂପାୟନ ଦେଖି ମତପୋଷଣ କରୁଥିଲେ ।

## ପରିଷଦର ନିଜସ୍ୱ ଗୃହ

୧୯୬୪ ମସିହାରେ ଶିକ୍ଷା ନିର୍ଦ୍ଦେଶାଳୟ ଅଧୀନରେ କାର୍ଯ୍ୟକରି ରାଜ୍ୟ ଶିକ୍ଷା ପ୍ରତିଷ୍ଠାନର ନିଜସ୍ୱ ଗୃହ ନ ଥିବାରୁ ଏହି ପ୍ରତିଷ୍ଠାନଟି ଭୁବନେଶ୍ୱରର ବିଭିନ୍ନ ସ୍ଥାନରେ କାର୍ଯ୍ୟ କରୁଥିଲା । ଏହା ଫଳରେ ଅନେକ ପରିଚାଳନାଗତ ଓ ପ୍ରଶାସନିକ କାର୍ଯ୍ୟ ବାଧାପ୍ରାପ୍ତ ହେଉଥିଲା । ସେଥିପାଇଁ ପ୍ରଫେସର ଦାଶ ରାଜ୍ୟ ଶିକ୍ଷା ଗବେଷଣା ପରିଷଦର ଅଧ୍ୟକ୍ଷ ହେଲା ପରେ ପରିଷଦ ନିମନ୍ତେ ଏକ ସ୍ୱତନ୍ତ୍ର ଓ ସ୍ଥାୟୀ ଗୃହର ଅନୁସନ୍ଧାନରେ

ଥିଲେ । କାରଣ ରାଜ୍ୟ ଶିକ୍ଷା ଗବେଷଣା ପରିଷଦର ବିଭିନ୍ନ ବିଭାଗଗୁଡ଼ିକ ଯଥାଯଥଭାବେ କାର୍ଯ୍ୟକ୍ଷମ ହୋଇପାରୁ ନ ଥିଲା ।

ସେ ସମୟରେ ପ୍ରାଥମିକ ଶିକ୍ଷା ନିର୍ଦ୍ଦେଶାଳୟ ଅର୍ଥରେ ରାଜ୍ୟ ହରେକୃଷ୍ଣ ମହତାବ ପାଠାଗାର ପଛରେ ପ୍ରାଥମିକ ଶିକ୍ଷା ନିର୍ଦ୍ଦେଶାଳୟର ନିର୍ମାଣଧୀନ କୋଠାକୁ ରାଜ୍ୟ ଶିକ୍ଷା ଗବେଷଣା ଓ ପରିଷଦ କାର୍ଯ୍ୟାଳୟ ସ୍ଥାନାନ୍ତର କରିବା ନିମନ୍ତେ ପ୍ରଫେସର ଦାଶ ସରକାରଙ୍କୁ ପ୍ରସ୍ତାବ ଦେଲେ । ଏହି ପ୍ରସ୍ତାବ ଅନୁମୋଦନ ପୂର୍ବରୁ ସେ ନିଜେ ତାଙ୍କର ଷ୍ଟେନୋ ଓ ଜଣେ ପିଅନକୁ ନେଇ ଅସଂପୂର୍ଣ୍ଣ ଥିବା ଅବସ୍ଥାରେ ଥିବା ସେହି କୋଠା ଗୃହରେ ନିଜର କାର୍ଯ୍ୟାଳୟ ଆରମ୍ଭ କଲେ । ମାତ୍ର ଏପରି କାର୍ଯ୍ୟ ପାଠାଗାରର କର୍ମକର୍ତ୍ତାମାନଙ୍କ ଗ୍ରହଣୀୟ ହେଲାନି । ସେମାନେ ସେ କୋଠାଟି ରାଜ୍ୟ ହରେକୃଷ୍ଣ ମହତାବ ପାଠାଗାରକୁ ଛାଡ଼ିଦେବା ନିମନ୍ତେ ସରକାରଙ୍କ ପାଖରେ ଆପତ୍ତି ଅଭିଯୋଗ କଲେ । ଏପରିକି ଏହି ଅଭିଯୋଗ ଯାଇ ତତ୍‌କାଳୀନ ମୁଖ୍ୟମନ୍ତ୍ରୀ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ପାଖରେ ପହଞ୍ଚିଲା ।

ଏହା ଏକ ସମ୍ବେଦନଶୀଳ ପ୍ରସଙ୍ଗ ହୋଇଥିବା ହେତୁ ସ୍ୱୟଂ ମୁଖ୍ୟମନ୍ତ୍ରୀ କୋଠାଘରର ସ୍ଥିତି ଆକଳନ କରିବା ନିମନ୍ତେ ୧୯୮୫ ମସିହା ଜାନୁୟାରୀ ମାସରେ ନବ ନର୍ମିତ କୋଠାଘର ନିକଟରେ ଦିନ ଦଶଟା ପୂର୍ବରୁ ଆସି ପହଞ୍ଚିଲେ । ତାଙ୍କ ସହିତ ରାଜ୍ୟ ହରେକୃଷ୍ଣ ମହତାବ ପାଠାଗାରର କର୍ମକର୍ତ୍ତାମାନେ ମଧ ଥିଲେ ଓ କୋଠାଘରଟି ସେମାନଙ୍କୁ ଦେବା ନିମନ୍ତେ ଯୁକ୍ତି କରୁଥିଲେ ।

ଏହି ସମୟରେ କୋଠାଘରର ତିନି ମହଲା ଉପରେ ନୂଆକରି କାର୍ଯ୍ୟାଳୟ ଆରମ୍ଭ କରିଥିବା ପ୍ରଫେସର ଦାଶଙ୍କ ପାଖରେ ଏ ଖବର ପହଞ୍ଚିଲା । ସେ ସଙ୍ଗେ ସଙ୍ଗେ ତଳକୁ ଆସି ମୁଖ୍ୟମନ୍ତ୍ରୀଙ୍କୁ ସାକ୍ଷାତ କଲେ । ନିର୍ଦ୍ଦେଶକ ଦାଶଙ୍କୁ ଦେଖୁ ଦେଖୁ ସଙ୍ଗେ ସଙ୍ଗେ ମୁଖ୍ୟମନ୍ତ୍ରୀ ମହୋଦୟ ଆରମ୍ଭ କଲେ, "ଶରତ ବାବୁ ! ଏ ସୌଧଟି ଆପଣ ପାଠାଗାର ସଂପ୍ରସାରଣ ନିମନ୍ତେ ଛାଡ଼ି ଦିଅନ୍ତୁ ।"

ମୁଖ୍ୟମନ୍ତ୍ରୀଙ୍କ ମୁହଁରୁ ଏହି କଥା ପଦକ ଶୁଣି ବିଜ୍ଞ ନିର୍ଦ୍ଦେଶକ କହିଲେ, *"ସାର୍ ! ସଂପ୍ରତି ଜାତୀୟ ସ୍ତରରେ ଶିକ୍ଷା ଓ ଗବେଷଣା ଉପରେ ବିଶେଷ ଗୁରୁତ୍ୱ ଦିଆଯାଉଅଛି । ଆମେ କାର୍ଯ୍ୟ କରୁଥିବା ନଅତାଲା ପାଖରେ ଥିବା କାର୍ଯ୍ୟାଳୟଟି ନିହାତି ସଂକୀର୍ଣ୍ଣ । କ୍ରମଶଃ ରାଜ୍ୟ ଶିକ୍ଷା ଗବେଷଣା ଓ ପରିଷଦ ଆନୁକୂଲ୍ୟରେ ଜାତୀୟ ସରକାର ବିଭିନ୍ନ କାର୍ଯ୍ୟକ୍ରମ ଓ ବିଭାଗମାନ ଖୋଲିବାକୁ ନିଷ୍ପତ୍ତି ନେଇଛନ୍ତି । ପରିଷଦକୁ ରାଜ୍ୟ ପାଇଁ ବଳିଷ୍ଠ ଓ କାର୍ଯ୍ୟକ୍ଷମ କରିବାକୁ ହେଲେ ପରିଷଦ ପାଇଁ ଏକ ତ୍ରିତଳ ବିଶିଷ୍ଟ କୋଠାଘରର ନିହାତି ଆବଶ୍ୟକତା*

*ରହିଅଛି । ଏହି ଦୃଷ୍ଟିକୋଣରୁ ମୁଖ୍ୟମନ୍ତ୍ରୀ ଯାହା ଉଚିତ ମନେ କରିବେ ନିଶ୍ଚିତ ଭାବେ ତାହା ରାଜ୍ୟର ମଙ୍ଗଳ ନିମନ୍ତେ ଅଭିପ୍ରେତ ହେବ ।"*

ପ୍ରଫେସର ଦାଶଙ୍କ ବିନମ୍ର ଓ ଆବେଗପୂର୍ଣ୍ଣ ତଥ୍ୟଭିତ୍ତିକ ଉପସ୍ଥାପନ ଶୁଣି ମୁଖ୍ୟମନ୍ତ୍ରୀ କିଛି ସମୟ ନିରବ ରହିଲେ । ତା'ପରେ ସମସ୍ତ ପକ୍ଷଙ୍କ କଥାଶୁଣି ସେ ସ୍ଥାନ ଛାଡ଼ି ସଚିବାଳୟ ଅଭିମୁଖେ ଚାଲିଗଲେ ।

ଏହି ଘଟଣାର ଏକ ମାସ ମଧ୍ୟରେ ସେହି ତ୍ରିତଳ ସୌଧଟି ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦର ନିର୍ଦ୍ଦେଶାଳୟ ରୂପେ ଓଡ଼ିଶା ସରକାର ଘୋଷଣା କଲେ । ସଂପ୍ରତି ଏହି ନିର୍ଦ୍ଦେଶାଳୟ ଶିକ୍ଷକ ଶିକ୍ଷା ନିର୍ଦ୍ଦେଶାଳୟ ଏବଂ ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦ, ଓଡ଼ିଶା ନାମରେ ନାମିତ ।

**ୟୁନିସେଫ ପ୍ରକଳ୍ପର କାର୍ଯ୍ୟକାରିତା**

ଆନ୍ତର୍ଜାତିକ କ୍ଷେତ୍ରରେ ମିଳିତ ଜାତିସଂଘ ଦ୍ୱାରା ୧୯୪୬ ମସିହା ଡିସେମ୍ବର ମାସରେ ସୃଷ୍ଟ ୟୁନିସେଫ୍ ହେଉଛି ଶିଶୁମାନଙ୍କର ଶିକ୍ଷା, ସ୍ୱାସ୍ଥ୍ୟ ଓ ସର୍ବାଙ୍ଗୀନ ବିକାଶ ନିମନ୍ତେ ଏକ ଉତ୍ସର୍ଗୀକୃତ ସଂସ୍ଥା । ଏହି ସଂସ୍ଥା ମାଧ୍ୟମରେ ବିଶ୍ୱର ବିଭିନ୍ନ ରାଷ୍ଟ୍ରରେ ବହୁ କଲ୍ୟାଣକର ଯୋଜନାମାନ କାର୍ଯ୍ୟକାରୀ କରାଯାଇଅଛି । ପ୍ରଫେସର ଦାଶ ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦରେ ଅବସ୍ଥାପିତ ଥିଲାବେଳେ ୟୁନିସେଫ୍ ସହାୟତାରେ ରାଜ୍ୟର ଶୈକ୍ଷିକ ବିକାଶ ନିମନ୍ତେ କେତେଗୁଡ଼ିଏ ପ୍ରକଳ୍ପ କାର୍ଯ୍ୟକାରୀ କରାଇଥିଲେ । ସେହି ସବୁ ପ୍ରକଳ୍ପଗୁଡ଼ିକ ହେଲା :

ପ୍ରକଳ୍ପ ୧ : ପୁଷ୍ଟି, ସ୍ୱାସ୍ଥ୍ୟ ଶିକ୍ଷା ଏବଂ ପାରିପାର୍ଶ୍ୱିକ ପରିଷ୍କାର ପରିଚ୍ଛନ୍ନତା

ପ୍ରକଳ୍ପ ୨ : ପ୍ରାଥମିକ ଶିକ୍ଷା ପାଠ୍ୟକ୍ରମ ନବୀକରଣ

ପ୍ରକଳ୍ପ ୩ : ଗୋଷ୍ଠୀ ଶିକ୍ଷା ଏବଂ ଅଂଶଗ୍ରହଣ ସଂପର୍କୀୟ ବିକାଶନ୍ମୁଖ କାର୍ଯ୍ୟାବଳୀ

ପ୍ରକଳ୍ପ ୪ : ଆଦ୍ୟ ଶୈଶବ ଶିକ୍ଷା

ପ୍ରକଳ୍ପ ୫ : ପ୍ରାଥମିକ ଶିକ୍ଷା ପ୍ରବେଶ ନିମନ୍ତେ ସଂବ୍ୟାପକ କାର୍ଯ୍ୟକ୍ରମ ଏବଂ ଅଣଆନୁଷ୍ଠାନିକ ଶିକ୍ଷା

ପ୍ରକଳ୍ପ ୬ : ଜନସଂଖ୍ୟା ଶିକ୍ଷା

ଏହିସବୁ ପ୍ରକଳ୍ପର ସୁଫଳ ରାଜ୍ୟର ବିଭିନ୍ନ ପ୍ରକଳ୍ପ ଅନୁଷ୍ଠାନରେ ସଫଳତାର ସହିତ କାର୍ଯ୍ୟକାରୀ କରାଯାଇଥିଲା । ପ୍ରାଥମିକ ଶିକ୍ଷାର ନବୀକରଣ ଓ ସାର୍ବଜନୀନୀକରଣ ଉପଲକ୍ଷେ ପ୍ରଫେସର ଦାଶଙ୍କ ନିର୍ଦ୍ଦେଶନାରେ ପ୍ରଥମ ଶ୍ରେଣୀରୁ ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ ବିଭନ୍ନ ପାଠ୍ୟପୁସ୍ତକ ସହିତ ପାଠୋପକରଣ ପ୍ରସ୍ତୁତ କରାଯାଇଥିଲା । ସେହିସବୁ

ପାଠ୍ୟପୁସ୍ତକ ପରବର୍ତ୍ତୀ ସମୟରେ ରାଜ୍ୟ ସରକାରଙ୍କ ଦ୍ୱାରା ଜାତୀୟକରଣ ପାଠ୍ୟପୁସ୍ତକ ପ୍ରସ୍ତୁତି ନିମନ୍ତେ ଆବଶ୍ୟକ ସହାୟତା ଯୋଗାଇ ପାରିଥିଲା ।

ପ୍ରଫେସର ଦାଶଙ୍କ ବୈଶିଷ୍ଟ୍ୟ ହେଉଛି ଯେ ସେ ଜଣେ ବିଜ୍ଞାନ ଛାତ୍ର ହେଲେ ମଧ୍ୟ ଓଡ଼ିଆ ଭାଷା ଓ ସାହିତ୍ୟ ପାଇଁ ତାଙ୍କ ମନରେ ଅହେତୁକ ଆଗ୍ରହ ଥିଲା । ସେଥିପାଇଁ ସେ ଓଡ଼ିଆ ବିଷୟରେ ପ୍ରସ୍ତୁତ ହେଉଥିବା ପାଠ୍ୟପୁସ୍ତକକୁ ସ୍ୱତନ୍ତ୍ର ଦିଗ୍‌ଦର୍ଶନ ଦେଇ ସେଥିରେ ବୈଜ୍ଞାନିକ ଦୃଷ୍ଟିକୋଣକୁ ପ୍ରତିଫଳିତ କରୁଥିଲେ । ଏହା ଫଳରେ ଶୈଶବରେ ସାହିତ୍ୟ ପଢୁଥିବା ପିଲାଟିର ମନରେ ବୈଜ୍ଞାନିକ ମନୋଭାବ ଅଙ୍କିତ ହେବାର ସମସ୍ତ ଉପାଦାନ ସେ ବିଭିନ୍ନ କବିତା ଓ ଗଳ୍ପ ପଢ଼ିଲାବେଳକୁ ପାଇ ପାରୁଥିଲା । ତାହାର ଏକ ନମୁନା ଏଇ ଲେଖକ ସେ ସମୟରେ ଦ୍ୱିତୀୟଶ୍ରେଣୀ ପାଇଁ ଉଦ୍ଦିଷ୍ଟ ଏକ ସାହିତ୍ୟ ବହିକୁ ଅନୁଧ୍ୟାନ କଲାବେଳେ ଜାଣିବାକୁ ପାଇଥିଲେ । ସେହି କବିତାଟିର ଶୀର୍ଷକ ହେଲା, "ଆ' ଜହ୍ନମାମୁ ଶରଦ ଶଶୀ" । ଏହି କବିତାଟି ପ୍ରଫେସର ଦାଶଙ୍କ ନିଜସ୍ୱ ରଚନା ଥିଲା । କବିତାଟିର ଭାବ ଓ ଭାଷା ଥିଲା ଏହିପରି :

*ଆ' ଜହ୍ନମାମୁ ଶରଦ ଶଶୀ*
*ମୋ କାହ୍ନୁ ହାତରେ ପଡ଼ରେ ଖସି ।*
*କାହ୍ନୁ ପାଖେ ଅଛି ଫୁଷି ବିଲେଇ*
*ତୋତେ ଦେଖି ଜରି ଯିବ ପଳେଇ ।*
*ତୋ ଚନ୍ଦ୍ର ବଦନ କେତେ ଝୋଟିଙ୍ଗି*
*ଦୂରକୁ ଠକୁଛୁ ଏତେ ଚାଲାଖି ।*
*ଆଣିଛି ମଣିଷ ଦେଇ ଜେଖାଏ*
*ତୋ ଦେହରୁ ବାଲି ମାଟି ମୋଖାଏ ।*

୧୯୬୯ ମସିହା ଜୁଲାଇ ମାସ ୧୬ ତାରିଖରେ ଜ୍ଞାନ ଓ ବିଜ୍ଞାନ ଜଗତରେ ଚହଳ ପକାଇ ଆମେରିକାର ଚନ୍ଦ୍ର ବିଜୟୀ ମହାକାଶଚାରୀ ନୀଲ୍ ଆଲଡ୍ରେନ ଆର୍ମଷ୍ଟ୍ରଙ୍ଗ (Neil Aldren Armstrong) ଚନ୍ଦ୍ର ପୃଷ୍ଠରେ ପାଦ ଥାପିଥିବା ପ୍ରଥମ ମଣିଷ ହେବାର ସୌଭାଗ୍ୟ ଅର୍ଜନ କରିଥିଲେ । ସେ ଦିନ ସେ ଚନ୍ଦ୍ରପୃଷ୍ଠରୁ ଆଣିଥିବା ବାଲିମାଟି ଆଦି ସତୁରି ଓ ଅଶୀଦଶକରେ ଚନ୍ଦ୍ରପୃଷ୍ଠ ସଂପର୍କୀୟ ଗବେଷଣାର ଆଧାର ହୋଇଥିଲା । ଏଇ ଗବେଷଣାତ୍ମକ ଆଧାରର ଫଳାଫଳ ମଧ୍ୟ ଆମର ଜ୍ଞାନ ଓ ବିଜ୍ଞାନ ଜଗତକୁ ସମୃଦ୍ଧକରିବା ସହିତ ସମଗ୍ର ବିଶ୍ୱ ସାହିତ୍ୟକୁ ପ୍ରଭାବିତ କରିଥିଲା । ସେଥିରୁ ଆମର ପାଠ୍ୟକ୍ରମ ଓ ପାଠ୍ୟପୁସ୍ତକ ବା କେମିତି ବାଦ ଯାଆନ୍ତା ! ପ୍ରଫେସର ଦାଶଙ୍କ ଦୂରଦୃଷ୍ଟି ଯୋଗୁଁ ପ୍ରଥମରୁ ପଞ୍ଚମ ଶ୍ରେଣୀର ପାଠ୍ୟପୁସ୍ତକରେ ଯେପରି ଭାବେ ବୈଜ୍ଞାନିକ ମନୋଭାବର ଅନୁଶୀଳନ କରିବାର ସୁଯୋଗ ପ୍ରଫେସର ଦାଶ କରିଥିଲେ, ତାହା ଥିଲା

ଅନନ୍ୟ ଓ ଅସାଧାରଣ । ଏହାର ଏକ ସୂକ୍ଷ୍ମାତିସୂକ୍ଷ୍ମ ନମୁନା ହେଉଛି 'ଆ' ଜହ୍ନମାମୁ ଶରଦ ଶଶୀ' କବିତାଟି ।

ୟୁନିସେଫ୍ ପ୍ରକଳ୍ପ ଅନୁଯାୟୀ ତାଙ୍କ ସମୟରେ ପୁଷ୍ଟି, ସ୍ୱାସ୍ଥ୍ୟ ଶିକ୍ଷା, ପାରିପାର୍ଶ୍ୱିକ ପରିଚ୍ଛନ୍ନତା, ଗୋଷ୍ଠୀ ଶିକ୍ଷା, ଆଦ୍ୟ ଶୈଶବ ଶିକ୍ଷା, ସାର୍ବଜନୀନ ପ୍ରାଥମିକ ଶିକ୍ଷା ସଂପର୍କୀୟ ବିଭିନ୍ନ ପୁସ୍ତକମାନ ରଚନା କରାଯାଇଥିଲା । ଏଥିସହିତ ସେହିସବୁ ପ୍ରକଳ୍ପଗୁଡ଼ିକର ପରିଚାଳନା ନିମନ୍ତେ ଉପଯୁକ୍ତ ମାନବସମ୍ବଳର ବିକାଶ ଓ ପ୍ରଶିକ୍ଷଣ କାର୍ଯ୍ୟକ୍ରମକୁ ଏପରି ଜୀବନ୍ୟାସ ଦିଆଯାଇଥିଲା, ଯାହା ଫଳରେ ସମଗ୍ର ରାଜ୍ୟରେ ଥିବା ପ୍ରକଳ୍ପ ଅନୁଷ୍ଠାନଗୁଡ଼ିକ ଚଳଚଞ୍ଚଳ ହୋଇ ପାରିଥିଲା ।

ଶିଶୁ ସାହିତ୍ୟ କ୍ଷେତ୍ରରେ ପ୍ରଫେସର ଦାଶଙ୍କ ଦିଗ୍‌ଦର୍ଶନ ଶିଶୁ ସାହିତ୍ୟ ପ୍ରସ୍ତୁତି ଓ ପ୍ରକାଶନ ଦୃଷ୍ଟିକୋଣରୁ ବସ୍ତୁନିଷ୍ଠ ଥିଲା । ଏହି ଲେଖକ ଜଣକ ଯେତେବେଳେ ସମ୍ବଲପୁର ସରକାରୀ ପ୍ରଶିକ୍ଷଣ ମହାବିଦ୍ୟାଳୟରେ ଅଧ୍ୟାପକ ଥାଇ ଶିଶୁ ସାହିତ୍ୟ ଉପରେ ଗବେଷଣା କରୁଥିଲେ, ସେ ସମୟରେ ସେ ନିର୍ଦ୍ଦେଶକ ଥାଇ କୌଣସି ସରକାରୀ କାମରେ ସମ୍ବଲପୁର ସରକିଟ୍ ହାଉସରେ ଅବସ୍ଥାନ କରୁଥିଲେ । ମୋତେ ଦେଖିବା ମାତ୍ରେ ନିଜ ଆଡୁ ଶିଶୁ ସାହିତ୍ୟର ଗବେଷଣାକୁ କେଉଁ କେଉଁ ବିଚାରଧାରା ଉପରେ ପର୍ଯ୍ୟବସିତ କରିବା ଆବଶ୍ୟକ, ତାହା ସେ ଆଲୋଚନା କରିଥିଲେ । ତାଙ୍କର ବିଚାରଧାରା କେତେ ମୌଳିକ ଥିଲା, ତାହା ଏହି ଲେଖକଙ୍କୁ ବିସ୍ମିତ କରିଥିଲା । ସେ ଗୋଟିଏ ଦୃଷ୍ଟି କୋଣରୁ ଏଇ ଗବେଷକ ଜଣକୁ ସତର୍କ କରି ଦେଇଥିଲେ ଯେ ***"ଶିଶୁ ସାହିତ୍ୟ ହେଉଛି ସମୃଦ୍ଧ ଓ ବଳିଷ୍ଠ ସାହିତ୍ୟ ଯାହା ଉପରେ ଜଣେ ବ୍ୟକ୍ତିର ପରବର୍ତ୍ତୀ ସାହିତ୍ୟ ନିର୍ଭର କରିଥାଏ । ଏହି ସାହିତ୍ୟର ଗତି ଓ ଧାରା ସମୟାନୁସାରେ ପରିବର୍ତ୍ତିତ ହୋଇଥାଏ ଓ ନୂତନ ଦିଗଦର୍ଶନ ଦେଇଥାଏ । ସେହି ଦୃଷ୍ଟିକୋଣରୁ ଜଣେ ଶିଶୁ ସାହିତ୍ୟର ଶୈକ୍ଷିକ ରୂପରେଖ ଅନୁଧ୍ୟାନ କରୁଥିବା ଗବେଷକ ସମୟର ତାଳ ନେଇ ଅଗ୍ରଗତି କରୁଥିବା ଶିଶୁ ସାହିତ୍ୟକୁ ବସ୍ତୁନିଷ୍ଠ ଭାବେ ଅନୁଶୀଳନ କରିବା ଆବଶ୍ୟକ ।"***

ବାସ୍ ! ଏଇ କେଇ ପଦ କଥା ଶିଶୁ ସାହିତ୍ୟର ଅନାଲୋଚିତ ଦିଗକୁ ଉନ୍ମୁକ୍ତ କରିବା ନିମନ୍ତେ ଅଭିପ୍ରେରଣା ଯୋଗାଇଥିଲା ।

ଏତଦ୍‌ବ୍ୟତୀତ ବେଶୀ ଅଭିପ୍ରେରଣା ଯୋଗାଇଥିଲା ପ୍ରଫେସର ଦାଶଙ୍କ ଅମଳରେ ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦର ଆଦ୍ୟ ଶୈଶବ ଶିକ୍ଷା ବିଭାଗ ତରଫରୁ ପ୍ରକାଶିତ ହୋଇଥିବା ରାଶି ରାଶି ଶିଶୁ ଉପଯୋଗୀ ପ୍ରାକ୍ ଶୈଶବ ଶିଶୁ ଉପଯୋଗୀ ଗଳ୍ପ ଓ ଗୀତ ବହି । ସେହିସବୁ ବହିର ଭାଷା, ଶୈଳୀ ଓ ଉପସ୍ଥାପନା ବିଶେଷଜ୍ଞମାନେ ଶିଶୁ ମନସ୍ତତ୍ତ୍ୱ, ବୟଃକ୍ରମ, ଆଗ୍ରହ, ଅଭିରୁଚି ଆଦି ଦେଖି କରିଥିଲେ । ମୁଦ୍ରଣ ପରିପାଟୀ

ସରସ ଓ ସୁନ୍ଦର ଥିଲା । ସଚିତ୍ର ବହିଗୁଡ଼ିକ ମନଲୋଭା ହୋଇ ପାରିଥିବା ହେତୁ ଶିଶୁମାନଙ୍କ ଦ୍ୱାରା ବିଶେଷ ଆଦୃତ ହୋଇପାରୁଥିଲା । ଅକ୍ଷର ଜାଣି ନ ଥିବା ଶିଶୁମାନଙ୍କୁ କିପରି ଅଙ୍କ କେଇ ଧାଡ଼ିରେ ଗୀତ ଗପ ଆଦି ପଢ଼ି ଶୁଣାଯିବ ସେହି ଆବଶ୍ୟକତା ଅନୁଯାୟୀ ଶିଶୁ ସାହିତ୍ୟ ପୁସ୍ତକ ପ୍ରସ୍ତୁତ କରିବା ନିମନ୍ତେ ଆବଶ୍ୟକ ଧ୍ୟାନ ଦିଆଯାଉଥିଲା ।

## ପ୍ରକଳ୍ପ ମୂଲ୍ୟାୟନରେ ଓଡ଼ିଶା ପ୍ରଥମ

ପ୍ରଫେସର ଦାଶଙ୍କ ବଳିଷ୍ଠ ବୌଦ୍ଧିକ ନେତୃତ୍ୱ, ଦୂରଦୃଷ୍ଟି କାର୍ଯ୍ୟ ନିପୁଣତା ଯୋଗୁଁ ଓଡ଼ିଶାରେ ପରିଚାଳିତ ୟୁନିସେଫ ପ୍ରକଳ୍ପ ସମଗ୍ର ଭାରତ ବର୍ଷରେ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଥିଲା । ପ୍ରକଳ୍ପ ମାଧ୍ୟମରେ ପ୍ରସ୍ତୁତ ପୁସ୍ତକ ଓ ପାଠ୍ୟୋପକରଣ-ତଥା-ଶିକ୍ଷା-ଶିକ୍ଷଣ ସାମଗ୍ରୀ ସର୍ବୋତ୍ତମ ହୋଇଥିବା ହେତୁ ସେଗୁଡ଼ିକ ଦେଶର ବିଭିନ୍ନ ଶିକ୍ଷା ପରିଷଦ ନିମନ୍ତେ ଆଦର୍ଶ ରୂପେ ଗ୍ରହଣୀୟ ହୋଇ ପାରିଥିଲା । ସମଗ୍ର ଭାରତରେ ପ୍ରଫେସର ଦାଶଙ୍କ ପରିଚାଳିତ ପ୍ରକଳ୍ପ ପ୍ରଥମ ସ୍ଥାନ ଅଧିକାର କରିଥିଲା । ସେଥିପାଇଁ ତତ୍‌କାଳୀନ ୟୁନିସେଫର କାର୍ଯ୍ୟକ୍ରମ ନିଷ୍ପାଦକ ଡାନିଏଲ୍ ଜେ. ଓଡ୍ରେଲ୍ ପ୍ରଫେସର ଦାଶ ଏବଂ ତାଙ୍କର ପ୍ରକଳ୍ପ ସହଯୋଗୀମାନଙ୍କୁ ଉଚ୍ଚକୋଟୀର ପ୍ରଶଂସାପତ୍ର ଦେବା ସହିତ ଓଡ଼ିଶା ସରକାରଙ୍କୁ ମଧ୍ୟ ଧନ୍ୟବାଦ ଜଣାଇଥିଲେ ।

## ପ୍ରକଳ୍ପ ପରିଚାଳନାରେ ପରିସଂଖ୍ୟାନ ପଦ୍ଧତି

ଯେ କୌଣସି ଯୋଜନାର ପ୍ରସ୍ତୁତି ଓ ପରିଚାଳନାରେ ପରିସଂଖ୍ୟାନର ଯଥେଷ୍ଟ ପ୍ରୟୋଗାତ୍ମକ ସ୍ଥାନ ଅଛି । କାରଣ ପରିସଂଖ୍ୟାନ ଭିତ୍ତିକ ବିଭିନ୍ନ ତଥ୍ୟ ଯୋଜନା ପ୍ରସ୍ତୁତରେ ସହାୟକ ହୋଇଥାଏ । ମାତ୍ର ସେ ଧାରଣା ଯଦି ଯୋଜନା ପ୍ରସ୍ତୁତକାରୀଙ୍କ ନ ଥାଏ, ତେବେ ଯୋଜନାର ସୁଦୂର ପ୍ରସାରୀ ଲକ୍ଷ୍ୟ ହାସଲ କରାଯିବା ସମ୍ଭବପର ହୁଏ ନାହିଁ ।

୧୯୮୧ ମସିହାର ୟୁନିସେଫ ପ୍ରକଳ୍ପର ଖର୍ଚ୍ଚ ବିବରଣୀ ଡିସେମ୍ବର ମାସ ଶେଷରେ ଦେବାକୁ ହୋଇଥାଏ । ସେ ବର୍ଷର ସମସ୍ତ ହିସାବ ତର୍ଜମା କରି ପ୍ରଫେସର ଦାଶ ଅନୁଭବ କରିଥିଲେଯେ ଅନ୍ୟ ବର୍ଷ ଅପେକ୍ଷା ସେ ବର୍ଷର ଖର୍ଚ୍ଚ କମ୍ ହୋଇଯାଇଛି । କମ୍ ଖର୍ଚ୍ଚ ହେବା କଥା ଯଦି ୟୁନିସେଫ୍‌କୁ ଜଣାଯାଏ, ତେବେ ଓଡ଼ିଶାର ସ୍ଥାନ ସର୍ବଭାରତୀୟ ସ୍ତରରେ ପ୍ରଭାବିତ ହେବ । ସେଥିପାଇଁ ସେ ବର୍ଷର ପ୍ରକଳ୍ପଗୁଡ଼ିକର ବଜେଟ ଅଟକଳ ହିସାବ ରକ୍ଷକ ଅର୍ଜୁନ ଚରଣ ପଣ୍ଡାଙ୍କ ସହାୟତାରେ ବାହାର କରାଗଲା । ସମଗ୍ର ବଜେଟ ଅଟକଳ ମଧ୍ୟରୁ ୨୫ ଭାଗ ବାଦ ଦିଆଗଲା । ବାକି ଯାହା ରହିଲା ତାହା ଉପରେ ଶ୍ରୀଯୁକ୍ତ ପଣ୍ଡା ଖର୍ଚ୍ଚର ଶତାଂଶ ବାହାର କଲେ । ଏହା

ଫଳରେ ସେ ବର୍ଷ ଓଡ଼ିଶାରେ କାର୍ଯ୍ୟକାରୀ ହେଉଥିବା ପ୍ରକଳ୍ପର ଖର୍ଚ୍ଚ ପୂର୍ବବର୍ଷ ଭଳି ଶୀର୍ଷ ସ୍ଥାନରେ ରହିଲା । ପ୍ରଫେସର ଦାଶଙ୍କ ଦ୍ୱାରା ଅନୁସୃତ ହୋଇଥିବା ଏପରି କାର୍ଯ୍ୟ ପରିସଂଖ୍ୟାନ ପଦ୍ଧତି ଅନୁସାରେ କରାଯାଇଥିଲା । ପରିସଂଖ୍ୟାନର ନିୟମ ଅନୁସାରେ ଶତକଡ଼ା ୨୫ ଭାଗ ହ୍ରାସ ଭିତ୍ତିକ ଖର୍ଚ୍ଚ (Reducible Expenditure) ବଜେଟ ଅଟକଳରୁ ବାଦ ଦିଆଯାଇ ଖର୍ଚ୍ଚର ବିବରଣୀ ପ୍ରଦାନ କରାଯାଇଥିବା ହେତୁ ସେ ବର୍ଷ ଓଡ଼ିଶାର ସ୍ଥିତି ସମଗ୍ର ଭାରତବର୍ଷରେ ପୂର୍ବବତ୍ ବଜାୟ ରହିଥିଲା । ଏହା ଫଳରେ ଆମ ରାଜ୍ୟର ପ୍ରକଳ୍ପ ପୂର୍ବ ବର୍ଷଗୁଡ଼ିକ ଭଳି ଆଶାତୀତ ଅର୍ଥ ପ୍ରକଳ୍ପ ପରିଚାଳନା ନିମନ୍ତେ ପାଇଥିଲା । ଅନେକ ସମୟରେ ଦେଖାଯାଏ ଯେ ପରିସଂଖ୍ୟାନଗତ ଜ୍ଞାନ ଓ ପ୍ରଶାସନିକ ଦୂରଦୃଷ୍ଟିତାର ଅଭାବରେ ଅନେକ ଯୋଜନାର ସଫଳ ରୂପାୟନ ହୋଇ ନ ଥାଏ ।

**ଜନଜାତି ଶିକ୍ଷା ଓ ଗବେଷଣା କାର୍ଯ୍ୟକ୍ରମ**

ସଂପ୍ରତି ରାଜ୍ୟରେ ଜନଜାତି ଶିକ୍ଷା ଓ ଗବେଷଣା ଉପରେ ବିଶେଷ ଗୁରୁତ୍ୱ ରାଜ୍ୟ ସରକାର ଆରୋପ କରୁଛନ୍ତି । ସେଥିପାଇଁ ଅନୁସୂଚିତ ଜାତି ଓ ଅନୁସୂଚିତ ଜନଜାତି ଗବେଷଣା ଓ ପ୍ରଶିକ୍ଷଣ ପ୍ରତିଷ୍ଠାନ ତଥା ନିର୍ଦ୍ଦେଶାଳୟ ସରକାର ପ୍ରତିଷ୍ଠା କରିଛନ୍ତି । ଏହି ପ୍ରତିଷ୍ଠାନଦ୍ୱାରା ଜନଜାତି ସଂପର୍କୀୟ ଗବେଷଣା ଓ ପ୍ରଶିକ୍ଷଣ ଉପରେ ଗୁରୁତ୍ୱାରୋପ କରାଯାଇଅଛି ।

ମାତ୍ର ଏହିପରି ଗବେଷଣାର ଆବଶ୍ୟକତା ଅଶୀ ଦଶକରେ ପ୍ରଫେସର ଶରତଚନ୍ଦ୍ର ଦାଶ ଅନୁଭବ କରିଥିଲେ । ସେଥିପାଇଁ ସେ ୧୯୮୦ ମସିହାରେ ତାଙ୍କ ଦ୍ୱାରା ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ଅନୁଷ୍ଠାନ ତତ୍ତ୍ୱାବଧାନରେ ଖୋଲା ଯାଇଥିବା ଏମ୍.ଏ. ଶିକ୍ଷା ବିଭାଗ ଦ୍ୱାରା ଉଦୀୟମାନ ଛାତ୍ର ଓ ଅଧ୍ୟାପକମାନଙ୍କ ସହାୟତାରେ ଜନଜାତି ଶିକ୍ଷା ଉପରେ ଗବେଷଣାତ୍ମକ ନିବନ୍ଧ ପ୍ରସ୍ତୁତ କରିବାର ସୁଯୋଗ ସୃଷ୍ଟି କରିଥିଲେ । ସେଥିପାଇଁ ସେ ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦ ମଧ୍ୟରେ ଜନଜାତି ଶିକ୍ଷା ଗବେଷଣା ଓ ସମନ୍ୱୟ ନାମକ ବିଭାଗଟିଏ ମଧ୍ୟ ଖୋଲିଥିଲେ ।

ଏହି ବିଭାଗ ଆନୁକୂଲ୍ୟରେ ପ୍ରଥମ ଶ୍ରେଣୀରୁ ତୃତୀୟ ଶ୍ରେଣୀ ପର୍ଯ୍ୟନ୍ତ ପାଞ୍ଚଟି ଆଦିବାସୀ ଭାଷାରେ ଦ୍ୱିଭାଷିକ ପାଠ୍ୟପୁସ୍ତକ ସର୍ବ ପ୍ରଥମେ ପ୍ରକାଶ କରାଯାଇଥିଲା । ସେଥପାଇଁ ପ୍ରଫେସର ଦାଶ ବ୍ୟକ୍ତିଗତ ଆଗ୍ରହ ଦେଖାଇଥିଲେ । ଏହି ସବୁ ପାଠ୍ୟପୁସ୍ତକ କାର୍ଯ୍ୟକାରୀ ହେଉଥିବା ତତ୍କାଳୀନ ପ୍ରକଳ୍ପ ବିଦ୍ୟାଳୟଗୁଡ଼ିକର ଶିକ୍ଷକ ଓ ଛାତ୍ରଛାତ୍ରୀମାନଙ୍କ ମଧ୍ୟରେ ବିଶେଷ ଆଦୃତ ହେଉଥିଲା ।

ସଂପ୍ରତି ସର୍ବଶିକ୍ଷା ଅଭିଯାନରେ କାର୍ଯ୍ୟକାରୀ ହେଉଥିବା ବହୁଭାଷୀ ଶିକ୍ଷା (Multi lingual Education)ର ପ୍ରଥମ ମୂଳଦୁଆ ଦୀର୍ଘ ଦୁଇ ଦଶନ୍ଧି ପୂର୍ବରୁ ଓଡ଼ିଶାରେ ପ୍ରଫେସର ଦାଶଙ୍କ ଯୋଗୁଁ ରାଜ୍ୟ ଶିକ୍ଷା ଓ ଗବେଷଣା ପରିଷଦରେ ପଡ଼ିଥିଲା । ଏହି ମୂଳଦୁଆ ଉପରେ ଆଜିର ବହୁଭାଷୀ ଶିକ୍ଷା କାର୍ଯ୍ୟକ୍ରମ ପର୍ଯ୍ୟବସିତ ।

**ପରୀକ୍ଷା ସଂସ୍କାର ଏବଂ ମାର୍ଗ ଦର୍ଶନ ବିଭାଗ**

ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦ ଅଧୀନରେ ଥିବା ପରୀକ୍ଷା ସଂସ୍କାର ବିଭାଗ ଆନୁକୂଲ୍ୟରେ ଶିକ୍ଷାର୍ଥୀର ମୂଲ୍ୟାୟନ ନିମନ୍ତେ ବିଭିନ୍ନ ପ୍ରକାର ପରୀକ୍ଷା ସଂସ୍କାର କାର୍ଯ୍ୟକ୍ରମ ଓ ମୂଲ୍ୟବାନ ନିବନ୍ଧମାନ ପ୍ରକାଶ କରାଯାଇଥିଲା । ଏତଦ୍‌ବ୍ୟତୀତ ଆବଶ୍ୟକସ୍ଥଳେ ଶିକ୍ଷାର୍ଥୀ ଓ ଶିକ୍ଷକମାନଙ୍କୁ ବିଭିନ୍ନ ଶୈକ୍ଷିକ ବିଷୟରେ ମାର୍ଗ ଦର୍ଶନ ମଧ୍ୟ କରାଯାଇଥିଲା । ଏହିସବୁ ମାର୍ଗ ଦର୍ଶନ ସେମାନଙ୍କର ବ୍ୟକ୍ତିଗତ, ଶୈକ୍ଷିକ ଏବଂ ବୃତ୍ତିଗତ ବିଷୟଭିତ୍ତିକ ଥିଲା ।

ଏହି ବିଭାଗ କାର୍ଯ୍ୟକ୍ରମକୁ ମୂଲ୍ୟାୟନ କରିବା ସମୟରେ ପ୍ରଫେସର ଦାଶ ଶିକ୍ଷକମାନେ କିପରି ନିରନ୍ତର ଓ ସଂବ୍ୟାପକ ମୂଲ୍ୟାୟନ (Continuous and Comprehensive Evaluation) କରିବାକୁ ସମର୍ଥ ହେବେ ସେଥିପାଇଁ ବିଭାଗର କର୍ମକର୍ତ୍ତାମାନଙ୍କୁ ଦୃଷ୍ଟିଦେବାକୁ ପରାମର୍ଶ ଦେଇଥିଲେ । ଏତଦ୍‌ବ୍ୟତୀତ ମାର୍ଗ ଦର୍ଶନ ବିଭାଗ ଆନୁକୂଲ୍ୟରେ ବୃତ୍ତିଗତ ପ୍ରଦର୍ଶନୀ, ବୃତ୍ତିଗତ କ୍ଷେତ୍ର ପ୍ରଦର୍ଶନ, ବିଦ୍ୟାଳୟରେ ପିଲାମାନଙ୍କର କାରିୟର କନ୍‌ଫେରେନ୍‌ସମାନ ମଧ୍ୟ ଅନୁଷ୍ଠିତ କରାଯାଇଥିଲା । ବିଦ୍ୟାଳୟ ସ୍ତରର ଶିକ୍ଷକମାନଙ୍କୁ ମଧ୍ୟ କାରିୟର ସଂପର୍କୀୟ ପ୍ରଶିକ୍ଷଣ ଦିଆଯାଇ ସେହିସବୁ ବିଦ୍ୟାଳୟରେ ମାର୍ଗଦର୍ଶନ ନିମନ୍ତେ ବିଭାଗମାନ ଖୋଲା ଯାଇଥିଲା ।

ବିଦ୍ୟାଳୟସ୍ତରୀୟ ଶିକ୍ଷାର୍ଥୀ ମାର୍ଗଦର୍ଶନ କାର୍ଯ୍ୟକ୍ରମ ଅପରିହାର୍ଯ୍ୟ ହୋଇଥିଲେ ମଧ୍ୟ ସଂପ୍ରତି ରାଜ୍ୟ ଶିକ୍ଷା ଓ ଗବେଷଣା ପରିଷଦରେ ଥିବା ଏହି ବିଭାଗଟି ପୂର୍ବବତ୍ କାର୍ଯ୍ୟକ୍ଷମ ନାହିଁ ।

**ଓଡ଼ିଆ ବର୍ଣ୍ଣାଶୁଦ୍ଧି ପାଇଁ ସ୍ୱତନ୍ତ୍ର ସଚେତନତା କାର୍ଯ୍ୟକ୍ରମ**

ଯେ କୌଣସି ଭାଷାର ଶୁଦ୍ଧ ପ୍ରୟୋଗ ଓ ଲିଖନ ବର୍ଣ୍ଣାଶୁଦ୍ଧି ଉପରେ ବିଶେଷ ନିର୍ଭର କରିଥାଏ । ମାତ୍ର ଏବେ ମଧ୍ୟ ଆମର ଭାଷା ଶାସ୍ତ୍ରୀୟମାନ୍ୟତା ହାସଲ କରିଥିଲେ ମଧ୍ୟ ଓଡ଼ିଆ ଭାଷାର ଅଶୁଦ୍ଧ ପ୍ରୟୋଗ ଓ ବନାନଗତ ତ୍ରୁଟି କେବଳ ବିଭିନ୍ନ ଅନୁଷ୍ଠାନର ଚାରିକାନ୍ଥ ମଧ୍ୟରେ ସୀମିତ ନୁହେଁ, ବରଂ ସାଧାରଣଭାବେ ବିଭିନ୍ନ ବିଜ୍ଞାପନଗୁଡ଼ିକରେ ଦେଖିବାକୁ ମିଳେ ।

ଅଶୀ ଦଶକର ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦର କାର୍ଯ୍ୟନିର୍ବାହୀ ଅଧିକାରୀମାନଙ୍କୁ ପ୍ରଫେସର ଦାଶ କହିଥିଲେ ଯେ ସେମାନେ ପରିଦର୍ଶନରେ ଯାଉଥିବା ବିଭିନ୍ନ ଅନୁଷ୍ଠାନରେ ଲିଖିତ ଆପ୍ତବାଣୀ ଓ ଅନ୍ୟାନ୍ୟ କାଗଜାତ ଲକ୍ଷ୍ୟ କରିବେ । ଯଦି କୌଣସି ବନାନଗତ ଭୁଲ ଦୃଷ୍ଟିକୁ ଆସେ ତେବେ ସେଗୁଡ଼ିକର ଦୂରୀକରଣର ବ୍ୟବସ୍ଥା କରିବେ । ପରବର୍ତ୍ତୀ ସମୟରେ ପରିଦର୍ଶନ କଲାବେଳେ ଯେପରି ସେ ପ୍ରକାରର ଭୁଲ ପୁନଃ ନଜରକୁ ନ ଆସେ, ସେଥିପାଇଁ ଆବଶ୍ୟକ ଅନୁଧ୍ୟାନ ଓ କାର୍ଯ୍ୟପନ୍ଥା ଗ୍ରହଣ କରିବେ ।

ଏପରି କାର୍ଯ୍ୟ କେବଳ କେତେକ ଅନୁଷ୍ଠାନ ମଧ୍ୟରେ ସୀମିତ ରଖିବାକୁ ସେ ପରାମର୍ଶ ଦେଇଥିଲେ । ଏଇ ଅଫିସରମାନେ ବାଟଘାଟରେ ଗଲାବେଳେ ଯେଉଁ ବିଜ୍ଞାପନ ଆଦିରେ ବନାନଗତ ଭୁଲ ଦେଖିବେ ସେ ସବୁ ଲିପିବଦ୍ଧ କରି ଆଣିବେ । ସେହି ସବୁ ଅନୁଷ୍ଠାନକୁ ଏକ ପୋଷ୍ଟକାର୍ଡ଼ ମଧ୍ୟରେ ଠିକ୍ ବନାନଟି ଦର୍ଶାଇ ଆବଶ୍ୟକ ସଂଶୋଧନ କରିବା ନିମନ୍ତେ ପରାମର୍ଶ ଦେବେ । ଏହିସବୁ କାର୍ଯ୍ୟକୁ ସଂଯୋଜନା କରିବା ନିମନ୍ତେ ସେ ତତ୍କାଳୀନ ଓଡ଼ିଆ ଭାଷା ଓ ସାହିତ୍ୟର ଅଧ୍ୟାପକ ଅମରେନ୍ଦ୍ର ପ୍ରସାଦ ଗିରିଙ୍କୁ ଦାୟିତ୍ୱ ଦେଇଥିଲେ । ଏହି ସଚେତନତା କାର୍ଯ୍ୟକ୍ରମ କେତେଦୂର ସଫଳ ହେଉଛି ତାହା ନିଜେ ନିର୍ଦ୍ଦେଶକ ମଧ୍ୟ ମଝିରେ ମଝିରେ ଅନୁଧ୍ୟାନ କରୁଥିଲେ ।

**ସର୍ବଧର୍ମ ସମନ୍ୱୟଭିତ୍ତିକ ଶୈକ୍ଷିକ କାର୍ଯ୍ୟକ୍ରମ**

ଭାରତ ବର୍ଷର ଧାର୍ମିକ ବିବିଧତା ହେଉଛି ଏହି ମହାନ ଦେଶର ଗର୍ବ ଓ ଗୌରବ । ସେଥିପାଇଁ ଭାରତ ସରକାରଙ୍କ ଦ୍ୱାରା ଗଠିତ ହୋଇଥିବା ବିଶ୍ୱବିଦ୍ୟାଳୟ କମିଶନ, ୧୯୪୮ ତାଙ୍କର ସୁପାରିଶମାନଙ୍କ ମଧ୍ୟରେ ଶିକ୍ଷାର ଏକାଧିକ ସ୍ତରରେ ବିଭିନ୍ନ ଧର୍ମର ସାରତତ୍ତ୍ୱକୁ ତୁଳନାତ୍ମକଭାବେ ପାଠ୍ୟକ୍ରମରେ ସ୍ଥାନ ଦେବାକୁ ଗୁରୁତ୍ୱ ଦେଇଛନ୍ତି । ଏହା ଫଳରେ ଆମର ଜାତୀୟ ଏକତା ରକ୍ଷା ହେବା ସହିତ ଆମେ ଏକ ଓ ଅଭିନ୍ନ ଜାତି ବୋଲି ସମଗ୍ର ବିଶ୍ୱରେ ନିଜର ପରିଚୟ ରଖିପାରିବା ବୋଲି କମିଶନ ଆଶାପୋଷଣ କରିଛନ୍ତି ।

ମାତ୍ର ଅନେକ ସମୟରେ ଧର୍ମାନ୍ଧତା ଜାତୀୟ ଐକ୍ୟ ପ୍ରତି ବିପଦ ସୃଷ୍ଟି କରିଥିଲେ ମଧ୍ୟ ସଂପ୍ରତି ଆମେ 'ଏକ ଓ ଅଭିନ୍ନ' ଏବଂ ସମଗ୍ର ବିଶ୍ୱରେ 'ଭାରତୀୟ' ବୋଲି ଗୌରବ ଅନୁଭବ କରୁଅଛୁ ।

ପ୍ରଫେସର ଦାଶ ବାଲ୍ୟକାଳରୁ ନିଜ ପୂର୍ବପୁରୁଷଙ୍କ ଐତିହ୍ୟ ଓ ସଂସ୍କୃତି ଦ୍ୱାରା ପ୍ରଭାବିତ ହୋଇଥିଲେ । ତେଣୁ ସେ ନିଜ କାର୍ଯ୍ୟଶୈଳୀରେ କେବେହେଲେ, ଜାତିଗତ,

ବର୍ଣ୍ଣଗତ କିମ୍ବା ଧର୍ମଗତ ବିଭେଦତାକୁ ସ୍ଥାନ ଦେଇ ନ ଥିଲେ । ବିଭିନ୍ନ ସମୟରେ ସେ ସହକର୍ମୀଗଣଙ୍କ ମଧ୍ୟରେ ଆବୃତ୍ତି କରୁଥିବା ବିଭିନ୍ନ ପଦ୍ୟ ଓ ଶ୍ଳୋକ ଦ୍ୱାରା ଭାରତୀୟ ମହାନ୍ ଚିନ୍ତାଧାରର ନିର୍ଯ୍ୟାସ ପ୍ରତିଫଳିତ ହେଉଥିଲା । ସେଥିପାଇଁ ସେ ରାଜ୍ୟଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦ ଆନୁକୂଲ୍ୟରେ ସର୍ବଧର୍ମ ସମନ୍ୱୟ ବିଭାଗ ଆନୁକୂଲ୍ୟରେ ସର୍ବଧର୍ମ ସମନ୍ୱୟ ବିଷୟବସ୍ତୁ ଥିବା ବହୁ କଥା କାହାଣୀ ଥିବା ପୁସ୍ତକ ପ୍ରକାଶିତ କରିଥିଲେ । ଏତଦ୍‌ବ୍ୟତୀତ ବିଭିନ୍ନ ସମୟରେ ପରିଷଦର ଅଣ ଆନୁଷ୍ଠାନିକ ଶିକ୍ଷା ବିଭାଗ ମାଧ୍ୟମରେ ଜନସାଧାରଣଙ୍କ ମଧ୍ୟରେ ସର୍ବଧର୍ମ ସମନ୍ୱୟ ଭିତ୍ତିକ କାର୍ଯ୍ୟକ୍ରମମାନ ମଧ୍ୟ ଅନୁଷ୍ଠିତ ହେଉଥିଲା ।

**ଜନସଂଖ୍ୟା ଶିକ୍ଷା ପ୍ରକଳ୍ପ ପରିଚାଳନା**

ୟୁଏନ୍ ଏଫ୍ ପିଏ ଆନୁକୂଲ୍ୟରେ ସମଗ୍ର ବିଶ୍ୱରେ ସତୁରି ଦଶକରୁ ଜନସଂଖ୍ୟା ପ୍ରକଳ୍ପ କାର୍ଯ୍ୟକାରୀ ହୋଇ ଆସୁଅଛି । ଆମ ଦେଶର ବିଦ୍ୟାଳୟ ସ୍ତରରେ ଏହି ପ୍ରକଳ୍ପ ୧୯୮୦ ମସିହାଠାରୁ ରାଷ୍ଟ୍ରୀୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦ, ନୂଆଦିଲ୍ଲୀ ଆନୁକୂଲ୍ୟରେ ଭାରତର ବିଭିନ୍ନ ରାଜ୍ୟ ଓ କେନ୍ଦ୍ର ଶାସିତ ଅଞ୍ଚଳରେ କାର୍ଯ୍ୟକାରୀ କରାଯାଇଅଛି । ଆମ ରାଜ୍ୟରେ ଏହି ପ୍ରକଳ୍ପ ୧୯୮୧-୮୨ ମସିହାରୁ କାର୍ଯ୍ୟକାରୀ ହେଉଅଛି ।

ସମଗ୍ର ଦେଶରେ ବିଦ୍ୟାଳୟ ସ୍ତରରେ କାର୍ଯ୍ୟକାରୀ ହେଉଥିବା ଜନସଂଖ୍ୟା ଶିକ୍ଷା ପ୍ରକଳ୍ପର ବୈଷୟିକ ନିର୍ଦ୍ଦେଶନା ଦେଇଥାନ୍ତି ରାଷ୍ଟ୍ରୀୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦ, ନୂଆଦିଲ୍ଲୀ । ଏହି ପ୍ରକଳ୍ପ ୧୯୮୦ ମସିହାରୁ ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦ ଆନୁକୂଲ୍ୟରେ କାର୍ଯ୍ୟକାରୀ ହୋଇ ଆସୁଅଛି । ଏହି ପ୍ରକଳ୍ପର ନିର୍ଦ୍ଦେଶକ ଭାବେ ପ୍ରଫେସର ଦାଶ ଜନସଂଖ୍ୟା ସଂପର୍କୀୟ ତତ୍‌କାଳୀନ ପ୍ରଚଳିତ ଥିବା ମୌଳିକ ଉପାଦାନ ସଂପର୍କରେ ଶିକ୍ଷାର୍ଥୀ ଓ ଜନସାଧାରଣ ଉପଯୋଗୀ ବହୁ ସାହାଯ୍ୟକାରୀ ପୁସ୍ତକ ପ୍ରକାଶ କରାଇଥିଲେ । ସେହିସବୁ ବହି ଜନସଂଖ୍ୟା ଶିକ୍ଷାର ପାଞ୍ଚଟି ମୌଳିକ ଉପାଦାନକୁ ନେଇ ରଚିତ ହୋଇଥିଲା । ସେହିସବୁ ମୌଳିକ ଉପାଦାନଗୁଡ଼ିକ ହେଲା :

- ପରିବାରର ଆକାର ଓ ପରିବାରର କଲ୍ୟାଣ
- ଜନସଂଖ୍ୟା ସଂପର୍କୀୟ ବିଶ୍ୱାସ ଓ ମୂଲ୍ୟବୋଧ
- ବିବାହର ଯଥାର୍ଥ ବୟସ
- ଦାୟିତ୍ୱସମ୍ପନ୍ନ ପିତୃମାତୃତ୍ୱ

- ନାରୀର ପଦମର୍ଯ୍ୟାଦା

ଏତଦ୍‌ବ୍ୟତୀତ ଜନସଂଖ୍ୟା ସଂପର୍କୀୟ ବିଭିନ୍ନ ପରିସଂଖ୍ୟାନଭିତ୍ତିକ ଶିକ୍ଷଣ ସାମଗ୍ରୀ ସହିତ ଶିକ୍ଷକ ସହାୟକ ପୁସ୍ତକ, ଶିକ୍ଷକ ପ୍ରଶିକ୍ଷଣ ନିମନ୍ତେ ଆବଶ୍ୟକ ପେଟିକା (Module) ଆଦି ମଧ୍ୟ ପ୍ରକାଶିତ କରାଯାଇଥିଲା । ସେହି ସମୟରେ ଜନସଂଖ୍ୟା ଶିକ୍ଷାର ପରିସର ବ୍ୟାପ୍ତଥିବା ବିଷୟବସ୍ତୁଗୁଡ଼ିକ ହେଲା :

- ପାଠ୍ୟକ୍ରମ ଏବଂ ପାଠ୍ୟକ୍ରମ ଭିତ୍ତିକ ଶିକ୍ଷଣ ସାମଗ୍ରୀ ପ୍ରସ୍ତୁତି
- ଶିକ୍ଷକ ପ୍ରଶିକ୍ଷଣ
- ସହ-ପାଠ୍ୟକ୍ରମ ଭିତ୍ତିକ କାର୍ଯ୍ୟାବଳୀ
- ଗବେଷଣା ଓ ମୂଲ୍ୟାୟନ
- ପରିଚାଳନାଗତ ତଦାରଖ
- ପ୍ରକାଶନ ଓ ବିତରଣ

ଏହିସବୁ କାର୍ଯ୍ୟ ନିର୍ଦ୍ଦେଶାଳୟ ତରଫରୁ ଅତି ସୁସଂହତ ଭାବେ କାର୍ଯ୍ୟକାରୀ କରାଯାଉଥିଲା ।

**ଜନସଂଖ୍ୟା ଶିକ୍ଷା ସଂପର୍କୀୟ ଗବେଷଣା**

ପ୍ରଫେସର ଦାଶ ଜନସଂଖ୍ୟା ଶିକ୍ଷାର ପ୍ରକଳ୍ପ ନିର୍ଦ୍ଦେଶକ ଥିଲାବେଳେ ଜନସଂଖ୍ୟାର ବିଭିନ୍ନ ବିଭାବକୁ ନେଇ ଅନେକ ଗବେଷଣାକୁ ନିଜର ଦିଗ୍‌ଦର୍ଶନ ଫଳରେ ଏପରି ପରିଚାଳନା କରିଥିଲେ ଯେ ସେହିସବୁ ଗବେଷଣାଲବ୍ଧ ତଥ୍ୟଭିତ୍ତିକ ଜ୍ଞାନ ପ୍ରକଳ୍ପ ପରିଚାଳନାରେ ବିଶେଷ ସହାୟତା କରିଥିଲା । ଏହା ପ୍ରକଳ୍ପ ଯୋଜନା ପ୍ରସ୍ତୁତ କରୁଥିବା ବ୍ୟକ୍ତିବିଶେଷ, ପ୍ରକଳ୍ପ ପରିଚାଳକ ଓ ଗବେଷକମାନଙ୍କୁ ମଧ୍ୟ ତଥ୍ୟଭିତ୍ତିକ ଦିଗ୍‌ଦର୍ଶନ ଦେଉଥିଲା ।

ସେ ସମୟରେ କରାଯାଇଥିବା ପ୍ରକଳ୍ପ ଭିତ୍ତିକ ଗବେଷଣା ଜନସଂଖ୍ୟା ଶିକ୍ଷାର ଯେଉଁସବୁ ବିଷୟବସ୍ତୁ ଆଧାରିତ ହେଉଥିଲା; ସେଗୁଡ଼ିକ ହେଲା, ବିଦ୍ୟାଳୟ ପାଠ୍ୟକ୍ରମରେ ଜନସଂଖ୍ୟା ବିଷୟବସ୍ତୁର ସଂଯୋଜନ, ପାଠ୍ୟକ୍ରମ ଓ ସହପାଠ୍ୟକ୍ରମ ମାଧ୍ୟମରେ ଜନସଂଖ୍ୟା ବିଷୟବସ୍ତୁର ଶିକ୍ଷାଦାନ, ଜନସଂଖ୍ୟା ବିଶ୍ୱାସ ଓ ମୂଲ୍ୟବୋଧ ସଂପର୍କରେ ଶିକ୍ଷକ ଶିକ୍ଷୟିତ୍ରୀଙ୍କ ମନୋଭାବ, ବିଦ୍ୟାଳୟରେ କୈଶୋର ଶିକ୍ଷା ପ୍ରଚଳନ ସଂପର୍କରେ ଶିକ୍ଷକମାନଙ୍କର ମନୋଭାବ, ଶିକ୍ଷକ ପ୍ରଶିକ୍ଷଣର ବିଭିନ୍ନ ପ୍ରଣାଳୀ ଓ ସଫଳତା ସଂପର୍କରେ ଅନୁଧ୍ୟାନ, ପୋଷ୍ୟ ଗ୍ରାମ କାର୍ଯ୍ୟକୁ ମୂଲ୍ୟାୟନ, ଶିକ୍ଷାରେ ଜନସଂଖ୍ୟା ପ୍ରକଳ୍ପର ପ୍ରଭାବ ଇତ୍ୟାଦି ଅନେକ ବିଷୟବସ୍ତୁ ।

ସେ ସମୟରେ ଜନସଂଖ୍ୟା ଶିକ୍ଷାର ବହୁବିଧ ଗବେଷଣା କ୍ଷେତ୍ରରେ ଯେଉଁ ଗବେଷକମାନେ ସେମାନଙ୍କର ଗବେଷଣାରେ ଜନସଂଖ୍ୟା ଶିକ୍ଷାକୁ ସମୃଦ୍ଧ କରିଥିଲେ, ସେମାନେ ହେଲେ ଅଧ୍ୟାପକ ସର୍ବେଶ୍ୱର ସାମଲ, ଅଧ୍ୟାପକ ଭେଦୁଲା ଭୀମଶଙ୍କର ଶାସ୍ତ୍ରୀ, ଅଧ୍ୟାପକ ଗୌରୀଶଙ୍କର ମହାପାତ୍ର, ଅଧ୍ୟାପକ ମୀନକେତନ ପାଠୀ, ଅଧ୍ୟାପକ କାର୍ତ୍ତିକ ଚରଣ ସେଠୀ, ଅଧ୍ୟାପକ କାର୍ତ୍ତିକ ବେହେରା, ଅଧ୍ୟାପକ ନିତ୍ୟାନନ୍ଦ ପ୍ରଧାନ, ଅଧ୍ୟାପକ ହୃଷୀକେଶ ସେନାପତି, ଅଧ୍ୟାପିକା ବୈଜୟନ୍ତୀମାଳା ଶତପଥୀ, ଅଧ୍ୟାପକ ଗୌରୀଶଙ୍କର ମହାପାତ୍ର, ଅଧ୍ୟାପକ ସୁରେନ୍ଦ୍ର ମୋହନ ପାଣି, ଅଧ୍ୟାପକ ସୁରେଶ ଚନ୍ଦ୍ର ସାହୁ ପ୍ରମୁଖ ବ୍ୟକ୍ତି ବିଶେଷ । ଏତଦ୍‌ବ୍ୟତୀତ ବିଭିନ୍ନ ଶିକ୍ଷକ ପ୍ରଶିକ୍ଷକ ଅନୁଷ୍ଠାନର ଛାତ୍ରଛାତ୍ରୀଗଣ ମଧ୍ୟ ପ୍ରକଳ୍ପ ଅଧୀନରେ ଜନସଂଖ୍ୟା ସଂପର୍କୀୟ ଗବେଷଣାମାନ ମଧ୍ୟ କରୁଥିଲେ । ସେଥିପାଇଁ ଜନସଂଖ୍ୟା ଶିକ୍ଷା ବିଭାଗ ତରଫରୁ ସେମାନଙ୍କୁ ଆର୍ଥିକ ସହାୟତା ଦିଆଯାଇଥିଲା ।

**ବ୍ୟାଙ୍କକ୍‌ସ୍ଥିତ ଆନ୍ତର୍ଜାତିକ ସମ୍ମିଳନୀରେ ପ୍ରଫେସର ଦାଶ**

ଜନସଂଖ୍ୟା ଶିକ୍ଷା କ୍ଷେତ୍ରରେ ଉଲ୍ଲେଖନୀୟ ଅବଦାନ ଓ ଅନୁଭୂତି ଥିବା ହେତୁ ୧୯୮୫ ମସିହାରେ ବ୍ୟାଙ୍କକ୍‌ଠାରେ ହୋଇଥିବା ଜନସଂଖ୍ୟା ଶିକ୍ଷା ସଂପର୍କୀୟ ଆନ୍ତର୍ଜାତିକ ସମ୍ମିଳନୀରେ ପ୍ରଫେସର ଦାଶ ଭାରତ ସରକାରଙ୍କ ଦ୍ୱାରା ମନୋନୀତ ହୋଇ ଯୋଗଦାନ କରିଥିଲେ । ଜନସଂଖ୍ୟା ଶିକ୍ଷା ସଂପର୍କରେ ତାଙ୍କ ପ୍ରସ୍ତୁତ ସ୍ୱତନ୍ତ୍ର ଉପସ୍ଥାପନ ଅନ୍ୟ ଦେଶର ପ୍ରତିନିଧିମାନଙ୍କ ଦ୍ୱାରା ଆଦୃତ ହୋଇଥିଲା । ଏହା ଫଳରେ ସେ ରାଜ୍ୟ ଓ ଦେଶ ପାଇଁ ଗୌରବ ଆଣିଥିଲେ ।

**ପ୍ରଫେସର ଦାଶଙ୍କ ନିଜସ୍ୱ ଗବେଷଣା**

ପ୍ରଫେସର ଦାଶ ୧୯୮୧ ମସିହାରେ ରାଜ୍ୟରେ କର୍ମଭିତ୍ତିକ ଶିକ୍ଷାର ପ୍ରଚଳନ ନିମନ୍ତେ ଏକ ପଥ ପ୍ରଦର୍ଶକ ଅଧ୍ୟୟନ (Pilot Study) କରିଥିଲେ । ସେହି ଅଧ୍ୟୟନଟିର ବିଷୟବସ୍ତୁ ଥିଲା, "An Introduction of Work Education in Primary Schools : A Pilot Study, SCERT, Odisha, 1981."

ଏହି ଅଧ୍ୟୟନର ମୂଳ ଲକ୍ଷ୍ୟ ଥିଲା କର୍ମଭିତ୍ତିକ ଶିକ୍ଷା କିପରି ପ୍ରାଥମିକ ଶିକ୍ଷା ପାଠ୍ୟକ୍ରମରେ ସହଜରେ ପ୍ରଦାନ କରାଯାଇ ପାରିବ ସେ ସଂପର୍କରେ ଏକ ଆଦର୍ଶ ପାଠ୍ୟକ୍ରମ (Model Curriculum) ପ୍ରସ୍ତୁତ ପୂର୍ବକ ସୁଚିନ୍ତିତ ଗବେଷଣାତ୍ମକ ଦିଗ୍‌ଦର୍ଶନ ଦେବା । ଏତଦ୍‌ବ୍ୟତୀତ ଏହି ଅଧ୍ୟୟନର ଯେଉଁସବୁ ମୌଳିକ ଲକ୍ଷ୍ୟଥିଲା, ସେଗୁଡ଼ିକ ହେଲା :

– ବିଦ୍ୟାଳୟରେ କର୍ମଭିତ୍ତିକ ଶିକ୍ଷା ଦେବାର ବିଭିନ୍ନ ସ୍ଥିତିଗୁଡ଼ିକ ଚିହ୍ନଟ କରିବା;

– ତତ୍ ସଂପର୍କୀୟ ଶିକ୍ଷାଦାନ ସଂପର୍କୀୟ ଶିକ୍ଷଣ ସାମଗ୍ରୀ ପ୍ରସ୍ତୁତ କରିବା;

– କର୍ମଭିତ୍ତିକ ଶିକ୍ଷା କାର୍ଯ୍ୟାବଳୀର ମୂଲ୍ୟାୟନ ନିମନ୍ତେ ଆବଶ୍ୟକ ପଦ୍ଧତି ଓ ମାନ ନିର୍ଦ୍ଧାରଣ କରିବା ।

ଏହି ଅଧ୍ୟୟନର ପରିସର ମଧ୍ୟକୁ ସର୍ବମୋଟ ଦଶଗୋଟି ବିଦ୍ୟାଳୟ ନିଆଯାଇଥିଲା । ପାଞ୍ଚଟି ବିଦ୍ୟାଳୟରେ ବେତକାମ ପ୍ରଚଳନ କରାଯାଇଥିଲାବେଳେ ଅନ୍ୟ ପାଞ୍ଚଟି ବିଦ୍ୟାଳୟରେ ତାଳପତ୍ରର କାମ ପ୍ରଚଳିତ ହୋଇଥିଲା । ଏତଦ୍‌ବ୍ୟତୀତ ପ୍ରାଥମିକ ବିଦ୍ୟାଳୟର ନାମଲେଖା ଅଧାରୁ ପିଲାମାନେ ପାଠ ଛାଡ଼ି ଯାଇଥିବାର କାରଣ ଓ ଅନ୍ୟାନ୍ୟ ଆବଶ୍ୟକ ତଥ୍ୟ ଆଦାୟ ନିମନ୍ତେ ଏକ ପ୍ରଶ୍ନାବଳୀ ପ୍ରସ୍ତୁତ ହୋଇଥିଲା । ତତ୍ ସଂପର୍କୀୟ ପ୍ରତ୍ୟକ୍ଷ ତଥ୍ୟ ଓ ଅଧ୍ୟୟନ ବିଷୟବସ୍ତୁ ସଂପର୍କୀୟ ସତ୍ୟାସତ୍ୟ ଜାଣିବା ନିମନ୍ତେ ଏକ ସାକ୍ଷାତକାର ଭିତ୍ତିକ ତଥ୍ୟାବଳୀ ମଧ୍ୟ ପ୍ରସ୍ତୁତ ହୋଇଥିଲା ।

**ଅଧ୍ୟୟନର ଫଳାଫଳ ଓ ସୁପାରିଶ**

– କର୍ମଭିତ୍ତିକ ଶିକ୍ଷା ପାଠ୍ୟକ୍ରମ ତିନୋଟି ଦଳର ପିଲାଙ୍କ ପାଇଁ ସହଜରେ ବିଭକ୍ତ କରାଯାଇ ପାରିବ । ପ୍ରଥମ ଦଳରେ ପ୍ରଥମ, ଦ୍ୱିତୀୟ; ଦ୍ୱିତୀୟ ଦଳରେ ତୃତୀୟ, ଚତୁର୍ଥ; ପଞ୍ଚମ ଏବଂ ତୃତୀୟ ଦଳରେ ୬ଷ୍ଠ ଓ ୭ମ ଶ୍ରେଣୀର ପିଲାମାନେ ରହି ପାରିବେ ।

– ପ୍ରତ୍ୟେକ ଶ୍ରେଣୀର ପିଲାଙ୍କ ପାଇଁ ଆବଶ୍ୟକ କୌଶଳ ଓ ପ୍ରକ୍ରିୟା ନିର୍ଦ୍ଧାରଣ କରିବା ଏକ କଷ୍ଟକର ବ୍ୟାପାର ହେଲେ ମଧ୍ୟ ସେଥିପାଇଁ ଯଥେଷ୍ଟ ଗୁରୁତ୍ୱ ଦିଆଯିବା ଆବଶ୍ୟକ ।

– କର୍ମଭିତ୍ତିକ ଶିକ୍ଷାର ପାଠ୍ୟକ୍ରମ ଆଞ୍ଚଳିକ ସମ୍ବଳ ଏବଂ କର୍ମ ଉପରେ ପର୍ଯ୍ୟବସିତ ହେବା ଆବଶ୍ୟକ ।

ଏହି ଅଧ୍ୟୟନ ଫଳରେ ରାଜ୍ୟରେ କର୍ମଭିତ୍ତିକ ଶିକ୍ଷା କିପରି ବିଦ୍ୟାଳୟ ପାଠ୍ୟକ୍ରମରେ ସଂଯୋଜିତ କରାଯାଇପାରିବ ସେ ସଂପର୍କରେ ବହୁ ସୁଚିନ୍ତିତ ମତାମତ ପ୍ରଫେସର ଦାଶ ଦେଇଥିଲେ ।

କର୍ମଭିତ୍ତିକ ଶିକ୍ଷାର ଅୟମାରମ୍ଭ ପ୍ରାକ୍ ବିଦ୍ୟାଳୟସ୍ତରରୁ ଆରମ୍ଭ ହୋଇ ମାଧ୍ୟମିକ ଶିକ୍ଷା ପର୍ଯ୍ୟନ୍ତ ପରିବ୍ୟାପ୍ତ । ଏହି ଶିକ୍ଷା ଫଳରେ ପିଲାଟି ତା'ର ଶୈଶବରୁ କର୍ମଜଗତ ପ୍ରତି ବିମୁଖ ନ ହୋଇ ବିଭିନ୍ନ ବିଦ୍ୟାଳୟଭିତ୍ତିକ କାର୍ଯ୍ୟପ୍ରତି ନିଜର ଆଗ୍ରହ ଓ ସ୍ପୃହା ପ୍ରକାଶ କରି ପାରିବ । ସେଥିପାଇଁ ଛୋଟ ଛୋଟ କାଠି, କୁଟା, କାଦୁଅ ମାଧ୍ୟମରେ ବିଭିନ୍ନ ନମୁନା ପ୍ରସ୍ତୁତ କରିବାଠାରୁ ବିଦ୍ୟାଳୟର ବଗିଚା ଓ କାନ୍ଥର ସୌନ୍ଦର୍ଯ୍ୟକରଣ

ଆଦି ସଂପର୍କରେ ଏହି ପଥପ୍ରଦର୍ଶକ ଅଧ୍ୟୟନରେ ସୂଚନା ଦିଆଯାଇଅଛି । ଏହା ଫଳରେ ରାଜ୍ୟ ପାଇଁ କର୍ମଭିତ୍ତିକ ଶିକ୍ଷା କ୍ଷେତ୍ରରେ ଯୋଜନା କରୁଥିବା ବ୍ୟକ୍ତିବିଶେଷ, ଶିକ୍ଷା ପ୍ରଶାସକ ଆଦି ବିଭିନ୍ନ ଦିଗ୍‌ଦର୍ଶନ ପାଇବା ସହିତ କର୍ମଭିତ୍ତିକ ଶିକ୍ଷାର ବହୁ ବିଭାବ ସହିତ ପରିଚିତ ହୋଇ ପାରିଛନ୍ତି ।

ପ୍ରଫେସର ଦାଶଙ୍କ ଦ୍ୱାରା ୧୯୮୧ ମସିହାରେ କରାଯାଇଥିବା ଏହି ଅଧ୍ୟୟନ ରାଷ୍ଟ୍ରୀୟ ଶୈକ୍ଷିକ ଅନୁସନ୍ଧାନ ଓ ପ୍ରଶିକ୍ଷଣ ପରିଷଦଦ୍ୱାରା ପ୍ରକାଶିତ Third Survey of Research in Education, 1978-83ରେ ପ୍ରକାଶିତ ହୋଇଅଛି ।

ଜାତୀୟ ଶିକ୍ଷାନୀତି , ୧୯୮୬ ପ୍ରସ୍ତୁତି ସମୟରେ ଏହି ପ୍ରକଳ୍ପାନୁଭୂତି ବିଦ୍ୟାଳୟସ୍ତରର କର୍ମଭିତ୍ତିକ ପାଠ୍ୟକ୍ରମ ସଂପର୍କୀୟ ଚିନ୍ତାଧାରାକୁ ଆବଶ୍ୟକ ତଥ୍ୟ ଓ ଚିନ୍ତନ ଯୋଗାଇଥିଲା । ଏହା ଫଳରେ ପ୍ରାଥମିକ ସ୍ତର, ଉଚ୍ଚ ପ୍ରାଥମିକ ସ୍ତର ଓ ମାଧ୍ୟମିକ ସ୍ତର ପର୍ଯ୍ୟନ୍ତ କର୍ମଭିତ୍ତିକ ଶିକ୍ଷାର ଚୂଡ଼ାନ୍ତ ରୂପରେଖ ସଂପର୍କରେ ବିଭିନ୍ନ କାର୍ଯ୍ୟାବଳୀ ସଂପର୍କରେ ଆଲୋକପାତ କରାଯାଇଅଛି ।

ମାତ୍ର ସଂପ୍ରତି ଆମ ଦେଶରେ କର୍ମଭିତ୍ତିକ ଶିକ୍ଷାର ସ୍ଥିତି ଏକ ଅଧଃପତିତ ଅବସ୍ଥାକୁ ଚାଲି ଆସିଅଛି । ଏହା ବିଦ୍ୟାଳୟ ପାଠ୍ୟକ୍ରମରେ ଏକ ଅଲୋଡ଼ା ଅଶୁଣା କାର୍ଯ୍ୟରୂପେ ସତେ ଯେମିତି ବିବେଚିତ ହେଉଅଛି । ଅଧିକାଂଶ ରାଜ୍ୟରେ କାର୍ଯ୍ୟନିର୍ଘଣ୍ଟର ଶତକଡ଼ା ଦଶ ଭାଗରୁ ଅଧିକ ସମୟ ମଧ୍ୟ ଦିଆଯାଇନାହିଁ । ସେଥିପାଇଁ ଜାତୀୟ ଶିକ୍ଷାନୀତି, ୧୯୮୬ କାର୍ଯ୍ୟକାରୀ କରିବା ନିମନ୍ତେ ୧୯୯୨ ମସିହାର ପ୍ରୋଗ୍ରାମ ଅଫ୍ ଆକ୍‌ସନ୍ (POA)ରେ ଶତକଡ଼ା ୧୫ ଭାଗରୁ ୨୦ ଭାଗ ସମୟ ବିଦ୍ୟାଳୟ ପାଠ୍ୟକ୍ରମରେ ଦେବା ନିମନ୍ତେ ପ୍ରସ୍ତାବ ଦିଆଯାଇଅଛି ।

**ବିଜ୍ଞାନ ଓ ଗଣିତ ବିଭାଗର ପରିଚାଳନା**

ଶିକ୍ଷକ ଶିକ୍ଷା ନିର୍ଦ୍ଦେଶାଳୟ ଏବଂ ରାଜ୍ୟ ଶିକ୍ଷା ଗବେଷଣା ପ୍ରଶିକ୍ଷଣ ପରିଷଦରେ ଥିବା ବିଜ୍ଞାନ ବିଭାଗ ରାଜ୍ୟ ଶିକ୍ଷା ପ୍ରତିଷ୍ଠାନର ଏକ ସ୍ୱତନ୍ତ୍ର ବିଭାଗ ହିସାବରେ ୧୯୭୧-୭୨ ଶିକ୍ଷାବର୍ଷରେ ପ୍ରତିଷ୍ଠିତ ହୋଇଥିଲା । ଏତଦ୍‌ବ୍ୟତୀତ୍ ୧୯୭୪ ମସିହାରେ ରାଜ୍ୟ ଶିକ୍ଷା ପ୍ରତିଷ୍ଠାନର ଅଧ୍ୟକ୍ଷ ପଦବୀକୁ ମଧ୍ୟ ନିର୍ଦ୍ଦେଶକ ପଦବୀରେ ପରିଣତ କରାଯାଇ ରାଜ୍ୟ ଶିକ୍ଷା ବିଭାଗର ସର୍ବବରିଷ୍ଠ ଅଧିକାରୀଙ୍କୁ ରାଜ୍ୟ ଶିକ୍ଷା ପ୍ରତିଷ୍ଠାନର ଭବିଷ୍ୟତ ଶୈକ୍ଷିକ ରୂପରେଖ ନିର୍ଦ୍ଧାରଣ କରିବାକୁ ଦାୟିତ୍ୱ ଦିଆଗଲା । ବିଭିନ୍ନ ସମୟରେ ଓଡ଼ିଶାର ଲବ୍ଧପ୍ରତିଷ୍ଠ ବୈଜ୍ଞାନିକ ଶାନ୍ତନୁକୁମାର ଆଚାର୍ଯ୍ୟ, ପ୍ରଫେସର ଦେବକାନ୍ତ ମିଶ୍ର, ପ୍ରତିଷ୍ଠିତ ଲେଖକ ଓ ବିଜ୍ଞାନବିତ୍ ଗୋପାଳ ଚନ୍ଦ୍ର ପଟ୍ଟନାୟକ ଓ ବହୁ ବିଜ୍ଞାନ ପୁସ୍ତକର

ରଚୟିତା ତଥା ଏନ୍.ସି.ଇ.ଆର.ଟି ପୁରସ୍କାର ବିଜେତା ବିଜ୍ଞାନବିତ୍ ନରେନ୍ଦ୍ର ପ୍ରସାଦ ଦାସ ବିଜ୍ଞାନ ବିଭାଗରେ ଅଧିକାରୀ ରୂପେ କାର୍ଯ୍ୟ କରିଥିଲେ ।

ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପ୍ରତିଷ୍ଠାନର ବିଜ୍ଞାନ ବିଭାଗ ଆନୁକୂଲ୍ୟରେ ରାଜ୍ୟର ବିଦ୍ୟାଳୟସ୍ତରରେ ବହୁ ବିଜ୍ଞାନ ଭିତ୍ତିକ ପ୍ରକଳ୍ପମାନ ପ୍ରସ୍ତୁତ କରାଯାଇ ବିଦ୍ୟାଳୟସ୍ତରରେ, ବିଦ୍ୟାଳୟସ୍ତରରୁ ବ୍ଲକ, ବ୍ଲକ ସ୍ତରରୁ ଶିକ୍ଷା ଜିଲ୍ଲାସ୍ତର ଓ ସର୍ବଶେଷରେ ରାଜ୍ୟସ୍ତରକୁ ପ୍ରତିଯୋଗିତାରେ କୃତିତ୍ୱ ହାସଲ କରିଥିବା କୁନି ବୈଜ୍ଞାନିକମାନଙ୍କ ପ୍ରକଳ୍ପକୁ ଅଣାଯାଇ ପୁରସ୍କୃତ କରାଯାଉଥିଲା । ରାଜ୍ୟସ୍ତରୀୟ ଶ୍ରେଷ୍ଠ ପ୍ରକଳ୍ପଗୁଡ଼ିକ ଜାତୀୟସ୍ତରର ପ୍ରତିଯୋଗିତାରେ ଅଂଶ ଗ୍ରହଣ କରିବାକୁ ସୁଯୋଗ ପାଇଥିଲେ ।

ଏହି ବିଭାଗର ବିଶେଷଜ୍ଞଭାବେ ଉଚ୍ଚ ଯୋଗ୍ୟତା ସଂପନ୍ନ ବ୍ୟକ୍ତିବିଶେଷ କାର୍ଯ୍ୟ କରୁଥିଲେ । ଏହା ଫଳରେ ବିଦ୍ୟାଳୟସ୍ତରରେ ବିଜ୍ଞାନ ଶିକ୍ଷାର ଉନ୍ନତି ନିମନ୍ତେ ଶିକ୍ଷକ ପ୍ରଶିକ୍ଷଣ କାର୍ଯ୍ୟ ଓ ଗବେଷଣାମାନ ମଧ୍ୟ କାର୍ଯ୍ୟକାରୀ କରାଯାଉଥିଲା । ଏତଦ୍‌ବ୍ୟତୀତ ବିଜ୍ଞାନର ଜଟିଳ ବିଷୟବସ୍ତୁକୁ କିପରି ପ୍ରାଥମିକ ସ୍ତରର ଶିକ୍ଷକମାନେ ନିଜ ପ୍ରସ୍ତୁତ ଶିକ୍ଷଣ ସାମଗ୍ରୀ ମାଧ୍ୟମରେ ଶିକ୍ଷାଦାନ କରି ପାରିବେ, ତାହା ମଧ୍ୟ ଶିକ୍ଷକ ପ୍ରଶିକ୍ଷଣର ପାଠ୍ୟକ୍ରମରେ ସ୍ଥାନ ପାଉଥିଲା ।

ପ୍ରଫେସର ଦାଶଙ୍କ ପ୍ରଚେଷ୍ଟାରେ ୧୯୮୨-୮୩ ଶିକ୍ଷାବର୍ଷଠାରୁ ବିଭିନ୍ନ ଶିକ୍ଷାଜିଲ୍ଲାସ୍ତରରେ ବିଜ୍ଞାନ ପ୍ରଦର୍ଶନୀମାନ ଆୟୋଜନ କରା ଯିବାର ପରମ୍ପରା ସୃଷ୍ଟି ହୋଇଥିଲା । ପ୍ରତି ଶିକ୍ଷା ଜିଲ୍ଲା ସ୍ତରରେ ପୁରସ୍କୃତ ପ୍ରକଳ୍ପମାନଙ୍କର ପ୍ରଦର୍ଶନୀ ମଧ୍ୟ ରାଜ୍ୟ ସ୍ତରରେ ଅନୁଷ୍ଠିତ କରାଯାଇ ଶ୍ରେଷ୍ଠ ପ୍ରକଳ୍ପମାନଙ୍କୁ ପୁରସ୍କୃତ କରାଯିବାର ବିଧିବ୍ୟବସ୍ଥା କରାଯାଇଥିଲା । ଏତଦ୍‌ବ୍ୟତୀତ ଶିକ୍ଷା ଜିଲ୍ଲା ସ୍ତରରେ ବିଜ୍ଞାନ ସେମିନାରମାନ ୧୯୮୩-୮୪ ଶିକ୍ଷାବର୍ଷରୁ ଆରମ୍ଭ କରାଯିବାର ପରମ୍ପରା ସୃଷ୍ଟି ହୋଇଥିଲା ।

ରାଜ୍ୟ ସ୍ତରୀୟ ବିଜ୍ଞାନ ପ୍ରକଳ୍ପ ଓ ସେମିନାରରେ ସଫଳତା ହାସଲ କରିଥିବା ଛାତ୍ରଛାତ୍ରୀମାନେ ଆଞ୍ଚଳିକ ଓ ଜାତୀୟ ସ୍ତରର ପ୍ରଦର୍ଶନୀ ଓ ସେମିନାରରେ ଅଂଶ ଗ୍ରହଣ କରୁଥିଲେ । ଏହା ସବୁଠାରୁ ଗର୍ବ ଓ ଗୌରବର ବିଷୟ ଥିଲା ଯେ ୧୯୮୫ ମସିହାରେ ଓଡ଼ିଶା ଜାତୀୟ ବିଜ୍ଞାନ ସେମିନାରରେ ସମଗ୍ର ଭାରତ ବର୍ଷରେ ପ୍ରଥମ ସ୍ଥାନ ଅଧିକାର କରିଥିଲା । ଏତଦ୍‌ବ୍ୟତୀତ ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦ ଏବଂ ଜାତୀୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦ ଆନୁକୂଲ୍ୟରେ ବିଭିନ୍ନ ସମୟରେ ରାଜ୍ୟରେ ବିଜ୍ଞାନ ଶିକ୍ଷାର ପ୍ରଭୂତ ଉନ୍ନତି ସାଧିତ ହୋଇଅଛି ।

## ଗବେଷଣା ଓ ସମନ୍ୱୟ ବିଭାଗ

ଶିକ୍ଷା ବିଷୟରେ ଅଧ୍ୟୟନ କରୁଥିବା ସ୍ନାତକୋତ୍ତର ସ୍ତରର ଛାତ୍ରଛାତ୍ରୀଙ୍କ ମଧ୍ୟରେ ପ୍ରାଥମିକ ଶିକ୍ଷା ଓ ସମସ୍ୟା ସଂପର୍କରେ ଗବେଷଣା କରିବା ନିମନ୍ତେ ପ୍ରଫେସର ଦାଶ ବ୍ୟକ୍ତିଗତଭାବେ ପ୍ରୋତ୍ସାହିତ କରୁଥିଲେ । ସେଥିପାଇଁ ଏକ ଗବେଷଣା କମିଟି ଗଠନ କରିଥିଲେ । ଏହି ଗବେଷଣା କମିଟିରେ ଡକ୍ଟର ଜଗମୋହନ ରାଠୋର, ଡକ୍ଟର ଜଗନ୍ନାଥ ମହାନ୍ତି, ଅଧ୍ୟାପକ କରୁଣାକର ପରିଡ଼ା, ଅଧ୍ୟାପକ ଶ୍ରୀବତ୍ସ ଲାଞ୍ଛନ ଜେନା ପ୍ରମୁଖ ଅଧ୍ୟାପକ ଥିଲେ । ଗବେଷଣା ନିମନ୍ତେ ନିର୍ଦ୍ଦେଶାଳୟ ତରଫରୁ ସ୍ୱତନ୍ତ୍ର ଆର୍ଥିକ ଅନୁଦାନ ଦେବାର ବ୍ୟବସ୍ଥା ୧୯୮୪-୮୫ ଶିକ୍ଷା ବର୍ଷରେ ଆରମ୍ଭ କରାଯାଇଥିଲା । ଏହା ଫଳରେ ଏମ୍.ଏ, ଏମ୍.ଏଡ୍ ସ୍ତରର ଶିକ୍ଷାର୍ଥୀମାନେ ତାଙ୍କର ପ୍ରକଳ୍ପ ସଂପର୍କୀୟ ଗବେଷଣା ସଂପର୍କୀୟ ପ୍ରସ୍ତାବ ଗବେଷଣା ପରିଷଦକୁ ଦାଖଲ କରୁଥିଲେ । ଏପରିକି ନିର୍ଦ୍ଦେଶାଳୟ ତରଫରୁ ପ୍ରକଳ୍ପ ସଂପର୍କୀୟ ବିଭିନ୍ନ ବିଷୟବସ୍ତୁର ତାଲିକା ମଧ୍ୟ ରାଜ୍ୟର ପ୍ରଶିକ୍ଷଣ ମହାବିଦ୍ୟାଳୟମାନଙ୍କୁ ଦାଖଲ କରାଯାଉଥିଲା । ଏତଦ୍‌ବ୍ୟତୀତ ପରିଷଦ ତରଫରୁ ବିଭିନ୍ନ ଗବେଷଣାତ୍ମକ ନିବନ୍ଧମାନ ମଧ୍ୟ ପ୍ରକାଶ କରାଯାଉଥିଲା ।

ପ୍ରଫେସର ଦାଶଙ୍କ ଅନ୍ୟ ଏକ ଅଭିନବ ପ୍ରୟାସ ଥିଲା ପ୍ରାଥମିକ ଶିକ୍ଷକମାନଙ୍କ ଦ୍ୱାରା ସମସ୍ୟା-ସମାଧାନ ମୂଳକ ପ୍ରବନ୍ଧ ପ୍ରତିଯୋଗିତା । ୧୯୮୨-୮୩ ମସିହାରେ ସମସ୍ୟା ସମାଧାନମୂଳକ ପ୍ରବନ୍ଧ ପ୍ରତିଯୋଗିତାରେ କୃତିତ୍ୱ ହାସଲ କରିଥିବା ଶିକ୍ଷକ ଶିକ୍ଷୟିତ୍ରୀମାନଙ୍କୁ ପୁରସ୍କୃତ କରିବା ନିମନ୍ତେ ୨୮ ଜୁନ୍, ୧୯୮୫ ମସିହାରେ ଏକ ରାଜ୍ୟସ୍ତରୀୟ ପୁରସ୍କାର ବିତରଣ ଉତ୍ସବ ଆୟୋଜିତ ହୋଇଥିଲା । ଏହି ଉତ୍ସବରେ ତତ୍‌କାଳୀନ ଶିକ୍ଷାମନ୍ତ୍ରୀ ଯଦୁନାଥ ଦାଶମହାପାତ୍ର ଏବଂ ଶିକ୍ଷା ସଚିବ ସୁଧାଂଶୁ ମୋହନ ପଟ୍ଟନାୟକ, ଆଇ.ଏ.ଏସ୍ ଯଥାକ୍ରମେ ମୁଖ୍ୟ ଅତିଥି ଓ ସମ୍ମାନିତ ଅତିଥି ହିସାବରେ ଯୋଗଦାନ କରିଥିଲେ । ଏହି କାର୍ଯ୍ୟକ୍ରମର ସଫଳତା ଓ ଶିକ୍ଷକମାନଙ୍କର ଗବେଷଣାତ୍ମକ ଉତ୍ସାହ ଦେଖି ଶିକ୍ଷାମନ୍ତ୍ରୀ ପୁରସ୍କାର ରାଶି ବଢ଼ାଇ ଦେଇଥିଲେ । ଏତଦ୍‌ବ୍ୟତୀତ ଏହି ବିଭାଗ ଆନୁକୂଲ୍ୟରେ "Educational Researches in Odisha" ମଧ୍ୟ ପରବର୍ତ୍ତୀ ସମୟରେ ପ୍ରକାଶିତ ହୋଇଥିଲା ।

ସଂପ୍ରତି ଆମ ରାଜ୍ୟରେ ପ୍ରାଥମିକ ଶିକ୍ଷାର ଗୁଣାତ୍ମକ ବିକାଶ ଦିଗରେ ସହାୟତା କରୁଥିବା ନିବନ୍ଧ ଲିଖନ ପ୍ରତିଯୋଗିତା ଶିକ୍ଷାବିଭାଗ ଦ୍ୱାରା ଆଉ କରାଯାଉନାହିଁ ।

## ଶିକ୍ଷକ ଶିକ୍ଷାବିଭାଗ

ପ୍ରଫେସର ଦାଶଙ୍କ ନେତୃତ୍ୱରେ ଶିକ୍ଷକ ଶିକ୍ଷାବିଭାଗ ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦର ଏକ ସ୍ୱତନ୍ତ୍ର ଓ ସମ୍ମାନଜନକ ସ୍ଥିତିରେ ଥିଲା । ସେ ଏହି ବିଭାଗ ମାଧ୍ୟମରେ ରାଜ୍ୟର ସାମଗ୍ରିକ ଶିକ୍ଷକ ଶିକ୍ଷାକୁ ନୂତନ ଜୀବନ୍ୟାସ ଦେଇଥିଲେ । ଏହି ବିଭାଗ କାର୍ଯ୍ୟକ୍ରମର ସୁଫଳ ରାଜ୍ୟର ପ୍ରାକ୍ ସେବାକଳୀନ ଓ ସେବାକାଳୀନ ଶିକ୍ଷକ ଶିକ୍ଷୟିତ୍ରୀ ପାଇପାରୁଥିଲେ ।

ଶିକ୍ଷକ ଶିକ୍ଷାର ଗୁଣାତ୍ମକ ବିକାଶ ନିମନ୍ତେ ବିଭାଗ ଆନୁକୂଲ୍ୟରେ ଯୋଗ୍ୟ ପ୍ରାର୍ଥୀମାନଙ୍କୁ ବଛାଯାଇ ପ୍ରାଥମିକ, ମାଧ୍ୟମିକ ଏବଂ କଲେଜ ସ୍ତରର ପ୍ରାକ୍-ସେବାକାଳୀନ ପ୍ରଶିକ୍ଷଣ ପାଇଁ ମନୋନୟନ କରାଯାଇଥିଲା । ସେହିସବୁ ପ୍ରାର୍ଥୀମାନେ ରାଜ୍ୟ ସରକାରଙ୍କ ନିର୍ଦ୍ଧାରିତ ମାପକ ଅନୁସାରେ ମନୋନୀତ ହେଉଥିଲେ ।

ଏତଦ୍‌ବ୍ୟତୀତ ରାଜ୍ୟର ବିଭିନ୍ନ ଶିକ୍ଷା ପ୍ରତିଷ୍ଠାନଗୁଡ଼ିକରେ ସେବାକାଳୀନ ପ୍ରାକ୍ - ପ୍ରଶିକ୍ଷଣ କାର୍ଯ୍ୟକ୍ରମ, ଆଲୋଚନା ଚକ୍ର, ୱାର୍କସପ୍, ସେମିନାରମାନ ଆୟୋଜନ କରାଯାଇ ଶିକ୍ଷକ ଶିକ୍ଷୟିତ୍ରୀମାନଙ୍କୁ ଶିକ୍ଷାର ନୂତନ ନୀତି, ନୂତନ ଧାରା ସହିତ ପରିଚିତ କରାଯାଇଥିଲା । ଏହିସବୁ ନୂତନ ଧାରା ସହିତ ରାଜ୍ୟର ଶିକ୍ଷା ପ୍ରଶାସକମାନଙ୍କୁ ମଧ୍ୟ ପରିଚିତ କରାଯିବା ନିମନ୍ତେ ରାଜ୍ୟସ୍ତରୀୟ ଆଲୋଚନା ଚକ୍ର ଓ ପ୍ରଶିକ୍ଷଣମାନ ଆୟୋଜିତ ହେଉଥିଲା ।

ଶିକ୍ଷକ ଶିକ୍ଷା ସଂପର୍କୀୟ ଗବେଷଣାକୁ ଦିଗ୍‌ଦର୍ଶନ ଦେବା ଏହି ବିଭାଗର ଅନ୍ୟତମ ମୁଖ୍ୟ ଉଦ୍ଦେଶ୍ୟ ଥିଲା । ଏହି ବିଭାଗ ଆନୁକୂଲ୍ୟରେ ବିଭିନ୍ନ ସମୟରେ ଆଦର୍ଶପାଠ-ଯୋଜନା ମାନ ପ୍ରସ୍ତୁତ କରାଯାଇଥିଲା ।

୧୯୮୪-୮୫ ମସିହାରେ ପ୍ରଫେସର ଦାଶଙ୍କ ସଭାପତିତ୍ୱରେ ଏନ୍.ସି.ଇ.ଆର.ଟି ଦ୍ୱାରା ପ୍ରସ୍ତୁତ "Twenty Point Programme on Teacher Education" ସଂପର୍କରେ ଆୟୋଜିତ ସ୍ୱତନ୍ତ୍ର ଆଲୋଚନା ଚକ୍ରରେ ବିଷଦ ଭାବେ ଆଲୋଚନା କରାଯାଇଥିଲା । ଏହି ଆଲୋଚନା ଚକ୍ରର ନିର୍ଯ୍ୟାସ ଅନୁଯାୟୀ ଶିକ୍ଷକ ଶିକ୍ଷାର ପୁନର୍ଗଠନ ଓ ଗୁଣାତ୍ମକ ବିକାଶ ନିମନ୍ତେ ରାଜ୍ୟର ସ୍ୱତନ୍ତ୍ର ମତ ଏକ ରିପୋର୍ଟ ମାଧ୍ୟମରେ ଏନ୍.ସି.ଇ.ଆର୍.ଟି. ଓ ଭାରତ ସରକାରଙ୍କୁ ଜଣାଇ ଦିଆଯାଇଥିଲା । ରାଜ୍ୟ ଗବେଷଣା ପରିଷଦର ଅଧିକାଂଶ ସୁପାରିଶକୁ ଏନ୍.ସି.ଇ.ଆର.ଟି ୧୯୮୬ ମସିହାରେ ପ୍ରସ୍ତୁତ ନୂତନ ଶିକ୍ଷାନୀତିରେ ପ୍ରତିଫଳିତ କରିଥିଲେ ।

ପ୍ରଫେସର ଦାଶଙ୍କ ଦିଗ୍ ଦର୍ଶନରେ ରାଜ୍ୟ ପାଇଁ ଯେଉଁସବୁ ମୂଲ୍ୟବାନ ଶୈକ୍ଷିକ ପୁସ୍ତକ / ଶିକ୍ଷକ ସହାୟକ ପୁସ୍ତକମାନ ପ୍ରସ୍ତୁତ କରାଯାଇଥିଲା, ସେଗୁଡ଼ିକ ହେଲା :

- ଶିକ୍ଷା ମନସ୍ତତ୍ତ୍ୱ ସଂପର୍କୀୟ କାର୍ଯ୍ୟପୋଯୋଗୀ ପୁସ୍ତକ
- ପ୍ରାଥମିକ ଶିକ୍ଷାର ସାଂପ୍ରତିକ ଧାରା
- ମାତୃଭାଷା ଶିକ୍ଷାଦାନ ପ୍ରଣାଳୀ

ଏହି ବିଭାଗର ଦାୟିତ୍ୱ ନେଇଥିଲେ ଡକ୍ଟର ପ୍ରଫୁଲ୍ଲ ଚନ୍ଦ୍ର ମହାପାତ୍ର, ଅଧ୍ୟାପକ ମୁରଲୀଧର ଦାଶ ଓ ଅଧ୍ୟାପିକା ଦୀପାଳୀ ସିହ୍ନାରାଏ ।

**ପ୍ରକାଶନ, ପ୍ରଚାର ଓ ପ୍ରସାର ବିଭାଗ**

ସାଧାରଣତଃ ଶିକ୍ଷକ ଶିକ୍ଷା ନିର୍ଦ୍ଦେଶାଳୟ ଏବଂ ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦ ଦ୍ୱାରା ପ୍ରସ୍ତୁତ ଗବେଷଣା ଓ କାର୍ଯ୍ୟକ୍ରମ ଭିତ୍ତିକ ପୁସ୍ତକ ପୁସ୍ତିକାର ପ୍ରକାଶନ ଏହି ବିଭାଗ ଆନୁକୂଲ୍ୟରେ କରାଯାଇଥାଏ । ସେଥିପାଇଁ ପ୍ରଫେସର ଦାଶ ତାଙ୍କ କାର୍ଯ୍ୟକାଳ ମଧ୍ୟରେ ଏହି ବିଭାଗ ପ୍ରତି ସ୍ୱତନ୍ତ୍ର ଗୁରୁତ୍ୱ ଦେଉଥିଲେ ।

ସେ ସମୟରେ ଶିକ୍ଷା ବିଭାଗ ଆନୁକୂଲ୍ୟରେ ଦୁଇଟି ତ୍ରୈମାସିକ ପତ୍ରିକା ପ୍ରକାଶ କରାଯାଉଥିଲା । ସେହି ପତ୍ରିକା ଦୁଇଟି ହେଲା – ଶିକ୍ଷାଲୋକ ଓ ଦି ଓଡ଼ିଶା ଏଜୁକେଶନ୍ ମାଗାଜିନ୍ (The Odisha Education Magazine) । ପ୍ରଥମଟି ଓଡ଼ିଆ ଭାଷାରେ ପ୍ରକାଶ ଲାଭ କରୁଥିଲାବେଳେ ଦ୍ୱିତୀୟଟି ଇଂରାଜୀ ଭାଷାରେ ପ୍ରକାଶିତ ହେଉଥିଲା । ଏହି ଦୁଇଟି ପତ୍ରିକାର ମୁଖ୍ୟ ସଂପାଦକ ଭାବେ ପ୍ରଫେସର ଦାଶ ୧୯୭୮ ମସିହାରୁ ୧୯୮୯ ମସିହା ପର୍ଯ୍ୟନ୍ତ ଥିଲେ । କାର୍ଯ୍ୟକାରୀ ସଂପାଦକ ଥିଲେ ଡକ୍ଟର ଜଗନ୍ନାଥ ମହାନ୍ତି ।

ସେ ସମୟରେ ଏଇ ଦୁଇଟି ଶିକ୍ଷାଭିତ୍ତିକ ପତ୍ରିକା ରାଜ୍ୟରେ ଶିକ୍ଷକ ଶିକ୍ଷା ସଂପର୍କୀୟ ବହୁବିଧ ଲେଖା ପ୍ରକାଶିତ କରି ଶୈକ୍ଷିକ ବାତାବରଣ ସୃଷ୍ଟି କରିଥିଲା । ଏଥିରେ ତତ୍କାଳୀନ ଶିକ୍ଷା ସମସ୍ୟା, ସମାଜତତ୍ତ୍ୱ, ଦର୍ଶନ, ମନସ୍ତତ୍ତ୍ୱ, ଶିକ୍ଷାର ଉନ୍ନତି କଳ୍ପେ ପ୍ରସ୍ତୁତ ନିବନ୍ଧ, ଜନଶିକ୍ଷା, ଜନସଂଖ୍ୟା ଶିକ୍ଷା, ଶିକ୍ଷା, ସ୍ୱାସ୍ଥ୍ୟ ସଂପର୍କୀୟ ବିଷୟ, ଗୋଷ୍ଠୀ ଶିକ୍ଷା, ଶିକ୍ଷାଦାନ ପ୍ରଣାଳୀ, ଶ୍ରେଣୀ ଗୃହ ଶିକ୍ଷାଦାନ ସଂପର୍କୀୟ ଗବେଷଣା, ଶିକ୍ଷାର ସୃଜନାତ୍ମକ ଧାରଣା ସଂପର୍କୀୟ ଲେଖା ସ୍ଥାନିତ ହେଉଥିଲା ।

ଏହି ଦୁଇଟି ପତ୍ରିକାରେ ପ୍ରକାଶିତ ଲେଖାଗୁଡ଼ିକ ସାଧାରଣତଃ ରାଜ୍ୟ ଓ ରାଜ୍ୟ ବାହାରର ବିଶିଷ୍ଟ ଶିକ୍ଷାବିତ୍, ଶିକ୍ଷା କ୍ଷେତ୍ରରେ ସୁନାମ ହାସଲ କରିଥିବା ଶିକ୍ଷକ ଶିକ୍ଷୟିତ୍ରୀ ଓ ବ୍ୟକ୍ତିବିଶେଷଙ୍କ ଦ୍ୱାରା ପ୍ରସ୍ତୁତ ହେଉଥିଲା । ତେଣୁ ପତ୍ରିକାଦ୍ୱୟ ଉଚ୍ଚକୋଟୀର ହୋଇ ପାରିଥିଲା । ଏତଦ୍‌ବ୍ୟତୀତ ରାଜ୍ୟ ଓ ଦେଶରେ ଶିକ୍ଷା ସଂପର୍କୀୟ ସଦ୍ୟ ପ୍ରକାଶିତ ପୁସ୍ତକ ଓ ପତ୍ରିକାଗୁଡ଼ିକର ମଧ୍ୟ ସମୀକ୍ଷା କରାଯାଉଥିଲା ।

ଏଠାରେ ଉଲ୍ଲେଖଯୋଗ୍ୟ ଯେ ପ୍ରଫେସର ଦାଶ ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦରେ ଅବସ୍ଥାପିତ ଥିବା ସମୟରେ ପତ୍ରିକା ଦୁଇଟିର ନିୟମିତ ପ୍ରକାଶନ

ଉପରେ ବିଶେଷ ଗୁରୁତ୍ୱ ଦେଉଥିଲେ । ସେ ସମୟରେ ଏଇ ତ୍ରୈମାସିକ ପତ୍ରିକା ମାର୍ଚ୍ଚ, ଜୁନ, ସେପ୍ଟେମ୍ବର ଏବଂ ଡିସେମ୍ବର ମାସରେ ପ୍ରକାଶିତ ହେଉଥିଲା । ଏତଦ୍‌ବ୍ୟତୀତ ପ୍ରତିବର୍ଷ ପ୍ରତିଷ୍ଠାନର ବାର୍ଷିକ ରିପୋର୍ଟ ମଧ୍ୟ ପ୍ରକାଶିତ କରାଯାଇ ଅନୁଷ୍ଠାନର କାର୍ଯ୍ୟାବଳୀ ସଂପର୍କରେ ଆଲୋକପାତ କରୁଥିଲା ।

## ପରିଷଦର ବିଭିନ୍ନ ପ୍ରକାଶନର ପ୍ରଦର୍ଶନ

ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦର ବିଭିନ୍ନ ବିଭାଗର ପ୍ରକାଶନଗୁଡ଼ିକର ପ୍ରଦର୍ଶନ ଶିକ୍ଷକ ଶିକ୍ଷା ନିର୍ଦ୍ଦେଶାଳୟର ସଭାଗୃହରେ ପ୍ରଦର୍ଶନ କରାଯାଉଥିଲା । ପରିଷଦକୁ ୧୮ ଜୁନ୍, ୧୯୮୫ ମସିହାରେ ଭାରତ ସରକାରଙ୍କ ଶିକ୍ଷା ମନ୍ତ୍ରାଳୟର ତତ୍‌କାଳୀନ ଯୁଗ୍ମ ସଚିବ ପି.କେ ପଟ୍ଟନାୟକ ପରିଦର୍ଶନରେ ଆସିଥିଲେ । ସେ ଏହିସବୁ ପ୍ରକାଶନ ଦେଖି ସନ୍ତୋଷ ପ୍ରକାଶ କରିଥିଲେ ।

ସେହିପରି ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦକୁ ଭାରତ ସରକାର ଓ ରାଜ୍ୟ ସରକାରଙ୍କ ବିଭିନ୍ନ ଅଧିକାରୀ ଓ ବିଶେଷଜ୍ଞଗଣ ବିଭିନ୍ନ ସମୟରେ ପରିଦର୍ଶନରେ ଆସି ପରିଷଦର ବିଭିନ୍ନ ବିଭାଗର ପ୍ରଦର୍ଶିତ ପତ୍ରପତ୍ରିକା ଓ ପୁସ୍ତକ ଦେଖି ସେଗୁଡ଼ିକ ଉନ୍ନତମାନର ବୋଲି ମତାମତ ଦେଉଥିଲେ ।

## ପ୍ରାକ୍-ବିଦ୍ୟାଳୟ ଶିକ୍ଷା ସଂପର୍କୀୟ କାର୍ଯ୍ୟକ୍ରମ

ବିଦ୍ୟାଳୟକୁ ଆସିବା ପୂର୍ବରୁ ଶିଶୁମାନଙ୍କୁ ମାନସିକ ସ୍ତରରେ ପ୍ରସ୍ତୁତ କରିବାର ଆବଶ୍ୟକତା ଅଛି । ସେଥିପାଇଁ ରାଜ୍ୟର ପରିବେଶ, ପିଲାମାନଙ୍କର ମାନସିକସ୍ଥିତି, ଗୀତ, କବିତା ପ୍ରତି ଆଗ୍ରହ ସୃଷ୍ଟି କରିବା ନିମନ୍ତେ ଓ ତତ୍ ସଂପର୍କୀୟ ଗବେଷଣା ନିମନ୍ତେ ଅନୁକୂଳ ବାତାବରଣର ଆୟମାରମ୍ଭ ନିମନ୍ତେ ପ୍ରଫେସର ଦାଶ ରାଜ୍ୟ ଶିକ୍ଷା ଓ ଗବେଷଣା ପରିଷଦ ମଧ୍ୟରେ ପ୍ରାକ୍ ବିଦ୍ୟାଳୟ ଏବଂ ଶିଶୁର ପ୍ରାଥମିକ ଶିକ୍ଷା କାର୍ଯ୍ୟ ତଦାରଖ କରିବା ନିମନ୍ତେ ଏଇ ସ୍ୱତନ୍ତ୍ର ବିଭାଗ ଖୋଲିଥିଲେ । ଏହି ବିଭାଗ ଆନୁକୂଲ୍ୟରେ ୟୁନିସେଫ୍‌ର ପ୍ରାକ୍-ଶୈଶବ ଶିକ୍ଷା ସଂପର୍କୀୟ ବିଭିନ୍ନ ପୁସ୍ତକ ଓ ଶିକ୍ଷଣ ସାମଗ୍ରୀ ପ୍ରସ୍ତୁତ କରାଯାଇଥିଲା ।

ଏହି ପ୍ରକଳ୍ପ ଯେଉଁସବୁ ଲକ୍ଷ୍ୟ ନେଇ କାର୍ଯ୍ୟକାରୀ କରାଯାଇଥିଲା ସେଗୁଡ଼ିକ ହେଲା :

– ଆଦ୍ୟ ଶୈଶବ ଶିକ୍ଷାରେ ନିୟୋଜିତ ଶିକ୍ଷକ ଶିକ୍ଷିକାମାନଙ୍କ ନିର୍ଦ୍ଦେଶନା ନିମନ୍ତେ ଉପଯୁକ୍ତ ଶିକ୍ଷଣ ସାମଗ୍ରୀ ପ୍ରସ୍ତୁତ କରିବା ;

– ଆଦ୍ୟ ଶୈଶବ ଶିକ୍ଷାର ଶିକ୍ଷକ ଶିକ୍ଷୟିତ୍ରୀମାନଙ୍କୁ ସ୍ୱଳ୍ପକାଳୀନ ଓ ଦୀର୍ଘକାଳୀନ ପ୍ରଶିକ୍ଷଣ ପ୍ରଦାନ କରିବା ସହିତ ଏହି କାର୍ଯ୍ୟକ୍ରମ ସହିତ ସଂଶ୍ଳିଷ୍ଟ ସୁପରଭାଇଜର ଏବଂ ପ୍ରଶାସକଙ୍କୁ କାର୍ଯ୍ୟକ୍ରମର ପଦ୍ଧତି, ଧାରା ଓ କାର୍ଯ୍ୟୋକାରିତା ସଂପର୍କରେ ଅବହିତ କରାଇବା;

– ବିଭାଗଦ୍ୱାରା ପ୍ରସ୍ତୁତ ଶିକ୍ଷଣ ସାମଗ୍ରୀଗୁଡ଼ିକର ମୂଲ୍ୟାୟନ କରିବା ସହିତ ଶିଶୁମାନଙ୍କ ଉପରେ ଏହାର ପ୍ରଭାବ କେତେଦୂର ପଡୁଅଛି, ସେ ସଂପର୍କରେ ଆକଳନ କରିବା ।

ଏହି ବିଭାଗ ଆନୁକୂଲ୍ୟରେ ସେତେବେଳେ ରାଜ୍ୟର ଶିଶୁ ଶିକ୍ଷା ଓ କାର୍ଯ୍ୟକ୍ରମ ସହିତ ସଂଶ୍ଳିଷ୍ଟ ବ୍ୟକ୍ତି ବିଶେଷଙ୍କ ସହାୟତାରେ ପ୍ରଫେସର ଦାଶ ପ୍ରାକ୍ ଶୈଶବ ଶିକ୍ଷାର୍ଥୀମାନଙ୍କ ଉପଯୋଗୀ ସୁନ୍ଦର ସୁନ୍ଦର ଗଳ୍ପ, କବିତା ବହି, କ୍ଷୁଦ୍ର କ୍ଷୁଦ୍ର ମନୋଲୋଭା ଶିଶୁ ଗୀତ ପୁସ୍ତକ, ହାତ ତିଆରି ଖେଳନାମାନ ପ୍ରସ୍ତୁତ କରାଇଥିଲେ । ସେ ସମୟରେ ଯେଉଁ ବିଶେଷଜ୍ଞମାନେ ଏହି କାର୍ଯ୍ୟକ୍ରମରେ ସହାୟତାର ହାତ ବଢ଼ାଇଥିଲେ, ସେମାନଙ୍କ ମଧ୍ୟରେ ଥିଲେ ରାମପ୍ରସାଦ ମହାନ୍ତି, ବାମନ ଚରଣ ମିଶ୍ର, ଜୟକୃଷ୍ଣ ସାହୁ, ଦେବରାଜ ସାମନ୍ତରାୟ, ଗୋଲକ ବିହାରୀ ମାନଧାତା, ଡକ୍ଟର ଜଗନ୍ନାଥ ମହାନ୍ତି, ଡକ୍ଟର ଭାଗ୍ୟଧର ମହାନ୍ତି, ଇନ୍ଦୁଭୂଷଣ କର, ବାବା ବୈଦ୍ୟନାଥ ପାଢ଼ୀ, ଡକ୍ଟର ପୂର୍ଣ୍ଣଚନ୍ଦ୍ର ମିଶ୍ର ପ୍ରମୁଖ ବ୍ୟକ୍ତିବିଶେଷ ।

ପ୍ରଫେସର ଦାଶ କିପରି ପ୍ରାକ୍ ଶୈଶବ ପ୍ରକଳ୍ପଗୁଡ଼ିକୁ ତାଙ୍କ ସହକର୍ମୀମାନଙ୍କ ମତାମତକୁ ସମ୍ମାନ ଜଣାଇ କାର୍ଯ୍ୟ କରାଉଥିଲେ ସେ ସଂପର୍କରେ ଦଶବର୍ଷରୁ ଉର୍ଦ୍ଧ୍ୱକାଳ ତାଙ୍କ ନିକଟରେ କାର୍ଯ୍ୟ କରିଥିବା ଅଧ୍ୟାପକ ଡକ୍ଟର ଭାଗ୍ୟଧର ମହାନ୍ତି କହନ୍ତି :

"ଏହି ପ୍ରକଳ୍ପ ଆରମ୍ଭ ହେଲାବେଳକୁ ମୁଁ ଓ ଅଧ୍ୟାପକ ପୂର୍ଣ୍ଣଚନ୍ଦ୍ର ମିଶ୍ର ଦାୟିତ୍ୱରେ ଥିଲୁ । ସେତେବେଳେ ଆମ ଓଡ଼ିଶାରେ ୧୮୫୫ଟି କେନ୍ଦ୍ର ୫ଟି ଆଦିବାସୀ ବହୁଳ ଜିଲ୍ଲାରେ ଖୋଲିବାକୁ ମୁଁ ପ୍ରସ୍ତାବ ଦେଇଥିଲି । ପ୍ରଫେସର ଦାଶ ଆମ ପ୍ରସ୍ତାବ ଦେଖି କହିଲେ, *"ଆରେ, ଅନ୍ୟ ରାଜ୍ୟ ୧୦୦ଟି କରି କେନ୍ଦ୍ର ଖୋଲୁଥିବାବେଳେ ତୁମେସବୁ ଏତେ କେନ୍ଦ୍ର ଚଳାଇ ପାରିବ ତ ?"* ଆମେ କଥା ଦେଲୁ ପାରିବୁ । ଖାଲି ପାରିଲୁ ନାହିଁ, ତାଙ୍କ ଦିଗ୍‌ଦର୍ଶନରେ ଆମ ରାଜ୍ୟ ପ୍ରକଳ୍ପ ପରିଚାଳନା ଓ ତତ୍‌ଜନିତ ଫଳାଫଳରେ ସମଗ୍ର ଭାରତ ବର୍ଷରେ ପ୍ରଥମ ହେଲା ।" (ଅର୍ଘ୍ୟ – ପୃଷ୍ଠା ୩୭, ୨୦୧୩)

**ଶିକ୍ଷାରେ ଏମ୍.ଏ ପାଠ୍ୟକ୍ରମ**

ସତୁରି ଦଶକରେ ଆମ ରାଜ୍ୟରେ ଶିକ୍ଷା ବିଷୟରେ ଏମ୍.ଏ. ଅଧ୍ୟୟନ କରିବାର କୌଣସି ସୁବିଧା ସୁଯୋଗ ନ ଥିଲା । ଏହି ଦଶକର ଦ୍ୱିତୀୟାର୍ଦ୍ଧରେ ରାଜ୍ୟର କେତେଜଣ ଛାତ୍ର କୁରୁକ୍ଷେତ୍ର ବିଶ୍ୱବିଦ୍ୟାଳୟରେ ଶିକ୍ଷାରେ ଏମ୍.ଏ. ଅଧ୍ୟୟନ କଲେ । ଏପରି ଏକ ସ୍ଥିତି ଶିକ୍ଷାବିତ୍ ପ୍ରଫେସର ଦାଶଙ୍କ ମନକୁ ଆନ୍ଦୋଳିତ କରିଥିଲା । ସେ ୧୯୭୪ ମସିହାରେ ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦର ନିର୍ଦ୍ଦେଶକ ହେଲା ପରେ ଏହି ନିର୍ଦ୍ଦେଶାଳୟର ଏକ ସ୍ୱତନ୍ତ୍ର ବିଭାଗ ଭାବେ ତତ୍କାଳୀନ ବି.ଡ଼ି.ଓ ପ୍ରଶିକ୍ଷଣ କେନ୍ଦ୍ର ପରିସର ମଧ୍ୟରେ ରାଜ୍ୟ ସରକାରଙ୍କ ଅନୁମୋଦନ କ୍ରମେ ଓ ଉତ୍କଳ ବିଶ୍ୱବିଦ୍ୟାଳୟ ଆନୁକୂଲ୍ୟରେ ଶିକ୍ଷାରେ ସ୍ନାତକୋତ୍ତର ଡିଗ୍ରୀ ଖୋଲିବାକୁ ସମର୍ଥ ହୋଇଥିଲେ ।

ସେ ଏହି ପାଠ୍ୟକ୍ରମର ପ୍ରତିଷ୍ଠାତା ନିର୍ଦ୍ଦେଶକ ହୋଇଥିଲେ ମଧ୍ୟ ଏହି ପାଠ୍ୟକ୍ରମ ଯେ ଉତ୍କଳ ବିଶ୍ୱବିଦ୍ୟାଳୟ ଅଧୀନରେ ରହିବା ଆବଶ୍ୟକ ତାହା ଅନୁଭବ କରିଥିଲେ । ଏହା ଫଳରେ ଏମ୍.ଏ (ଶିକ୍ଷା) ଉତ୍କଳ ବିଶ୍ୱବିଦ୍ୟାଳୟକୁ ସ୍ଥାନାନ୍ତର ହେବା ନିମନ୍ତେ ଆବଶ୍ୟକ ନିର୍ଦ୍ଦେଶନାମା ବାହାରି ଥିଲା । ତଦନୁଯାୟୀ ଶିକ୍ଷାଦାନ ନିମନ୍ତେ ଆବଶ୍ୟକ ଅଧ୍ୟାପକଙ୍କୁ ସେଠାରେ ଅବସ୍ଥାପିତ କରାଯାଇ ଉତ୍କଳ ବିଶ୍ୱବିଦ୍ୟାଳୟକୁ ସଂପୃକ୍ତ ପାଠାଗାର ଓ ଅନ୍ୟାନ୍ୟ ଉପକରଣ ସ୍ଥାନାନ୍ତର ହେବା ନିମନ୍ତେ ଆବଶ୍ୟକ ଆଦେଶନାମା ମଧ୍ୟ ବାହାରି ଥିଲା । ମାତ୍ର କେତେକ ବ୍ୟକ୍ତିଙ୍କ ପ୍ରତିକୂଳ ମନୋଭାବ ଯୋଗୁଁ ଏହା ସମ୍ଭବପର ହେଲା ନାହିଁ । ଅବଶେଷରେ ୧୯୮୫ ମସିହାରେ ଶିକ୍ଷାର ସ୍ନାତକୋତ୍ତର ବିଭାଗ ରାଜ୍ୟ ଶିକ୍ଷା ପ୍ରଶିକ୍ଷଣ ଓ ଗବେଷଣା ପରିଷଦରୁ ଉଠିଗଲା ।

ଭାରତବର୍ଷର ଅଧିକାଂଶ ବିଶ୍ୱବିଦ୍ୟାଳୟରେ ଶିକ୍ଷାରେ ଏମ୍.ଏ. ପାଠ୍ୟକ୍ରମ ଥିଲାବେଳେ ଆଜି ଉତ୍କଳ ବିଶ୍ୱବିଦ୍ୟାଳୟ ଓ ରାଜ୍ୟର ଅନ୍ୟ ବିଶ୍ୱବିଦ୍ୟାଳୟ ପଛରେ ପଡ଼ିଅଛି । ଏପରି ସ୍ଥିତିକୁ ସଂପ୍ରତି ଦେଶର ବିଭିନ୍ନ ଶିକ୍ଷାବିତ୍ ନାପସନ୍ଦ କରୁଛନ୍ତି । ମାତ୍ର ପ୍ରଫେସର ଦାଶ ଯେଉଁ ପାଠ୍ୟକ୍ରମର ଚାରା ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦରେ ରୋପଣ କରିଥିଲେ ତାହା ଆଜି ରାଜ୍ୟର ଅଗ୍ରଗାମୀ ମହାବିଦ୍ୟାଳୟମାନଙ୍କରେ ଖୋଲାଯାଇଅଛି ।

**ପାଠ୍ୟକ୍ରମ ଓ ପାଠ୍ୟପୁସ୍ତକ ପ୍ରସ୍ତୁତି**

ରାଜ୍ୟର ପ୍ରାଥମିକ ଶିକ୍ଷାସ୍ତରରେ ପାଠ୍ୟକ୍ରମ ଓ ପାଠ୍ୟପୁସ୍ତକ ପ୍ରସ୍ତୁତି କ୍ଷେତ୍ରରେ ପ୍ରଫେସର ଦାଶ ରାଜ୍ୟଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦ ପାଇଁ ଏକ ନୂତନ ଅଧ୍ୟାୟ ସୃଷ୍ଟି କରିଥିଲେ । ପୂର୍ବରୁ ରାଜ୍ୟର ପ୍ରାଥମିକ ସ୍ତରର ସିଲାବସ ଓ ପାଠ୍ୟପୁସ୍ତକ ମାଧ୍ୟମିକ

ଶିକ୍ଷା ପରିଷଦ, ଓଡ଼ିଶା ରାଜ୍ୟ ସରକାରଙ୍କ ପାଇଁ ପ୍ରସ୍ତୁତ କରୁଥିଲେ । ଏହି ସମୟରେ ସମଗ୍ର ଦେଶ ପାଇଁ ୧୯୮୬ ମସିହାରେ ନୂତନ ଶିକ୍ଷାନୀତି ଭାରତ ସରକାର ଲାଗୁ କଲେ । ଏହି ଶିକ୍ଷାନୀତିର ସୁପାରିଶ ଓ ଆଧାର ଅନୁଯାୟୀ ପ୍ରତ୍ୟେକ ରାଜ୍ୟରେ ନୂତନ ସିଲାବସ ଓ ପାଠ୍ୟପୁସ୍ତକ ପ୍ରସ୍ତୁତିର ଆବଶ୍ୟକତା ପଡ଼ିଲା । ଏହି ଅବସରରେ ପ୍ରଫେସର ଦାଶ ତତ୍‌କାଳୀନ ଶିକ୍ଷାସଚିବ ପ୍ୟାରୀମୋହନ ମହାପାତ୍ର ଓ ଶିକ୍ଷାମନ୍ତ୍ରୀ ଯଦୁନାଥ ଦାସ ମହାପାତ୍ରଙ୍କୁ ବୁଝାଇ ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦ ଯେପରି ପ୍ରାଥମିକ ସ୍ତରର ପାଠ୍ୟକ୍ରମ ପ୍ରସ୍ତୁତି କରି ପାରିବ, ସେଥିପାଇଁ ସୁଯୋଗ ସୃଷ୍ଟି କରିଥିଲେ । ନିଷ୍ପତ୍ତି ଅନୁଯାୟୀ ୮ମ ଶ୍ରେଣୀରୁ ଦଶମ ଶ୍ରେଣୀ ପର୍ଯ୍ୟନ୍ତ ପାଠ୍ୟପୁସ୍ତକ ମାଧ୍ୟମିକ ଶିକ୍ଷା ପରିଷଦ, ଓଡ଼ିଶା ପ୍ରସ୍ତୁତ କରିବେ । ପ୍ରଥମରୁ ସପ୍ତମ ଶ୍ରେଣୀ ପର୍ଯ୍ୟନ୍ତ ପାଠ୍ୟପୁସ୍ତକ ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦ, ଓଡ଼ିଶା ପ୍ରସ୍ତୁତ କରିବେ ।

ଏ ସଂପର୍କୀୟ ସରକାରୀ ନିର୍ଦ୍ଦେଶନାମା ଆସିଲା ପରେ ରାଜ୍ୟ ଶିକ୍ଷା ଗବେଷଣା ପ୍ରଶିକ୍ଷଣ ପରିଷଦରେ ନୂତନ ଭାବେ ଗଠିତ ପାଠ୍ୟକ୍ରମ ବିଭାଗ କାର୍ଯ୍ୟକ୍ଷମ ହେଲା । ଏହି ବିଭାଗର ଦାୟିତ୍ୱ ଡକ୍ଟର ଜଗନ୍ନାଥ ମହାନ୍ତିଙ୍କ ଉପରେ ନ୍ୟସ୍ତ କରାଯାଇଥିଲା । ପରବର୍ତ୍ତୀ ସମୟରେ ସମ୍ବଲପୁର ସରକାରୀ ପ୍ରଶିକ୍ଷଣ ମହାବିଦ୍ୟାଳୟରୁ ସ୍ଥାନାନ୍ତରିତ ହୋଇ ଅଧ୍ୟାପିକା ଡକ୍ଟର ଚାରୁବାଳା ମହାନ୍ତି ନୂତନ ଶିକ୍ଷାନୀତି ଅନୁଯାୟୀ ରାଜ୍ୟ ପାଇଁ ବିଶେଷଜ୍ଞମାନଙ୍କ ସହାୟତାରେ ନୂତନ ସିଲାବସ ପ୍ରସ୍ତୁତି କାର୍ଯ୍ୟକ୍ରମରେ ଯୋଗଦାନ କରିଥିଲେ । ଏହାଫଳରେ ସ୍ୱଳ୍ପ ସମୟ ମଧ୍ୟରେ ପ୍ରଫେସର ଦାଶଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ନୂତନ ଶିକ୍ଷାନୀତି, ୧୯୮୬ ଅନୁଯାୟୀ ରାଜ୍ୟ ପାଇଁ ଏକ ସିଲାବସ ପ୍ରସ୍ତୁତ ହୋଇ ପାରିଥିଲା ।

ପ୍ରାଥମିକ ସ୍ତରରେ ପରିଷଦଦ୍ୱାରା ରାଜ୍ୟ ପାଇଁ ଏକ ନୂତନ ସିଲାବସ ଓ ବିଭିନ୍ନ ଶ୍ରେଣୀ ପାଇଁ ପାଠ୍ୟପୁସ୍ତକ ପ୍ରସ୍ତୁତ କରିବା ଆୟାସ ସାଧ୍ୟ କାର୍ଯ୍ୟ ନ ଥିଲା । କାରଣ ମାଧ୍ୟମିକ ଶିକ୍ଷା ପରିଷଦର ଢାଞ୍ଚା ସଦୃଶ ଏଠାରେ ବିଭିନ୍ନ ବିଷୟ ଭିତ୍ତିକ ବିଶେଷଜ୍ଞ ନ ଥିଲେ । ତଦନୁଯାୟୀ ଶ୍ରେଣୀଭିତ୍ତିକ ପାଠ୍ୟପୁସ୍ତକ ପ୍ରସ୍ତୁତ ନିମନ୍ତେ ଯେଉଁସବୁ ମୌଳିକ ସୁବିଧାର ଆବଶ୍ୟକତା ଥିଲା ତା'ର ଅଭାବ ମଧ୍ୟ ଅନୁଭୂତ ହୋଇଥିଲା । ଏହିସବୁ ଅଭାବ ଅସୁବିଧାକୁ ଏଡ଼ାଇ ଦେଇ ବିଜ୍ଞ ବିଶେଷଜ୍ଞମାନଙ୍କ ସାହାଯ୍ୟ ନେଇ ପ୍ରଫେସର ଦାଶଙ୍କ ଅମଳରେ ପ୍ରାଥମିକ ଶିକ୍ଷାର ସିଲାବସ ପ୍ରସ୍ତୁତ ହୋଇଥିଲା । ଏହା ଫଳରେ ରାଜ୍ୟର ପ୍ରତ୍ୟେକ ପ୍ରାଥମିକ ବିଦ୍ୟାଳୟର ଶିକ୍ଷକ ଶିକ୍ଷୟିତ୍ରୀ, ଅଭିଭାବକ ଓ ପିଲାମାନଙ୍କ

ପାଖରେ ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦ ଆଉ ଅପହଞ୍ଚ ଇଲାକାରେ ରହିଲା ନାହିଁ ।

ପ୍ରାରମ୍ଭିକ ସ୍ତରରେ ପ୍ରସ୍ତୁତ କେତେକ ପାଠ୍ୟପୁସ୍ତକରେ ତଥ୍ୟଗତ ତ୍ରୁଟି ଓ ବିଷୟଗତ ତ୍ରୁଟି ଦେଖାଦେଲା । ଏହା ପ୍ରଫେସର ଦାଶ ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦରୁ ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର, ଓଡ଼ିଶାକୁ ୧୯୮୮ ମସିହା ସେପ୍ଟେମ୍ବର ମାସରେ ଅବସ୍ଥାପିତ ହେଲା ପରେ ଜଣାପଡ଼ିଥିଲା । ସେ ସମୟରେ ବିଶିଷ୍ଟ ଶିକ୍ଷାବିତ୍ ରଜତ କୁମାର କର ରାଜ୍ୟ ଶିକ୍ଷା ଗବେଷଣା ପରିଷଦର ନିର୍ଦ୍ଦେଶକ ଥିଲେ । ଯୁଦ୍ଧକାଳୀନ ଭିତ୍ତିରେ ସେହିସବୁ ତ୍ରୁଟିସବୁ ସଂଶୋଧନ କରାଗଲା । ସମସ୍ତ ତଥ୍ୟ ଓ ବିଷୟକୁ ଟିକିନିଖି ପରଖି ପ୍ରସ୍ତୁତ ପାଣ୍ଡୁଲିପିଗୁଡ଼ିକୁ ପ୍ରକାଶନ ନିମନ୍ତେ ରାଜ୍ୟ ପାଠ୍ୟପୁସ୍ତକ ପ୍ରକାଶନ ସଂସ୍ଥାକୁ ଛାଡ଼ିବାକୁ ନିର୍ଦ୍ଦେଶକ କର ଏକ ସ୍ୱତନ୍ତ୍ର ସଂପାଦନା ମଣ୍ଡଳୀ ନିଯୁକ୍ତ କଲେ । ଏହିସବୁ ମଣ୍ଡଳୀରେ ବିଜ୍ଞାନ ବିଭାଗର ମୁଖ୍ୟ ଡକ୍ଟର ବଂଶୀଧର ତ୍ରିପାଠୀ, ଡକ୍ଟର ଚାରୁବାଳା ମହାନ୍ତି, ଡକ୍ଟର ଦିଗରାଜ ବ୍ରହ୍ମା ଆଦି ରହିଥିଲେ ।

ଏତଦ୍‌ବ୍ୟତୀତ ପରେ +୨ ସ୍ତରୀୟ ବୃତ୍ତିଗତ ଶିକ୍ଷା କାର୍ଯ୍ୟକ୍ରମ ନିମନ୍ତେ ପ୍ରଫେସର ଦାଶଙ୍କ ସମୟରେ ରାଜ୍ୟ ଶିକ୍ଷା ଗବେଷଣା ପରିଷଦରେ ଏକ ସ୍ୱତନ୍ତ୍ର ବିଭାଗ ଖୋଲାଯାଇଥିଲା । ଏହି ବିଭାଗ ଦାୟିତ୍ୱରେ ରାଜ୍ୟର ବିଶିଷ୍ଟ ଶିକ୍ଷାବିତ୍ ପ୍ରଫେସର ପୂର୍ଣ୍ଣଚନ୍ଦ୍ର ରାଉତ ଓ ପ୍ରଫେସର ପ୍ରଫୁଲ୍ଲ ଚନ୍ଦ୍ର ମହାପାତ୍ର ବିଭିନ୍ନ ସମୟରେ ଦାୟିତ୍ୱ ନିର୍ବାହ କରିଥିଲେ । ସେମାନେ +୨ ପାଠ୍ୟକ୍ରମର ବିଭିନ୍ନ ପାଠ୍ୟପୁସ୍ତକର ପାଣ୍ଡୁଲିପି ଓ ପୁସ୍ତକ ପ୍ରକାଶନର ଦାୟିତ୍ୱ ମଧ୍ୟ ନେଇଥିଲେ । ଏହି ବିଭାଗର କାର୍ଯ୍ୟ +୨ ଧନ୍ଦାମୂଳକ ପାଠ୍ୟକ୍ରମ ପରିଚାଳନା କ୍ଷେତ୍ରରେ ଦେଶରେ ସୁନାମ ଅର୍ଜନ କରିଥିଲା ।

ସେ ଯାହାହେଉନା କାହିଁକି ପ୍ରଫେସର ଦାଶଙ୍କ ଦୂରଦୃଷ୍ଟି ଓ କାର୍ଯ୍ୟକ୍ରମ ପରିଚାଳନାର ଅନୁଭୂତି ନେଇ ଅଶୀ ଦଶକରେ ଆଗେଇ ଚାଲିଥିବା ପାଠ୍ୟକ୍ରମ ଓ ପାଠ୍ୟପୁସ୍ତକ ପ୍ରଣୟନ ବିଭାଗ ସଂପ୍ରତି ରାଜ୍ୟ ପାଇଁ ଶିକ୍ଷାର୍ଥୀ କୈନ୍ଦ୍ରିକ ପାଠ୍ୟପୁସ୍ତକ ପ୍ରକାଶ କରୁଅଛି ।

### ଶିକ୍ଷା ଔଦ୍ୟୋଗିକ ସେଲ୍ (Educational Technology Cell)

ରାଜ୍ୟ ସରକାରଙ୍କ ଦ୍ୱାରା ତତ୍‌କାଳୀନ ଡି.ପି.ଆଇ କାର୍ଯ୍ୟାଳୟରେ ୧୯୭୪ ମସିହାରେ ଭାରତ ସରକାରଙ୍କ ଶିକ୍ଷା ମନ୍ତ୍ରାଳୟଦ୍ୱାରା ଶିକ୍ଷା ଔଦ୍ୟୋଗିକ ସେଲ୍ ପ୍ରତିଷ୍ଠା କରାଯାଇଥିଲା । ଏହା ମୁଖ୍ୟତଃ ଶିକ୍ଷାର ବିଭିନ୍ନ ସ୍ତରରେ ପ୍ରଯୁକ୍ତି ବିଦ୍ୟାର ପ୍ରୟୋଗ ନିମନ୍ତେ କାର୍ଯ୍ୟ କରିବ ବୋଲି ଆଶା କରାଯାଇଥିଲା । ସେଥିପାଇଁ ଏହି ବିଭାଗ ଆନୁକୂଲ୍ୟରେ ଗଣ ମାଧ୍ୟମ ଏବଂ ଶିକ୍ଷା ବୈଷୟିକ ବିଜ୍ଞାନ ଯଥା : ଟେପ୍‌ରେକର୍ଡ଼ର,

ରେଡ଼ିଓ, ଦୃଶ୍ୟଶ୍ରାବ୍ୟ ଉପକରଣର ପ୍ରୟୋଗ, ଶିକ୍ଷା ଟେଲିଭିଜନ କାର୍ଯ୍ୟକ୍ରମ ପ୍ରସ୍ତୁତି ଉପରେ ବିଶେଷ ଗୁରୁତ୍ୱ ଦିଆଯାଉଥିଲା ।

ଉପଗ୍ରହ ଯୋଗାଯୋଗ ପରୀକ୍ଷଣ ମାଧ୍ୟମରେ ଓଡ଼ିଶା ଶିକ୍ଷା ଟେଲିଭିଜନ କାର୍ଯ୍ୟକ୍ରମ ୧୫ ଅଗଷ୍ଟ, ୧୯୭୫ ମସିହାରୁ ୩୧ ଜୁଲାଇ, ୧୯୭୬ ପର୍ଯ୍ୟନ୍ତ ଢେଙ୍କାନାଳ, ସମ୍ବଲପୁର ଏବଂ ଫୁଲବାଣୀ ଜିଲ୍ଲାର ପ୍ରାଥମିକ ବିଦ୍ୟାଳୟ ନିମନ୍ତେ ଉପଲବ୍ଧ ଥିଲା । ପରବର୍ତ୍ତୀ ସମୟରେ ୩୦ ଏପ୍ରିଲ, ୧୯୭୮ ମସିହାରୁ ସମ୍ବଲପୁରଠାରେ ଏକ ଷ୍ଟୁଡ଼ିଓ ଉପଲବ୍ଧ ହେଉଥିବା ହେତୁ ଏହି ଆଞ୍ଚଳିକ କାର୍ଯ୍ୟକମ ୨୩୭ଟି ପ୍ରାଥମିକ ବିଦ୍ୟାଳୟ ନିମନ୍ତେ ଉଦ୍ଦିଷ୍ଟ ଥିଲା ।

୧୯୭୮ ମସିହାରେ ପ୍ରଫେସର ଶରତ ଚନ୍ଦ୍ର ଦାଶ ରାଜ୍ୟ ଶିକ୍ଷା ପ୍ରତିଷ୍ଠାନର ନିର୍ଦ୍ଦେଶକ ଭାବେ ଯୋଗଦାନ କଲା ପରେ ଭାରତ ସରକାରଙ୍କଦ୍ୱାରା ସେ ସମୟରେ କରାଯାଉଥିବା 'ଇନସାଟ ଫର ଏଜୁକେସନ' କାର୍ଯ୍ୟକ୍ରମର ସୁଫଳ ଯେପରି ଓଡ଼ିଶାର ପ୍ରାଥମିକ ସ୍ତରର ଶିକ୍ଷାର୍ଥୀ ଓ ଶିକ୍ଷକମାନେ ପାଇପାରିବେ ସେଥିପାଇଁ ବିଶେଷ ଯତ୍ନ କରିଥିଲେ । ତାଙ୍କ ଉଦ୍ୟମ ଫଳରେ ସମଗ୍ର ଭାରତ ବର୍ଷରେ ମନୋନୟନ ହୋଇଥିବା ଛଅଟି ରାଜ୍ୟ ମଧ୍ୟରେ ଓଡ଼ିଶା ସ୍ଥାନ ପାଇଥିଲା । ଏହା ଥିଲା ରାଜ୍ୟ ପାଇଁ ଏକ ଗର୍ବ ଓ ଗୌରବର ବିଷୟ । ପୂର୍ବରୁ 'INSAT -1B' ର ସୁଫଳ ସମ୍ବଲପୁର ଓ ବଲାଙ୍ଗୀର ଜିଲ୍ଲାର ପ୍ରାଥମିକ ବିଦ୍ୟାଳୟ ପାଇଥିଲାବେଳେ ଢେଙ୍କାନାଳ ଏହି କାର୍ଯ୍ୟକ୍ରମ ମଧ୍ୟକୁ ୧୦ ଅକ୍ଟୋବର, ୧୯୮୩ ମସିହାରେ ଅନ୍ତର୍ଭୁକ୍ତ ହୋଇଥିଲା ଏବଂ ଶିକ୍ଷା ଟେଲିଭିଜନ କାର୍ଯ୍ୟକ୍ରମ ଇନ୍‌ସାଟ୍ ମାଧ୍ୟମରେ ୨୪ ଅକ୍ଟୋବର, ୧୯୮୩ରୁ ୨୪ ଅକ୍ଟୋବର, ୧୯୮୫ ପର୍ଯ୍ୟନ୍ତ କାର୍ଯ୍ୟକାରୀ କରାଯାଇଥିଲା ।

ସେ ସମୟରେ ଏହି କାର୍ଯ୍ୟକ୍ରମ ଇନ୍‌ସାଟ୍ ମାଧ୍ୟମରେ କିପରି ଚାଲିଛି ତାହା ଅନୁଧ୍ୟାନ କରିବା ନିମନ୍ତେ ପ୍ରଫେସର ଦାଶଙ୍କ ତତ୍ତ୍ୱାବଧାନରେ 'A Case Study on One TV School' ଗବେଷଣା ପରିସର ମଧ୍ୟକୁ ଅଣାଯାଇଥିଲା । ଏହି ଗବେଷଣା ଅତାବିରା ଉଚ୍ଚ ପ୍ରାଥମିକ ବିଦ୍ୟାଳୟକୁ ନେଇ ସୀମିତ ଥିଲା । ଶିକ୍ଷାଦାନ ଓ ଶିକ୍ଷଣରେ ଶିକ୍ଷା ଟେଲିଭିଜନର ପ୍ରୟୋଗ କିପରି ସହାୟକ ହୋଇ ପାରିଅଛି, ତାହା ଏହି ଅନୁଧ୍ୟାନର ମୂଳ ଲକ୍ଷ୍ୟ ଥିଲା ।

ଏହି ଅନୁଧ୍ୟାନରୁ ଜଣାପଡ଼ିଥିଲା ଯେ ବିଦ୍ୟାଳୟରେ ଶିକ୍ଷା ଟେଲିଭିଜନ କାର୍ଯ୍ୟକ୍ରମ କରାଯାଉଥିବା ହେତୁ ପିଲାମାନଙ୍କ ନାମଲେଖା ପୂର୍ବ ବର୍ଷଗୁଡ଼ିକ ଅପେକ୍ଷା ଅଧିକ

ହେଉଥିଲା । ଅଧାରୁ ପାଠପଢ଼ା ଛାଡ଼ି ଚାଲିଯାଉଥିବା ପିଲାଙ୍କ ସଂଖ୍ୟା ମଧ୍ୟ ପୂର୍ବ ବର୍ଷଗୁଡ଼ିକ ତୁଳନାରେ ଯଥେଷ୍ଟ କମ୍ ଥିଲା ।

ଏତଦ୍‌ବ୍ୟତୀତ ପୂର୍ବବର୍ଷର ପରୀକ୍ଷାର ଫଳାଫଳ ଅପେକ୍ଷା ଶିକ୍ଷା ଟେଲିଭଜନ କାର୍ଯ୍ୟକ୍ରମ ଯୋଗୁଁ ପିଲାମାନଙ୍କର ପରୀକ୍ଷାଫଳ ସେହିବର୍ଷ ଗୁଣାତ୍ମକ ଭାବେ ଅପେକ୍ଷାକୃତ ଭଲ ହୋଇଥିଲା ।

ଭାରତ ସରକାରଙ୍କ ଶିକ୍ଷା ମନ୍ତ୍ରାଳୟଦ୍ୱାରା କରାଯାଇଥିବା ଇନ୍‌ସାଟ୍ ରାଜ୍ୟଗୁଡ଼ିକର କାର୍ଯ୍ୟକ୍ରମର ମୂଲ୍ୟାୟନ ଓ ତତ୍‌ସଂପର୍କୀୟ ପରିଚାଳନା କମିଟି (Steering Committee)ର ଆଲୋଚନା ଚକ୍ରରେ ପ୍ରଫେସର ଦାଶ ୯ ଅଗଷ୍ଟ ୧୯୮୫ରେ ଯୋଗଦାନ କରି କାର୍ଯ୍ୟକ୍ରମ ସଂପର୍କୀୟ ବହୁ ମୂଲ୍ୟବାନ ତଥ୍ୟ ଉପସ୍ଥାପିତ କରିଥିଲେ ।

ରାଜ୍ୟର ଶିକ୍ଷା ଔଦ୍ୟୋଗିକ କାର୍ଯ୍ୟକ୍ରମ ସଂପର୍କୀୟ ବିଭିନ୍ନ ଜାତୀୟ ସେମିନାରରେ ଡକ୍ଟର ଜଗନ୍ନାଥ ମହାନ୍ତି, ଡକ୍ଟର ପଦ୍ମଚରଣ ମହାନ୍ତି, ଡକ୍ଟର ଧ୍ରୁବଚରଣ ମିଶ୍ର ୧୯୮୫-୮୬ ଶିକ୍ଷାବର୍ଷରେ ଯୋଗଦାନ କରିଥିଲେ ।

## ରାଜ୍ୟ ଔଦ୍ୟୋଗିକ ପ୍ରତିଷ୍ଠାନର ପ୍ରଥମ ନିର୍ଦ୍ଦେଶକ

ପ୍ରଫେସର ଦାଶଙ୍କ ପ୍ରଚେଷ୍ଟାରେ ଭାରତ ସରକାରଙ୍କ ଉପଗ୍ରହ ଯୋଗାଯୋଗ (INSAT) କାର୍ଯ୍ୟକ୍ରମ, ୧୯୮୨ ଅନୁଯାୟୀ ପ୍ରାଥମିକ ଶିକ୍ଷା ସ୍ତରରେ ମନୋରଞ୍ଜନଭିତ୍ତିକ ଶିକ୍ଷା କାର୍ଯ୍ୟକ୍ରମ ପ୍ରଚାର ଓ ପ୍ରସାର କରିବା ନିମନ୍ତେ ଉଦ୍ୟମ କରାଯାଇଥିଲା । ଏହି ଉଦ୍ୟମର ଫଳସ୍ୱରୂପ ଭାରତ ସରକାର ଓଡ଼ିଶାରେ ଇଟିଭି ପ୍ରଡ଼କସନ୍ ସେଣ୍ଟର ନାମରେ ସୈନିକ ସ୍କୁଲ ଅଞ୍ଚଳରେ ଏକ କାର୍ଯ୍ୟାଳୟ ଖୋଲିଥିଲେ । ଓଡ଼ିଶାରେ ଏପରି ଏକ ସଂସ୍ଥା ଖୋଲିବା ନିମନ୍ତେ ତତ୍‌କାଳୀନ ଭାରତ ସରକାରଙ୍କ ମାନବ ସମ୍ବଳ ବିକାଶ ମନ୍ତ୍ରାଳୟର ଯୁଗ୍ମ ସଚିବ ପ୍ରସନ୍ନ କୁମାର ପଟ୍ଟନାୟକ, ଆଇ.ଏ.ଏସ୍ ଏବଂ ପ୍ରଫେସର ଦାଶଙ୍କ ସହଯୋଗ ବିଶେଷ ସହାୟକ ହୋଇଥିଲା । ଏ କ୍ଷେତ୍ରରେ ତତ୍‌କାଳୀନ ଶିକ୍ଷାସଚିବ ପ୍ୟାରୀମୋହନ ମହାପାତ୍ର ସମସ୍ତ ପ୍ରକାରର ପ୍ରଶାସନିକ ସୁବିଧା ସୁଯୋଗ ଯୋଗାଇ ଦେଇଥିଲେ । ତେଣୁ ଇଟିଭି ପ୍ରଡ଼କସନ୍ ସେଣ୍ଟର ନିମନ୍ତେ ଜମି ଅଧିଗ୍ରହଣଠାରୁ କାର୍ଯ୍ୟକ୍ରମ ପ୍ରସ୍ତୁତି ନିମନ୍ତେ ଏକ ସ୍ୱତନ୍ତ୍ର ଷ୍ଟୁଡ଼ିଓ ସହିତ କାର୍ଯ୍ୟାଳୟ ମଧ୍ୟ ସ୍ୱଳ୍ପ ସମୟ ମଧ୍ୟରେ କାର୍ଯ୍ୟକ୍ଷମ ହୋଇଥିଲା ।

ସେ ସମୟରେ ଭାରତ ସରକାର ଏପରି କେନ୍ଦ୍ର ଛଅଟି ରାଜ୍ୟରେ ଖୋଲିଥିଲେ । ସେହିସବୁ ରାଜ୍ୟ ହେଲା, ଆନ୍ଧ୍ର, ବିହାର, ଗୁଜୁରାଟ, ମହାରାଷ୍ଟ୍ର, ଓଡ଼ିଶା ଓ ଉତ୍ତର ପ୍ରଦେଶ । ପ୍ରାରମ୍ଭିକ ସ୍ତରରେ ଏହିସବୁ ନୂତନ ଔଦ୍ୟୋଗିକ ସଂସ୍ଥାର ପ୍ରଶାସନ ଦାୟିତ୍ୱ

ଭାରତ ସରକାର ସଂପୃକ୍ତ ରାଜ୍ୟର ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦ କିମ୍ବା କେତେକ ରାଜ୍ୟର ଶିକ୍ଷକ ଶିକ୍ଷା ନିର୍ଦ୍ଦେଶାଳୟକୁ ଦାୟିତ୍ୱ ଦେଇଥିଲେ ।

ଏହାଫଳରେ ଏପରି ଏକ ନୂତନ ବୈଦ୍ୟୁତିକ ଶିକ୍ଷାକେନ୍ଦ୍ର ପ୍ରତିଷ୍ଠା କ୍ଷେତ୍ରରେ ପ୍ରଫେସର ଦାଶଙ୍କ ଗୁରୁଦାୟିତ୍ୱ ଯଥେଷ୍ଟ ବଢ଼ି ଯାଇଥିଲା । ନୂତନଭାବେ ସୃଷ୍ଟି ହୋଇଥିବା ଏହି କେନ୍ଦ୍ର ପାଇଁ ଉପଯୁକ୍ତ ଓ ଯୋଗ୍ୟ ବ୍ୟକ୍ତିବିଶେଷଙ୍କୁ ନିଯୁକ୍ତି ନିମନ୍ତେ ସମସ୍ତ ଦାୟିତ୍ୱ ପ୍ରଫେସର ଦାଶଙ୍କ ଉପରେ ନ୍ୟସ୍ତ ହୋଇଥିଲା । ସେଥିପାଇଁ ସେ ଏକ ନିରପେକ୍ଷ ଚୟନ କମିଟି ଗଢ଼ି କାର୍ଯ୍ୟକ୍ରମ ପ୍ରସ୍ତୁତ ଅଧିକାରୀ, ଲେଖା ପ୍ରସ୍ତୁତକାରୀ, ବୈଷୟିକ ବିଭାଗର କର୍ମଚାରୀମାନଙ୍କୁ ସାକ୍ଷାତକାର ମାଧ୍ୟମରେ ଚୟନ କରୁଥିଲେ । ବାହ୍ୟ ହସ୍ତକ୍ଷେପକୁ ଏଡାଇ ଦେବା ପାଇଁ ସେ ଯେଉଁଦିନ ସାକ୍ଷାତକାର ନେଉଥିଲେ ପ୍ରାୟତଃ ସେହିଦିନ କୃତକାର୍ଯ୍ୟ ହୋଇଥିବା ପ୍ରାର୍ଥୀମାନଙ୍କ ତାଲିକା ପ୍ରକାଶ କରୁଥିଲେ । ଆବଶ୍ୟକସ୍ଥଳେ ସେହିଦିନ ମଧ୍ୟ ସେମାନଙ୍କୁ ନିଯୁକ୍ତି ପତ୍ର ଦିଆଯାଇଥିଲା । ଏତଦ୍‌ବ୍ୟତୀତ ଶିକ୍ଷା ଟେଲିଭିଜନ କେନ୍ଦ୍ରର ଶୈକ୍ଷିକ ପରିଚାଳନା ନିମନ୍ତେ ସେ ଓଡ଼ିଶାରୁ ଚାରିଜଣ ଅଧ୍ୟାପକଙ୍କୁ ଗ୍ରେଟବ୍ରିଟେନ୍‌ରେ ସ୍ୱତନ୍ତ୍ର ପ୍ରଶିକ୍ଷଣ ପାଇବା ନିମନ୍ତେ ମନୋନୀତ କରିଥିଲେ । ସେମାନଙ୍କ ମଧ୍ୟରେ ଥିଲେ ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦର ଅଧ୍ୟାପକ ଅମରେନ୍ଦ୍ର ପ୍ରସାଦ ଗିରି ଓ ପଦ୍ମଚରଣ ମହାନ୍ତି, ରେଭେନ୍‌ସା ମହାବିଦ୍ୟାଳୟର ଅଧ୍ୟାପକ ଚିଦାନନ୍ଦ ପାତ୍ର ଓ ସମ୍ବଲପୁର ପ୍ରଶିକ୍ଷଣ ମହାବିଦ୍ୟାଳୟର ଅଧ୍ୟାପକ ଦିଗରାଜ ବ୍ରହ୍ମା । ସେମାନେ ବିଲାତରେ ସ୍ୱତନ୍ତ୍ର ପ୍ରଶିକ୍ଷଣ ପାଇବା ପରେ ଏହି କେନ୍ଦ୍ରରେ ଅବସ୍ଥାପିତ ହୋଇଥିଲେ ।

ପ୍ରଫେସର ଦାଶ ଇଟିଭି ପ୍ରଡ଼କ୍‌ସନ ସେଣ୍ଟରର ନିର୍ଦ୍ଦେଶକ ଭାବେ ୧୯୮୨ ମସିହାର ଅୟମାରମ୍ଭଠାରୁ ୧୯୮୮ ମସିହା ଅକ୍ଟୋବର ମାସ ପର୍ଯ୍ୟନ୍ତ ଥିଲେ । ୧୯୮୬ ମସିହାରେ ପ୍ରବର୍ତ୍ତିତ ଜାତୀୟ ଶିକ୍ଷାନୀତି, ୧୯୮୬ ସ୍ୱଷ୍ଟ ଭାବରେ ସୂଚନା ଦେଇଥିଲେ ଯେ ଏକବିଂଶ ଶତାବ୍ଦୀର ଶିକ୍ଷା, ଶିକ୍ଷା ଔଦ୍ୟୋଗିକ କାର୍ଯ୍ୟକ୍ରମ ଉପରେ ପ୍ରତିଷ୍ଠିତ ହେବ । ସେହି ଦୃଷ୍ଟିକୋଣରୁ ଆମର ଶୈକ୍ଷିକ ଅନୁଷ୍ଠାନଗୁଡ଼ିକରେ ନୂତନ ବୈଷୟିକ ଜ୍ଞାନ ଓ କୌଶଳ ପ୍ରୟୋଗ କରିବାକୁ ପଡ଼ିବ । ଏହି ପୃଷ୍ଠଭୂମିକୁ ଆଖିରେ ରଖି ଶିକ୍ଷା ସଂପର୍କୀୟ ଉପାଦେୟ ଟେଲିଭିଜନ କାର୍ଯ୍ୟକ୍ରମ ପ୍ରସ୍ତୁତ କରିବା ନିମନ୍ତେ ପ୍ରଫେସର ଦାଶ ବିଭିନ୍ନ ସମୟରେ ସହକର୍ମୀମାନଙ୍କ ସହିତ ଆଲୋଚନା କଲାବେଳେ ଗୁରୁତ୍ୱ ଦେଉଥିଲେ ।

ସେ ସମୟରେ ସାଧାରଣତଃ ଶିକ୍ଷା ଟେଲିଭିଜନ୍ କାର୍ଯ୍ୟକ୍ରମ ୫-୮ ବର୍ଷ ଓ ୯-୧୧ ବର୍ଷ ପିଲାମାନଙ୍କ ପାଇଁ ପ୍ରସ୍ତୁତ କରାଯାଉଥିଲା । ଏହିସବୁ କାର୍ଯ୍ୟକ୍ରମ ପ୍ରସ୍ତୁତ

ନିମନ୍ତେ କାର୍ଯ୍ୟକ୍ରମ ନିଷ୍ପାଦକ ଭାବେ ବିଶିଷ୍ଟ ଶିକ୍ଷାବିତ୍ ଓ ସିନେତାରକା ସାରଦା ପ୍ରସନ୍ନ ନାୟକ ରହିଥିଲେ । ଅଧ୍ୟାପକ ପ୍ରଡ଼କ୍ସନ ଭାବେ ଡକ୍ଟର ଅମରେନ୍ଦ୍ର ପ୍ରସାଦ ଗିରି, ଅଧ୍ୟାପକ ପଦ୍ମଚରଣ ମହାନ୍ତି, ଅଧ୍ୟାପକ ମୀନକେତନ ପାଠୀ ପ୍ରମୁଖ ଥିଲେ । ସେତେବେଳେ ଏହି କେନ୍ଦ୍ରର ପ୍ରଡ୍ୟୁସର ଭାବେ ସର୍ବଶ୍ରୀ ଗଦାଧର ପୁଟୀ, ବିଷ୍ଣୁ ପ୍ରସାଦ ଦାସ, ବାଣୀରଞ୍ଜନ ମହାନ୍ତି, ବିଜୟ କୁମାର ନନ୍ଦ ପ୍ରମୁଖ ଥିଲେ । କାର୍ଯ୍ୟକ୍ରମ ପାଇଁ ଲେଖା ପ୍ରସ୍ତୁତ କରୁଥିଲେ, ଦୁର୍ଗାଚରଣ ସାମନ୍ତରାୟ, ଦୀପକ ଦାସ, ମନୋରଞ୍ଜନ ଦାଶ ପ୍ରମୁଖ ବ୍ୟକ୍ତି ବିଶେଷ ।

ଅଧିକାଂଶ ସମୟରେ ପ୍ରଫେସର ଦାଶ କାର୍ଯ୍ୟକ୍ରମ ପ୍ରସ୍ତୁତି ସଂପର୍କରେ ଅଧ୍ୟାପକମାନଙ୍କ ସହିତ ସ୍ୱତନ୍ତ୍ରଭାବେ ଆଲୋଚନା କରୁଥିଲେ । ଆବଶ୍ୟକସ୍ଥଳେ ଦିଗ୍‌ଦର୍ଶନ ମଧ୍ୟ ଦେଉଥିଲେ । ଶିକ୍ଷା ଟେଲିଭିଜନ ସଂପର୍କୀୟ ମୂଲ୍ୟାୟନ ମଧ୍ୟ କରୁଥିଲେ । ମୂଲ୍ୟାୟନ ଅଧିକାରୀ ଅଧ୍ୟାପକ ବ୍ରଜବନ୍ଧୁ ପଣ୍ଡା ବିଭିନ୍ନ ସମୟରେ କାର୍ଯ୍ୟକ୍ରମ ସଂପର୍କୀୟ ସୁଚିନ୍ତିତ ମତାମତ ପ୍ରଦାନ କରୁଥିଲେ ।

**ସଭାପତି, ମାଧ୍ୟମିକ ଶିକ୍ଷା ପରିଷଦ**

ପ୍ରଫେସର ଦାଶ ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦର ନିର୍ଦ୍ଦେଶକ ଥିଲାବେଳେ ପ୍ରାୟ ଚାରିମାସ ପାଇଁ ମାଧ୍ୟମିକ ଶିକ୍ଷା ପରିଷଦ, ଓଡ଼ିଶାର ସଭାପତି ଦାୟିତ୍ୱରେ (୯ଏପ୍ରିଲ, ୧୯୮୨ - ୪ ଅଗଷ୍ଟ, ୧୯୮୨) ଥିଲେ । ସେହି ସମୟରେ ରାଜ୍ୟରେ ୧୦+୨+୩ ପାଠ୍ୟକ୍ରମ ପ୍ରଚଳନ କରାଯାଉଥିଲା । ଏହା ଫଳରେ ଦଶମ ଓ ଏକାଦଶ ଶ୍ରେଣୀରେ ପଢୁଥିବା ଉଭୟ ଜୁନିୟର ଓ ସିନିୟର ମାଟ୍ରିକ ପରୀକ୍ଷାର୍ଥୀମାନେ ପରୀକ୍ଷା ଦେବାର ସୁବନ୍ଦୋବସ୍ତ ମଧ୍ୟ ତାଙ୍କ ଦ୍ୱାରା ସମ୍ଭବପର ହୋଇଥିଲା । ଏତଦ୍‌ବ୍ୟତୀତ ସେ ବର୍ଷ ପରିଷଦର ମାଟ୍ରିକ୍ ପରୀକ୍ଷା ଫଳାଫଳ ପ୍ରକାଶନ ତାଙ୍କ ଯୋଗୁଁ ଯଥା ସମୟରେ ହୋଇପାରିଥିଲା ।

ପରିଷଦର ଆନୁକୂଲ୍ୟରେ ସେ ବର୍ଷ ବିଷୟ ବିଶେଷଜ୍ଞଙ୍କ ସହାୟତାରେ ବିଭିନ୍ନ ଶିକ୍ଷକ ପ୍ରଶିକ୍ଷଣ କାର୍ଯ୍ୟକ୍ରମମାନ ମଧ୍ୟ ରାଜ୍ୟରେ ବିଭିନ୍ନ ସ୍ଥାନରେ ଅନୁଷ୍ଠିତ ହୋଇଥିଲା । ଏତଦ୍‌ବ୍ୟତୀତ ପରୀକ୍ଷା ପ୍ରାକ୍-ପ୍ରସ୍ତୁତି ପଦକ୍ଷେପ ସ୍ୱରୂପ ଯେଉଁସବୁ କେନ୍ଦ୍ର ବିରୋଧରେ ପୂର୍ବରୁ ତଥ୍ୟଭିତ୍ତିକ ଅଭିଯୋଗ ଥିଲା, ସେସବୁ କେନ୍ଦ୍ରକୁ ସେ ବର୍ଷ ପରୀକ୍ଷା କେନ୍ଦ୍ର ରୂପେ ମନୋନୟନ କରାଯାଇ ନ ଥିଲା । ଏ କ୍ଷେତ୍ରରେ କୌଣସି ରାଜନୈତିକ ହସ୍ତକ୍ଷେପ ପ୍ରଫେସର ଦାଶଙ୍କୁ ପ୍ରଭାବିତ କରି ନ ଥିଲା ।

ସେ ସମୟରେ ଅନେକ ମାଟ୍ରିକ୍ ପରୀକ୍ଷା କେନ୍ଦ୍ରରେ ପରୀକ୍ଷା ପରିଚାଳନା କେତେକ କେନ୍ଦ୍ରର ଯଥାଯଥ ଭାବରେ ହୋଇନ ଥିଲା । ଏ ସଂପର୍କରେ ଯେତେବେଳେ ମାଧ୍ୟମିକ ପରିଷଦର କେନ୍ଦ୍ର ପରିଦର୍ଶକମାନେ ଏ ସଂପର୍କରେ ପ୍ରଫେସର ଦାଶଙ୍କ ଦୃଷ୍ଟିଗୋଚରକୁ ଆଣିଥିଲେ, ତତ୍‌କ୍ଷଣାତ୍ ସେ ସବୁ ପରୀକ୍ଷାକେନ୍ଦ୍ରଗୁଡ଼ିକ କିପରି ଭାବେ ସୁଚାରୁରୂପେ ପରିଚାଳିତ ହେବ ସେଥିପାଇଁ ଦୃଢ଼ ପଦକ୍ଷେପ ନେଇଥିଲେ । ପରବର୍ତ୍ତୀ ସମୟରେ କେତେକ ପରୀକ୍ଷା କେନ୍ଦ୍ରକୁ ବିଚାରକୁ ନେଇ ସେଠାକାର ଫଳାଫଳକୁ ମଧ୍ୟ ରଦ୍ଦ କରାଯାଇଥିଲା । ଏତଦ୍‌ବ୍ୟତୀତ ମାଧ୍ୟମିକ ଶିକ୍ଷା ପରିଷଦର ପରିଚାଳନାରେ ଥିବା ସେକେଣ୍ଡାରୀ ବୋର୍ଡ଼ ହାଇସ୍କୁଲକୁ ମଧ୍ୟ ବିଭିନ୍ନ ସମୟରେ ପରିଦର୍ଶନ କରି ଶିକ୍ଷକ ଶିକ୍ଷୟିତ୍ରୀମାନଙ୍କୁ ଶୈକ୍ଷିକ ଦିଗ୍‌ଦର୍ଶନ ଦେଉଥିଲେ ଓ ସେକେଣ୍ଡାରୀ ବୋର୍ଡ଼ ହାଇସ୍କୁଲର ପରିଚାଳନାଗତ ଉନ୍ନତି ଆଣୁଥିଲେ ।

**ନିର୍ଦ୍ଦେଶକ, ମାଧ୍ୟମିକ ଶିକ୍ଷା ଓଡ଼ିଶା**

୧୯୮୬-୮୭ ମସିହାରେ ପ୍ରଫେସର ଦାଶ କିଛି ସମୟ ପାଇଁ ଓଡ଼ିଶାର ମାଧ୍ୟମିକ ଶିକ୍ଷା ନିର୍ଦ୍ଦେଶକ ଭାବେ କାର୍ଯ୍ୟ କରିଥିଲେ । ସେ ସମୟରେ ସେ ରାଜ୍ୟ ଶିକ୍ଷା ଗବେଷଣା ପରିଷଦର ଦାୟିତ୍ୱ ସହିତ ଏହି ନିର୍ଦ୍ଦେଶାଳୟର ଅତିରିକ୍ତ ଦାୟିତ୍ୱରେ ଥିଲେ । ଏହି ସ୍ୱଳ୍ପକାଳୀନ ରହଣି ମଧ୍ୟରେ ସେ ମାଧ୍ୟମିକ ଶିକ୍ଷା ପରିଚାଳନାକୁ ନୂତନ ଦିଗ୍‌ଦର୍ଶନ ଦେଇଥିଲେ ।

ସେ ସମୟରେ ରାଜ୍ୟ ପୁରସ୍କାର ହାସଲ ନିମନ୍ତେ ଶିକ୍ଷକ ନିର୍ବାଚନର ପଦ୍ଧତି ଅତି ଜଟିଳ ଥିଲା । ଏହା ଫଳରେ ଅଧିକାଂଶ ଯୋଗ୍ୟ ଶିକ୍ଷକ ଏହି ପୁରସ୍କାର ନିମନ୍ତେ ଦରଖାସ୍ତ କରିବା କାର୍ଯ୍ୟରୁ ନିଜକୁ ଦୂରେଇ ରଖୁଥିଲେ ।

ଏଇ ପ୍ରକାରର ସ୍ଥିତି ସେ ଖୋର୍ଦ୍ଧା ନିକଟସ୍ଥ ହଳଦିଆ ପ୍ରାଥମିକ ବିଦ୍ୟାଳୟ ପରିଦର୍ଶନ ସମୟରେ ଆକଳନ କରିଥିଲେ । ବିଦ୍ୟାଳୟର ପରିବେଶ, ଶିକ୍ଷକମାନଙ୍କର ଶିକ୍ଷାଦାନ, ପ୍ରଧାନ ଶିକ୍ଷକଙ୍କ କର୍ତ୍ତବ୍ୟନିଷ୍ଠା ଦେଖି ସେ ଅଭିଭୂତ ହୋଇଯାଇଥିଲେ । ତେଣୁ ସେ ତତ୍‌କାଳୀନ ପ୍ରଧାନଶିକ୍ଷକଙ୍କୁ ସେ ବର୍ଷ ରାଜ୍ୟ ସରକାର ପୁରସ୍କାର ନିମନ୍ତେ ଦରଖାସ୍ତ କରିବାକୁ ପରାମର୍ଶ ଦେଲେ ।

ସ୍ୱାଭିମାନୀ ପ୍ରଧାନ ଶିକ୍ଷକ ଜଣକ ପ୍ରଫେସର ଦାଶଙ୍କ ପରାମର୍ଶ ଶୁଣି ନମ୍ରତାର ସହିତ କହିଥିଲେ, "ମୁଁ ଦରଖାସ୍ତ ଦେଇ ପୁରସ୍କାର ହାସଲ କରିବା ଆଭିମୁଖ୍ୟକୁ ପସନ୍ଦ କରେ ନାହିଁ । ଆପଣ ହେଉଛନ୍ତି ଶିକ୍ଷା ବିଭାଗର ନିର୍ଦ୍ଦେଶକ । ଯଦି ଆପଣ ଭାବୁଛନ୍ତି ମୁଁ ରାଜ୍ୟ ସରକାରଙ୍କ ପୁରସ୍କାର ଲାଭ କରିବା ନିମନ୍ତେ ଜଣେ କୃତୀ ଶିକ୍ଷକ, ତେବେ

ଆପଣ ମୋ ନାମକୁ ପୁରସ୍କାର ନିମନ୍ତେ ସୁପାରିଶ କରି ପାରନ୍ତି, ମାତ୍ର ମୁଁ ଏଥିପାଇଁ ଦରଖାସ୍ତ କରିବି ନାହିଁ ।"

ପ୍ରଧାନ ଶିକ୍ଷକଙ୍କଠାରୁ ଏପରି ରୋକଠୋକ୍ କଥା ଶୁଣି ପ୍ରଫେସର ଦାଶ ତାଙ୍କୁ ସିନା କିଛି କହିଲେ ନାହିଁ, ମାତ୍ର ତତ୍କାଳୀନ ପୁରସ୍କାର ପଦ୍ଧତି ଯେ କେତେ ଅବାସ୍ତବ ଥିଲା, ତାହା ମନେ ମନେ ଭାବି ବିଚଳିତ ହୋଇ ଉଠିଥିଲେ ।

ବିଦ୍ୟାଳୟ ପରିଦର୍ଶନ ପରେ ଭୁବନେଶ୍ୱର ଫେରିବା ସମୟରେ ତାଙ୍କ ସହିତ କ୍ଷେତ୍ର ପରିଦର୍ଶନରେ ଯାଇଥିବା ଅଧ୍ୟାପକ ସୁରେନ୍ଦ୍ର ମୋହନ ପାଣିଙ୍କୁ କହିଥିଲେ, ***"ପ୍ରଧାନଶିକ୍ଷକ ଜଣକ ଯାହା ରୋକଠୋକ ଭାବେ କହିଲେ ତାହା ଯଥାର୍ଥ, ମାତ୍ର ସରକାରଙ୍କ ପ୍ରଚଳିତ ପଦ୍ଧତି ପରିବର୍ତ୍ତନ କରିବା ଏକ ଆୟାସସାଧ କାର୍ଯ୍ୟ ନୁହେଁ । ଆମେ ଅସହାୟ ।"***

ମାତ୍ର ଏତିକି କହି ସେ ନିରବ ରହି ନ ଥିଲେ । ପରବର୍ତ୍ତୀ ସମୟରେ ଯେତେଦୂର ସମ୍ଭବ ରାଜ୍ୟ ସରକାରଙ୍କ କୃତୀ ଶିକ୍ଷକ ମନୋନୟନ ପଦ୍ଧତିକୁ ବସ୍ତୁନିଷ୍ଠ ଓ ସରଳ କରିପାରିଥିଲେ ।

ଏହାର ସୁଫଳ ଅନେକ ଯୋଗ୍ୟ ଶିକ୍ଷକ ଓ ଶିକ୍ଷୟିତ୍ରୀ ପରବର୍ତ୍ତୀ ସମୟରେ ପାଇଛନ୍ତି ।

ଏତଦ୍‌ବ୍ୟତୀତ ନିର୍ଦ୍ଦେଶାଳୟର ପ୍ରଶାସନ କ୍ଷେତ୍ରରେ ସେ ବିଜ୍ଞ ଶିକ୍ଷା ପ୍ରଶାସକମାନଙ୍କୁ ଉପନିର୍ଦ୍ଦେଶକ (ପ୍ରଶାସନ) ହିସାବରେ ପ୍ରଶାସନିକ ଦାୟିତ୍ୱରେ ରଖାଇଥିଲେ । ସେମାନଙ୍କ ମଧ୍ୟରେ ଥିଲେ ବିଶିଷ୍ଟ ଶିକ୍ଷାବିତ୍ ଡକ୍ଟର ଜଗମୋହନ ରାଠୋର, ପ୍ରାଧ୍ୟାପକ ବଳରାମ ପତି, ଡକ୍ଟର ନରେନ୍ଦ୍ର ପ୍ରସାଦ ଦାସ, ଡକ୍ଟର ସର୍ବେଶ୍ୱର ସାମଲ ପ୍ରମୁଖ ବ୍ୟକ୍ତିବିଶେଷ ।

**ନିର୍ଦ୍ଦେଶକ, ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର, ଓଡ଼ିଶା**

ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର ଓଡ଼ିଶା ସରକାରଙ୍କ ଦ୍ୱାରା ୧୯୮୬ ମସିହା ନଭେମ୍ବର ମାସରେ ପ୍ରତିଷ୍ଠିତ ହୋଇଥିଲା । ଏହା ସୋସାଇଟି ରେଜିଷ୍ଟ୍ରେସନ୍ ଆକ୍ଟ, ୧୮୬୦ ଅନୁଯାୟୀ ରେଜେଷ୍ଟ୍ରୀଭୁକ୍ତ ଏକ ସ୍ୱୟଂଚାଳିତ ପ୍ରତିଷ୍ଠାନ । ଏହି ଅନୁଷ୍ଠାନଟି ୧୯୮୮ ମସିହା ଜୁଲାଇ ମାସରେ ଭାରତ ସରକାରଙ୍କ ଦ୍ୱାରା ସ୍ୱୀକୃତି ଲାଭ କରିଥିଲା । ରାଜ୍ୟରେ ସଂପୂର୍ଣ୍ଣ ସାକ୍ଷରତା କାର୍ଯ୍ୟକ୍ରମ ପ୍ରଚଳନ ହେବା ଫଳରେ ଶୈକ୍ଷିକ ଓ ବୈଷୟିକ ପରାମର୍ଶ ପ୍ରଦାନ କରିବା ସହିତ ରାଜ୍ୟରେ ଜନଶିକ୍ଷା କ୍ଷେତ୍ରରେ କାର୍ଯ୍ୟ କରୁଥିବା ସ୍ୱେଚ୍ଛାସେବୀ ଅନୁଷ୍ଠାନମାନଙ୍କୁ ମଧ୍ୟ ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର ଶୈକ୍ଷିକ ଓ ବୈଷୟିକ

ପରାମର୍ଶ ଦେଇଥାଏ । ତତ୍କାଳୀନ "ସାକ୍ଷର ଭାରତ" କାର୍ଯ୍ୟକ୍ରମରେ ଏହି ଅନୁଷ୍ଠାନର ସ୍ଥାନ ସମଗ୍ର ଭାରତ ବର୍ଷରେ ସ୍ୱତନ୍ତ୍ର ଥିଲା ।

ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର ଯେଉଁସବୁ ମୌଳିକ ଲକ୍ଷ୍ୟ ପରିପୂରଣ ଦିଗରେ କାର୍ଯ୍ୟକରେ ସେଗୁଡ଼ିକ ହେଲା :

- ଜନଶିକ୍ଷା ଓ ନିରନ୍ତର ଶିକ୍ଷା ପାଇଁ ଶିକ୍ଷଣ ସାମଗ୍ରୀ, ସମ୍ବଳ ଆଦି କ୍ଷେତ୍ରରେ ସହାୟତା ପ୍ରଦାନ;
- ପ୍ରଶିକ୍ଷଣଭିତ୍ତିକ ଶିକ୍ଷାଦାନ ପ୍ରଣାଳୀ, ଜନଶିକ୍ଷା ପ୍ରଶିକ୍ଷାର୍ଥୀମାନଙ୍କ ପ୍ରସ୍ତୁତୀକରଣ ;
- ଜନଶିକ୍ଷା ସଂପର୍କୀୟ ଗବେଷଣା ଓ ମୂଲ୍ୟାୟନ;
- ବିଭିନ୍ନ ସଂସ୍ଥା ସହିତ ସଂପର୍କ ରଖି ଜନଶିକ୍ଷା କାର୍ଯ୍ୟକ୍ରମରେ ସମନ୍ୱୟ ପ୍ରତିଷ୍ଠା;
- ଅନ୍ୟାନ୍ୟ ବିକାଶମୂଳକ କାର୍ଯ୍ୟକ୍ରମ ସହିତ ପ୍ରତିଷ୍ଠାନର କାର୍ଯ୍ୟକ୍ରମର ସଂଯୋଜନ;
- ଜନଶିକ୍ଷା ସଂପର୍କୀୟ ସମସ୍ତ କାର୍ଯ୍ୟ ଓ ଲକ୍ଷ୍ୟ ପରିପୂରଣ ଦିଗରେ ସହାୟତା ପ୍ରଦାନ ।

ନୂତନଭାବେ ରାଜ୍ୟ ସରକାରଙ୍କ ଦ୍ୱାରା ପ୍ରତିଷ୍ଠିତ କେନ୍ଦ୍ର ସରକାରଙ୍କଦ୍ୱାରା ସ୍ୱୀକୃତିପ୍ରାପ୍ତ ଏହି ଅନୁଷ୍ଠାନର କାର୍ଯ୍ୟ ପ୍ରାଥମିକ ସ୍ତରରେ ଓଡ଼ିଶା ସରକାରଙ୍କ ପ୍ରତି ଏକ ଆହ୍ୱାନ ସଦୃଶ ଥିଲା । ତେଣୁ ତତ୍କାଳୀନ ଓଡ଼ିଶା ସରକାରଙ୍କ ଶିକ୍ଷା ବିଭାଗ ପ୍ରଫେସର ଦାଶଙ୍କ ଭଳି ରାଜ୍ୟର ଜଣେ ବିଶିଷ୍ଟ ଶିକ୍ଷାବିତ୍‌ଙ୍କୁ ଏହି ପ୍ରତିଷ୍ଠାନର ପ୍ରଥମ ନିର୍ଦ୍ଦେଶକ ଭାବେ ୧୯୮୮ ମସିହା ସେପ୍ଟେମ୍ବର ମାସରେ ନିଯୁକ୍ତି ପ୍ରଦାନ କରିଥିଲେ । ସେ ଉକ୍ତ ଅନୁଷ୍ଠାନରେ ୧୯୮୯ ମସିହା ଜାନୁୟାରୀ ମାସ ପର୍ଯ୍ୟନ୍ତ କାମ କରିଥିଲେ । ପୁନଶ୍ଚ ସରକାରୀ ଚାକିରିରୁ ଅବସର ନେଲାପରେ ୧ ଫେବୃୟାରୀ ୮୯ଠାରୁ ୩୧ ଜାନୁୟାରୀ ୧୯୯୨ ପର୍ଯ୍ୟନ୍ତ କାର୍ଯ୍ୟ କରିଥିଲେ ।

ପ୍ରଫେସର ଦାଶ ଜନଶିକ୍ଷା କାର୍ଯ୍ୟକ୍ରମର ଲକ୍ଷ୍ୟକୁ ଆଖି ଆଗରେ ରଖି ସେ ସମୟରେ ଯେଉଁସବୁ କାର୍ଯ୍ୟକ୍ରମଗୁଡ଼ିକ ଉପରେ ଗୁରୁତ୍ୱ ଦେଇଥିଲେ ସେଗୁଡ଼ିକ ହେଲା :

- ଶିକ୍ଷଣ ସାମଗ୍ରୀ ପ୍ରସ୍ତୁତିକରଣ;
- ପ୍ରଶିକ୍ଷଣ ସଂପର୍କୀୟ ବହୁବିଧ କାର୍ଯ୍ୟ;
- ସାଧାରଣ ଜନ ଶିକ୍ଷାଭିତ୍ତିକ କାର୍ଯ୍ୟାବଳୀ;
- ପ୍ରଶାସନ, ଅର୍ଥ ଓ ଆର୍ଥିକ ପରିଚାଳନା ।

ପ୍ରଫେସର ଦାଶଙ୍କ ଅଦମ୍ୟ ନିଷ୍ଠା ଓ କାର୍ଯ୍ୟ ପରାୟଣତା ଯୋଗୁଁ ତାଙ୍କ ରହଣି ସମୟରେ ରାଜ୍ୟରେ ନୂତନ ଭାବେ ଗଢ଼ି ଉଠିଥିବା ଜନଶିକ୍ଷା ସାଧନ କେନ୍ଦ୍ର ନୂତନ

ଜୀବନ୍ୟାସ ପାଇଥିଲା । ଏହାର ମୁଖପତ୍ର 'ଜନଚେତନା' ମାଧ୍ୟମରେ ନବସାକ୍ଷରଙ୍କ ପାଇଁ ନୂତନ ବାର୍ତ୍ତା, ସନ୍ଦେଶ, ତଥ୍ୟ ଥିବା ବିଷୟବସ୍ତୁ ଓ କାବ୍ୟ କବିତାମାନ ପ୍ରକାଶ ଲାଭ କରୁଥିଲା । ଏହା ଫଳରେଏଇ ପତ୍ରିକାଟି ସାକ୍ଷରତା କାର୍ଯ୍ୟକ୍ରମ କାର୍ଯ୍ୟକାରୀ କରାଯାଉଥିବା ଗଞ୍ଜାମ, କୋରାପୁଟ, କେଉଁଝର, ସୁନ୍ଦରଗଡ଼, ଢେଙ୍କାନାଳ ଆଦି ଜିଲ୍ଲାଗୁଡ଼ିକରେ ସହଜରେ ପହଞ୍ଚି ପାରୁଥିଲା ।

ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର ରାଜ୍ୟର ସାକ୍ଷରତା କାର୍ଯ୍ୟକ୍ରମ ମାଧ୍ୟମରେ ଶିକ୍ଷାଲାଭ କରୁଥିବା ନବ ସାକ୍ଷରଙ୍କ ପାଇଁ ଅକ୍ଷର ଶିକ୍ଷାଠାରୁ ଆରମ୍ଭ କରି ଶିକ୍ଷା, ସ୍ୱାସ୍ଥ୍ୟ, ସାହିତ୍ୟ ସଂପର୍କୀୟ ବହୁ ସୁନ୍ଦର ସୁନ୍ଦର ବହି ସେ ସମୟରେ ପ୍ରକାଶ କରୁଥିଲେ । ସେହିପରି ସେମାନଙ୍କୁ ରୋଜଗାରକ୍ଷମ କରିବା ନିମନ୍ତେ ଆବଶ୍ୟକ ବୃତ୍ତିଭିତ୍ତିକ ପୁସ୍ତକମାନ ମଧ୍ୟ ପ୍ରସ୍ତୁତ କରୁଥିଲେ । ଜନସଂଖ୍ୟା ଶିକ୍ଷା ସଂପର୍କରେ ମଧ୍ୟ ବହୁ ଉପାଦେୟ ପୁସ୍ତକ ରାଜ୍ୟ ଜନ ଶିକ୍ଷା ସାଧନ କେନ୍ଦ୍ର ଆନୁକୂଲ୍ୟରେ ପ୍ରକାଶିତ ହୋଇ ରାଜ୍ୟ ଓ ଦେଶରେ ସୁନାମ ଅର୍ଜନ କରିଥିଲା ।

ପୁସ୍ତକ ପ୍ରସ୍ତୁତି ସମୟରେ ପ୍ରଫେସର ଦାଶ ନବସାକ୍ଷରଙ୍କ ଜ୍ଞାନ ଯେପରି ସମୟାନୁକ୍ରମେ ପରିମାର୍ଜିତ ହେବ, ସେଥିପାଇଁ ନିରନ୍ତର ଶିକ୍ଷା ଉପଯୋଗୀ ବହୁ ଉପଯୋଗୀ ପୁସ୍ତକ ପ୍ରକାଶ କରୁଥିଲେ । ପୁସ୍ତକଗୁଡ଼ିକର ଅନୁଚ୍ଛେଦ, ଭାଷା, ଶୈଳୀ ଆଦି ନିବସାକ୍ଷରଙ୍କ ଆଗ୍ରହ ଓ ରୁଚି ଅନୁସାରେ ପ୍ରସ୍ତୁତ କରାଯାଇଥିଲା ।

ଜନଶିକ୍ଷା ସାଧନ କେନ୍ଦ୍ରର ଅନ୍ୟ ଏକ ଅଭିନବ ପ୍ରୟାସ ହେଲା ଏହି ଅନୁଷ୍ଠାନ ତରଫରୁ ସେ ସମୟରେ ନିୟମିତ ପ୍ରକାଶ ପାଉଥିବା '**ତୁଷ୍ଟ ବାଇଦ**' ନାମକ ଏକ କ୍ଷୁଦ୍ର ପତ୍ରିକା । ଏଥିରେ ଶିକ୍ଷା, ସ୍ୱାସ୍ଥ୍ୟ ଶିକ୍ଷା ଓ ଜନଜୀବନ ସଂପର୍କୀୟ ବିଭିନ୍ନ ଉପାଦେୟ ଲେଖାମାନ ସଂକ୍ଷିପ୍ତଭାବେ ପ୍ରକାଶିତ ହେଉଥିଲା । ଏହି ପତ୍ରିକାଟି ସମସ୍ତ ଜନଶିକ୍ଷା କେନ୍ଦ୍ରମାନଙ୍କୁ ଯୋଗାଇ ଦିଆଯାଇଥିଲା । ଏହି ପ୍ରତିଷ୍ଠାନର ପ୍ରାଚୀରପତ୍ର '**ଜନଜୀବନ**' ମଧ୍ୟ ପ୍ରଫେସର ଦାଶଙ୍କ ଅନ୍ୟତମ ସଫଳ ରୂପାୟନ ଥିଲା ।

ପ୍ରଫେସର ଦାଶଙ୍କ ପରାମର୍ଶକ୍ରମେ ଜନଶିକ୍ଷା ସାଧନକେନ୍ଦ୍ର ଦ୍ୱାରା ମେଣ୍ଢାଶାଳ, ଦାଲୁଅ ବ୍ଲକ ଅଞ୍ଚଳରେ ସାକ୍ଷରତା କାର୍ଯ୍ୟକ୍ରମମାନ କରାଯାଉଥିଲା । ଏହି କାର୍ଯ୍ୟକ୍ରମ ନିମନ୍ତେ ସେ କାର୍ଯ୍ୟକ୍ରମ ନିଷ୍ପାଦକ ସଂଜୀବ ପ୍ରଧାନଙ୍କୁ ନୋଡ଼ାଲ ଅଫିସର ରୂପେ ଦାୟିତ୍ୱ ଦେଇଥିଲେ । ତତ୍କାଳୀନ ସ୍ୱାସ୍ଥ୍ୟମନ୍ତ୍ରୀ ଡାକ୍ତର କମଳା ଦାସ ୧୯୮୯-୯୦ ଶିକ୍ଷାବର୍ଷରେ ଏହି କାର୍ଯ୍ୟକ୍ରମର ଶୁଭାରମ୍ଭ କରିଥିଲେ । ଏତଦ୍‌ବ୍ୟତୀତ ସେ ସମୟରେ ବିଦ୍ୟାଳୟ କାର୍ଯ୍ୟନିର୍ଘଣ୍ଟ ମଧ୍ୟରେଥିବା ସାମାଜିକ ଦରକାରୀ ଉତ୍ପାଦନ କାର୍ଯ୍ୟ (SUPW) ଭିତ୍ତିକ ପିରିୟଡ଼ରେ ପ୍ରତ୍ୟେକ ପିଲାଙ୍କୁ ଜଣେ ନିରକ୍ଷର ବ୍ୟକ୍ତିଙ୍କୁ ସାକ୍ଷର କରିବାର

ଦାୟିତ୍ୱ ଦିଆଯାଇଥିଲା । ସେତେବେଳେ ମାଧ୍ୟମିକ ଶିକ୍ଷାର ଚୂଡ଼ାନ୍ତ ପରୀକ୍ଷାରେ ପାଞ୍ଚଜଣ ନିରକ୍ଷରଙ୍କୁ ସାକ୍ଷର କରିଥିବା ପରୀକ୍ଷାର୍ଥୀଙ୍କୁ ପାଞ୍ଚ ନମ୍ବର ଏସ୍‌ୟୁପିଡ଼ବ୍ଲ୍ୟୁ କାର୍ଯ୍ୟକ୍ରମ ମାଧ୍ୟମରେ ଦେବାର ବ୍ୟବସ୍ଥା ଥିଲା । ଏହା ଫଳରେ ରାଜ୍ୟରେ ସାକ୍ଷରତା କାର୍ଯ୍ୟକ୍ରମ ତୃଣମୂଳ ସ୍ତରରେ ପହଞ୍ଚି ପାରିଥିଲା ଓ ପ୍ରତି ଗ୍ରାମର ନିରକ୍ଷର ଲୋକେ ସାକ୍ଷର ହେବାର ସୁଯୋଗ ପାଇଥିଲେ ।

ସର୍ବଭାରତୀୟ ଜନଶିକ୍ଷା କାର୍ଯ୍ୟକ୍ରମ ସହିତ ତାଳଦେଇ ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର ତା'ର ସମସ୍ତ କାର୍ଯ୍ୟକ୍ରମ ଫଳପ୍ରଦ ଭାବେ ଅନୁଷ୍ଠିତ କରି ପ୍ରଶଂସା ଲାଭ କରୁଥିଲା । ପ୍ରାଥମିକ ସ୍ତରରେ ଏହି କାର୍ଯ୍ୟକ୍ରମ ୧୫-୩୫ ବର୍ଷର ବ୍ୟକ୍ତିବିଶେଷଙ୍କ ପ୍ରତି ଅଭିପ୍ରେତ ଥିଲା । ପରବର୍ତ୍ତୀ ସମୟରେ ଏହା ୧୫ରୁ ଉର୍ଦ୍ଧ୍ୱ ବ୍ୟକ୍ତିଙ୍କ ପ୍ରତି କାର୍ଯ୍ୟକାରୀ କରାଯାଇଥିଲା ।

ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ରର ଉନ୍ନତି ଓ ବିକାଶ ବିଶେଷ ଭାବେ ପ୍ରଫେସର ଦାଶଙ୍କ ଶେଷ ତିନିବର୍ଷର କାର୍ଯ୍ୟକାଳ ମଧ୍ୟରେ ୧୯୮୯ ମସିହାରେ ଘଟିଥିଲା । ପୂର୍ବରୁ ଏହି କେନ୍ଦ୍ର ଅନୁଗୁଳ ମାଳତୀ ଦେବୀଙ୍କ ଆଶ୍ରମ ପରିସରରେ ୧୯୭୮ ମସିହାରେ ରାଜ୍ୟ ପୌଢ଼ ଶିକ୍ଷା ସାଧନ କେନ୍ଦ୍ର ନାମରେ କାର୍ଯ୍ୟ କରିଆସୁଥିଲା ବେଳେ, ଏହାର ମୂଳଦୁଆ ପୂର୍ବତନ ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀ ଓ ତାଙ୍କ ଧର୍ମପତ୍ନୀ ମାଳତୀ ଦେବୀ ପକାଇଥିଲେ । ପ୍ରଫେସର ଦାଶ ଏହି କେନ୍ଦ୍ରକୁ ଭୁବନେଶ୍ୱର ସ୍ଥାନାନ୍ତରିତ କରିବାକୁ ରାଜ୍ୟ ସରକାରଙ୍କୁ ପ୍ରବର୍ତ୍ତାଇ ଥିଲେ ଓ ଶେଷରେ ସଫଳ ହୋଇଥିଲେ । ଏତଦ୍‌ବ୍ୟତୀତ ପ୍ରଫେସର ଦାଶଙ୍କ ପରାମର୍ଶ ଅନୁଯାୟୀ ସମୟ ସହିତ ତାଳ ଦେଇ ଏହି କେନ୍ଦ୍ରର ନାମକରଣ ମଧ୍ୟରେ ଥିବା 'ପୌଢ଼' ଶବ୍ଦକୁ ବାଦ ଦିଆଯାଇ ତା'ର ସ୍ଥାନରେ 'ଜନ' ଶବ୍ଦକୁ ସଂଯୋଜିତ କରାଯାଇଅଛି । ଏଥିରୁ ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ ଜନଶିକ୍ଷା କାର୍ଯ୍ୟକ୍ରମ ନିର୍ଦ୍ଦିଷ୍ଟ ବ୍ୟକ୍ତି ବିଶେଷଙ୍କ ପାଇଁ ଉଦ୍ଦିଷ୍ଟ ନୁହେଁ ବରଂ ଏହା ସମସ୍ତଙ୍କ ପାଇଁ ଅଭିପ୍ରେତ । ଏହା ଫଳରେ ଜନଶିକ୍ଷା କାର୍ଯ୍ୟକ୍ରମ ଶିକ୍ଷା ଆଉ ସାକ୍ଷରତା କାର୍ଯ୍ୟକ୍ରମ ମଧ୍ୟରେ ସୀମାବଦ୍ଧ ନ ରହି ଦେଶରେ ଏକ ଶିକ୍ଷଣ ସମାଜ ଗଠନ କରିବାର ସହାୟକ ହୋଇଅଛି ।

ପ୍ରଫେସର ଦାଶ ଶିକ୍ଷକ ଶିକ୍ଷା ନିର୍ଦ୍ଦେଶାଳୟ ଏବଂ ପ୍ରଶିକ୍ଷଣ ପରିଷଦ ନିମନ୍ତେ ବହୁ ପ୍ରଚେଷ୍ଟା କରି ଏକ ସ୍ୱତନ୍ତ୍ର କାର୍ଯ୍ୟାଳୟ ପ୍ରତିଷ୍ଠା କରି ପାରିଥିଲେ । ସେହିପରି ସେ ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର ନିମନ୍ତେ ଏକ ସ୍ୱତନ୍ତ୍ର ସୌଧ ସ୍ଥାପନ କରିବାକୁ ସମର୍ଥ ହୋଇଥିଲେ । ଏହି ସୌଧଟି **"ଜନଶିକ୍ଷା ଭବନ"** ନାମରେ ନାମିତ ହୋଇଅଛି । ଏତଦ୍‌ବ୍ୟତୀତ ଏହି ଅନୁଷ୍ଠାନଟି କିପରି ସବୁବେଳେ ସରକାରୀ ସାହାଯ୍ୟ ବିନା ଚାଲି

ପାରିବ ସେଥିପାଇଁ ସେ ଏକ କୋଟି ଟଙ୍କାର ଏକ ସ୍ଥାୟୀ ପାଣ୍ଠି ଗଠନ କରିଥିଲେ । ବର୍ତ୍ତମାନ ଏହି ପାଣ୍ଠି ତିନି କୋଟିରୁ ଅଧିକ ହୋଇଅଛି । ଆଶା ଥିଲା ଏହି ଜମାରାଶିର ସୁଧ ଜନଶିକ୍ଷା ସାଧନ କେନ୍ଦ୍ରକୁ ଆବଶ୍ୟକସ୍ଥଳେ ଆର୍ଥିକ ସହାୟତା ପ୍ରଦାନ କରିବ । ସଂପ୍ରତି ରାଜ୍ୟରେ ଜନଶିକ୍ଷା ସାଧନ କେନ୍ଦ୍ରର କାର୍ଯ୍ୟକାରିତା ଓ ସ୍ଥିତି ନ ଥିଲାବେଳେ **'ଜନ ଶିକ୍ଷା ଭବନ'** ଅତୀତ ଗୌରବର ମୂକସାକ୍ଷୀ ଭାବେ ରହିଅଛି ।

**ସଦସ୍ୟ, ରାଜ୍ୟ ଯୋଜନା ବୋର୍ଡ଼**

୧୯୯୧ ମସିହାରେ ପ୍ରଫେସର ଦାଶ ରାଜ୍ୟ ଯୋଜନା ବୋର୍ଡ଼ ସଦସ୍ୟ ରୂପେ ନିଜର ଦାୟିତ୍ୱ ସଂପାଦନ କରିଥିଲେ । ସେ ସମୟରେ ସେ ସରକାରଙ୍କ ଦ୍ୱାରା କାର୍ଯ୍ୟକାରୀ ହେଉଥିବା ବିଭିନ୍ନ ଯୋଜନାଭିତ୍ତିକ କାର୍ଯ୍ୟକ୍ରମ ସଂପର୍କୀୟ ନିଷ୍ପତ୍ତିରେ ଅଂଶ ଗ୍ରହଣ କରୁଥିଲେ ଓ ଓଡ଼ିଶାର ପ୍ରାଥମିକ ତଥା ମାଧ୍ୟମିକ ଶିକ୍ଷାର ବିକାଶ କ୍ଷେତ୍ରରେ ବହୁ ଉପାଦେୟ ପରାମର୍ଶ ଦେଇଥିଲେ ।

**ରାଜ୍ୟସ୍ତରୀୟ ମାଧ୍ୟମିକ ଶିକ୍ଷକ ଶିକ୍ଷା କମିଟିର ଚେୟାରମ୍ୟାନ ଓ ସଦସ୍ୟ**

ଓଡ଼ିଶା ସରାକର ବିଭିନ୍ନ ସମୟରେ ରାଜ୍ୟସ୍ତରୀୟ ମାଧ୍ୟମିକ ଶିକ୍ଷା ଏବଂ ଶିକ୍ଷକ ଶିକ୍ଷାର ଉନ୍ନତି ନିମନ୍ତେ କମିଟିମାନ ଗଠନ କରିଥିଲେ । ସେହିସବୁ କମଟିରେ ସେ ବିଭିନ୍ନ ସମୟରେ ଚେୟାରମ୍ୟାନ ଓ ସଦସ୍ୟ ଭାବେ ୧୯୯୨ ମସିହାରୁ ସଂଶ୍ଳିଷ୍ଟ ରହି ବହୁ ଗଠନମୂଳକ କାର୍ଯ୍ୟକ୍ରମମାନ ଗ୍ରହଣ କରିଥିଲେ ।

**ଶିକ୍ଷା ଓ ସାହିତ୍ୟ ଜଗତକୁ ପ୍ରଫେସର ଦାଶଙ୍କ ଅବଦାନ**

ପ୍ରଫେସର ଦାଶ ଥିଲେ ଜଣେ କୃତବିଦ୍ ଶିକ୍ଷାବିତ୍, ସାହିତ୍ୟିକ ଓ ଲେଖକ । ସେ ନିଜ ରଚିତ ବହୁ ପୁସ୍ତକ ଓ ରଚନାବଳୀ ଦ୍ୱାରା ଆମ ରାଜ୍ୟର ଶିକ୍ଷା ଓ ସାହିତ୍ୟ ଜଗତକୁ ସମୃଦ୍ଧ କରିଅଛନ୍ତି ।

ବ୍ରହ୍ମପୁର ଶିକ୍ଷକ ପ୍ରଶିକ୍ଷଣ ମହାବିଦ୍ୟାଳୟରେ ଅଧ୍ୟକ୍ଷ ହିସାବରେ ଅବସ୍ଥାପିତ ଥିଲାବେଳେ ସେ ବିଶିଷ୍ଟ ମନସ୍ତତ୍ତ୍ୱବିତ୍ ଗିଲ୍‌ଫୋର୍ଡ଼ଙ୍କ ଶିକ୍ଷା ମନସ୍ତତ୍ତ୍ୱକୁ ଓଡ଼ିଆରେ ଅନୁବାଦ କରିଥିଲେ । ପରବର୍ତ୍ତୀ ସମୟରେ ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରସ୍ତୁତୀକରଣ ଓ ପ୍ରକାଶନ ସଂସ୍ଥା ଦ୍ୱାରା ମନସ୍ତତ୍ତ୍ୱ ପୁସ୍ତକଟି ପ୍ରକାଶ ଲାଭ କରିଅଛି । ଏତଦ୍‌ବ୍ୟତୀତ ଗଣିତ ବିଜ୍ଞାନ, ସାମାଜିକ ଶିକ୍ଷା, ମନୋବିଜ୍ଞାନ ଆଦିରେ ଶିକ୍ଷା ସହାୟକ ପୁସ୍ତକ ମଧ୍ୟ ରଚନା କରିଛନ୍ତି । ତାଙ୍କ ଲିଖିତ ପାଠ୍ୟପୁସ୍ତକ ପଢ଼ି ବିଶେଷ ଲାଭବାନ ହୋଇଥିବା ଶ୍ରୀମୟ କର କୁହନ୍ତି : "ଓଡ଼ିଶାର ସ୍ୱନାମଧନ୍ୟ ଶିକ୍ଷାବିତ୍ ଡକ୍ଟର ଶରତ ଚନ୍ଦ୍ର ଦାଶଙ୍କୁ ମୁଁ ଅତ୍ୟନ୍ତ ଛୋଟବେଳୁ ଜାଣେ, ମୋ ବାପା ପ୍ରାଣବନ୍ଧୁ କରଙ୍କ ଛାତ୍ର ଏବଂ ପରବର୍ତ୍ତୀ

ସମୟରେ ସହକର୍ମୀଭାବେ । ସେଥିଲେ ଜଣେ ଅମାୟିକ ଓ ସରଳ ବ୍ୟକ୍ତି । ତାଙ୍କ ସଂପର୍କରେ ମୋର ସ୍ମୃତି ଏବେ ବି ଉଦ୍‌ଜୀବିତ । ଅନେକ ହୁଏତ ଜାଣି ନ ଥିବେ ସେ ଥିଲେ ଗଣିତ ବିଶାରଦ । ତାଙ୍କଦ୍ୱାରା ପ୍ରସ୍ତୁତ ଅଙ୍କ, ବୀଜଗଣିତ, ଜ୍ୟାମିତି, ପାଟିଗଣିତ ବହି ସମୂହ ଆମ୍ଭେମାନେ ଅଷ୍ଟମରୁ ଏକାଦଶ ଶ୍ରେଣୀ ପର୍ଯ୍ୟନ୍ତ ପଢୁଥିଲୁ । ଏହି ବହି ସମୂହ ବୋର୍ଡ଼ ଏବଂ ସେକେଣ୍ଡାରୀ ଏଜୁକେଶନ ପକ୍ଷରୁ ଅନୁମୋଦିତ ହୋଇ ସମଗ୍ର ଓଡ଼ିଶାରେ ପାଠ୍ୟପୁସ୍ତକ ଭାବେ ପ୍ରଚଳିତ ଥିଲା । ଆଜି ବି ଗଣିତ ମାନେ ମୋ ପାଇଁ ଡକ୍ଟର ଶରତ ଚନ୍ଦ୍ର ଦାଶ ।”

ଶିକ୍ଷା ଓ ଗବେଷଣା କ୍ଷେତ୍ରରେ ରାଜ୍ୟ ଓ ଦେଶରେ ତାଙ୍କର ବିଶେଷ ସୁନାମ ରହିଅଛି । ୧୯୬୭ ମସିହାରେ ଶିକ୍ଷା ବିଷୟରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ପିଏଚ.ଡ଼ି ଉପାଧି ପ୍ରାପ୍ତି ନିମନ୍ତେ ସପ୍ତମ ଶ୍ରେଣୀର ପିଲାମାନଙ୍କ କୃତିତ୍ୱ ପରୀକ୍ଷଣ ପାଇଁ ଯେଉଁ ପରୀକ୍ଷଣ ସଂପର୍କୀୟ ପ୍ରଶ୍ନାବଳୀଗୁଡ଼ିକ ପ୍ରସ୍ତୁତ କରିଛନ୍ତି ସେଗୁଡ଼ିକ ମଧ ନିର୍ଦ୍ଦିଷ୍ଟ ମାନଭିତ୍ତିକ ହୋଇ ପାରିଅଛି । ଏହାଦ୍ୱାରା ସେ ଶିକ୍ଷକ ଶିକ୍ଷା, ଶିକ୍ଷା ମନସ୍ତତ୍ତ୍ୱ, ପରିମାପ ଓ ମୂଲ୍ୟାୟନ ଜଗତକୁ ନୂତନ ମାର୍ଗ ପ୍ରଦର୍ଶନ କରିପାରିଛନ୍ତି । ଏତଦ୍‌ବ୍ୟତୀତ ସେ ରାଜ୍ୟ ଶିକ୍ଷା ଓ ଗବେଷଣା ପରିଷଦର ନିର୍ଦ୍ଦେଶକ ଥିଲାବେଳେ କର୍ମଭିତ୍ତିକ ଶିକ୍ଷା ସଂପର୍କୀୟ ଏକ ପ୍ରାକ୍ ଅଧ୍ୟୟନ ୧୯୮୧ ମସିହାରେ ରାଷ୍ଟ୍ରୀୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦ ଆନୁକୂଲ୍ୟରେ କରି ଜାତୀୟସ୍ତରରେ ସୁନାମ ଅର୍ଜନ କରିଛନ୍ତି ।

ରାଜ୍ୟ, ଜାତୀୟ ଓ ଆନ୍ତର୍ଜାତିକ ସ୍ତରରେ ବହୁ ସଂସ୍ଥାନମାନଙ୍କରେ ଯୋଗଦାନ କରି ଗବେଷଣାର ବହୁବିଧ ବିଭାବ ସଂପର୍କରେ ତଥ୍ୟ ଭିତ୍ତିକ ଦିଗ୍‌ଦର୍ଶନ ଦେଇଛନ୍ତି । ତାଙ୍କଦ୍ୱାରା ପ୍ରସ୍ତୁତ ସନ୍ଦର୍ଭଗୁଡ଼ିକ ତଥ୍ୟ ଭିତ୍ତିକ ଓ ମୌଳିକ ହୋଇଥିବା ହେତୁ ସେଗୁଡ଼ିକ ଶିକ୍ଷାବିତ୍, ଗବେଷକ ଓ ଶିକ୍ଷା ପ୍ରେମୀମାନଙ୍କ ଦ୍ୱାରା ଆଦୃତ ହୋଇ ପାରିଅଛି । ଏତଦ୍‌ବ୍ୟତୀତ ଶିକ୍ଷାରେ ତାଙ୍କର ଗବେଷଣାଭିତ୍ତିକ ଶତାଧିକ ସନ୍ଦର୍ଭ ମଧ ବିଭିନ୍ନ ଜାତୀୟ ତଥା ଆନ୍ତର୍ଜାତୀୟ ପତ୍ରପତ୍ରିକାରେ ପ୍ରକାଶିତ ହୋଇଅଛି ।

ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦ ଏବଂ ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ରରେ ଥିଲାବେଳେ ତାଙ୍କର ପ୍ରଚେଷ୍ଟାରେ ବହୁବିଧ ଶିକ୍ଷା ସଂପର୍କୀୟ ପୁସ୍ତକ ପ୍ରକାଶିତ ହୋଇଥିଲା । ସେହିସବୁ ପୁସ୍ତକର ମୁଖବନ୍ଧ ସେ ନିଜେ ଲେଖୁଥିଲେ । ସାହିତ୍ୟ ରାଜ୍ୟରେ ନିଜକୁ ହଜେଇ ମଜେଇ ଦେଇ ଯାହା ଲେଖୁଥିଲେ, ତାହା ଥିଲା ସର୍ବଜନ ଗ୍ରହଣୀୟ ଓ ଗୋଟିଏ ଗୋଟିଏ ସଂସ୍କୃତି ଓ ସାହିତ୍ୟ ସଂପନ୍ନ ସୃଷ୍ଟି । ଏହାର ଉଦାହରଣସ୍ୱରୂପ ୧୯୮୮ ମସିହାରେ ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦଦ୍ୱାରା ପ୍ରସ୍ତୁତ

'ନାରୀର ଦାନ' ପୁସ୍ତକର ମୁଖବନ୍ଧଙ୍କୁ କେବଳ ଗତାନୁଗତିକ 'ମୁଖବନ୍ଧ' ମଧ୍ୟରେ ସୀମିତ ନ କରି ଲେଖିଛନ୍ତି 'ମୋ କଥା' ହିସାବରେ ।

'ମୋ କଥା'ରେ ପ୍ରଫେସର ଦାଶ ଉଲ୍ଲେଖ କରିଛନ୍ତି, *"ଆମ ଝିଅ ବୋହୂ ପାଠ ପଢ଼ିବେ । ନାନା କଥା ଶିଖିବେ, ଦେଶ ବିଦେଶର କଥା, ଆଗ କାଳର କଥା ଜାଣିବେ, ସାଇ ପଡ଼ିଶାରେ ନୂଆ କଥା ଆଲୋଚନା କରିବେ, ପୋଖରୀ ତୁଠରେ, ଗାଁ ଭିତରେ, ରୋଷେଇ ଘରେ, ଖାଲି ପୁଅ ଝିଅ ବାହାଘର, ରୋଗ ବଇରାଗ ଚାଷବାସ, ପୁନିଅଁ ପରବ କଥା ପଢ଼ିବ ନାଇଁ, ରାତିରେ ନାତି ନାତୁଣୀ, ପୁଅଝିଅ, ପୁତୁରା ଝିଆରୀ ଖାଲି ରାଜା-ରାଣୀ, ଅସୁର-ଅସୁରୁଣୀ କଥା ଶୁଣିବେ ନାଇଁ । କେଉଁ ଜାଗାରେ କ'ଣ ନୂଆ କଥା ହେଉଚି, କୋଉ ଲୋକ କୋଉ ନୂଆ କାମ କରୁଛି, କିମିତି ଦି' ପଇସା ବେଶୀ ରୋଜଗାର ହେବ, ଘର ହିସାବ କିମିତି ଠିକ୍ ବୁଝିବା, ଗାଁ କେମିତି ଆଗେଇବ, ଦେଶ କାମ କିମିତି ଠିକ୍ ବାଟରେ ଚାଲିବ, ଆମେ ଲାଗିପଡ଼ି, ଆମେ ଏକାଠି କାମ କରି କିପରି ଗାଁ ଓ ଦେଶକୁ ଆଗେଇ ନେବା, ଅଭାବ-ଅସୁବିଧା ଦୂର କରିବା - ଇଏ ସବୁ ଓ ଏଇମିତି କେତେ କେତେ ନୂଆ କଥା ଆମ ମନକୁ ଆସିବ । ଆମ ଦୁଃଖ ସୁଖର କାହାଣୀ କେତେ ଦିଗକୁ ମାଡ଼ିଯିବ । ଆମେ ଗଢ଼ିବା ନୂଆ ଦୁନିଆ । ଘର ଭିତର ସଜାଡ଼ିବା । ତେବେ ଯାଇ ଗାଁ, ଦେଶ ସଜାଡ଼ି ହେବ, ନୂଆ ଯୁଗ ଆସିବ ।*

*ଆଜିର ଝିଅ କାଲି ହେବ ବୋହୂ । ତା' କୋଳରେ ନୂଆ ମଣିଷ କୁଆଁ କୁଆଁ ରାବ କରିବ । ସଂସାର ଆଗେଇବ । ସେଇପରି ଆମର ଝିଅବୋହୂ ନୂଆ କଥା କହିବେ, ନୂଆ ରାହା ଦେଖିବେ, ନୂଆ ବାଟ ଦେଖାଇବେ । ସେଇମାନେ ହେବେ ନୂଆଯୁଗର ଜନନୀ, ନୂଆ ଦୁନିଆର ମାଆ ।"*

ପ୍ରଫେସର ଦାଶଙ୍କ ଉପର୍ଯ୍ୟୁକ୍ତ କଥା କେଇ ପଦକ ସୂଚାଇ ଦିଏ ଯେ ସେ କେତେ ଭାବପ୍ରବଣ ଥିଲେ ନିଜ ରାଜ୍ୟର ଝିଅ-ବୋହୂଙ୍କୁ ଶିକ୍ଷା ଜଗତର ନୂଆ ନୂଆ ବର୍ତ୍ତା ଦେଇ ମଣିଷ ପରି ମଣିଷ କରି ଗଢ଼ିବା ନିମନ୍ତେ । ଏତଦ୍‌ବ୍ୟତୀତ 'ମୋ କଥା'ରେ ସେ ଯେଉଁ ଭାଷା ଓ ଭାବ ପରଶି ଦେଇଛନ୍ତି ତାହା ଥିଲା ଗଣର ଭାଷା, ସାଧାରଣ ଜନତାର ଭାଷା ।

ସେଇ ଗଣର ଭାଷାରେ ଭଗବତ୍ ଗୀତା ଏବଂ ମାନବ ଧର୍ମର ନିର୍ଯ୍ୟାସକୁ ଅତି ସରଳ ଓ ସାବଲୀଳ ଭାଷାରେ "ବାଇମନ ଗୀତା ଲହରୀ" ପୁସ୍ତକରେ ପ୍ରଫେସର ଦାଶ ପରିବେଷଣ କରିଅଛନ୍ତି । ଏଇ ବହିଟି ପ୍ରଥମ ଖଣ୍ଡ ଓ ଦ୍ୱିତୀୟ ଖଣ୍ଡ : ଏହିପରି ଦୁଇ ଖଣ୍ଡରେ ପ୍ରକାଶିତ । ଏହା ୧୯୮୨ ମସିହାରେ ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ



ଭି.ଏସ୍.ଏସ୍ ନଗରସ୍ଥିତ ଲକ୍ଷ୍ମୀ ନିବାସରେ ପାଳିତ
ପ୍ରଥମ ଦୀପାବଳୀ ଉତ୍ସବ ୧୯୮୭



ସହଧର୍ମିଣୀଙ୍କ ସହିତ ଲକ୍ଷ୍ମୀ ନିବାସରେ, ୧୯୮୭



ନାତି-ନାତୁଣୀଙ୍କ ଗହଣରେ ପ୍ରଫେସର ଦାଶ :
ନାତି କ୍ରାନ୍ତି, ନିତ୍ୟ ଏବଂ ନାତୁଣୀ ବାଣୀ, ୧୯୯୦



ସାନପୁଅ କମଳର ବିବାହ ଉତ୍ସବ ଅବସରରେ
ଭି.ଏସ୍.ଏସ୍ ନଗର ଲକ୍ଷ୍ମୀ ନିବାସର ଏକ ବିରଳ ମୁହୂର୍ତ୍ତ, ୧୯୯୦

*Source: Author, Digitized by PPRACHIN, SOA*



ନାତି କ୍ରାନ୍ତିର ଜନ୍ମଦିନ ଅବସରରେ ପରିବାର ସହିତ
ପ୍ରଫେସର ଦାଶ, ୧୯୯୪



ପରିବାର ସହିତ ଏକ ମାଙ୍ଗଳିକ ଉତ୍ସବରେ
ପ୍ରଫେସର ଦାଶ, ୧୯୯୫



ପ୍ରଫେସର ଦାଶଙ୍କ ଦ୍ୱାରା ନିଜଗ୍ରାମ କେନ୍ଦୁଢିପରେ ପ୍ରତିଷ୍ଠିତ ପ୍ରାଥମିକ ବିଦ୍ୟାଳୟ



କେନ୍ଦୁଢିପ ପ୍ରାଥମିକ ବିଦ୍ୟାଳୟରେ ଗଣତନ୍ତ୍ର ଦିବସ ପାଳନ ଅବସରରେ

*Source: Author, Digitized by PPRACHIN, SOA*



ପ୍ରଫେସର ଦାଶଙ୍କ ପୁତ୍ର ନିର୍ମଳ, ବିମଳ, କମଳ ଓ କନ୍ୟା ମିନତିଙ୍କ ୧୯୬୩ ମସିହାରେ ରାଧାନାଥ ପ୍ରଶିକ୍ଷଣ ମହାବିଦ୍ୟାଳୟ ପରିସରରେ ନିଆଯାଇଥିବା ଫଟୋ।



ସହଧର୍ମିଣୀ, ଝିଅ ମିନତି, ଜ୍ୱାଇଁ ଶ୍ରୀକୃଷ୍ଣ ଏବଂ ପୁତ୍ର ନିର୍ମଳ, ବିମଳ, କମଳଙ୍କ ଗହଣରେ, ୧୯୮୦

*Source: Author, Digitized by PPRACHIN, SOA*



ପ୍ରଥମ ନାତି କ୍ରାନ୍ତିର ଶୁଭ ଆବିର୍ଭାବରଏକ ମାଙ୍ଗଳିକ ମୁହୂର୍ତ୍ତରେ
ସହଧର୍ମିଣୀ ଜାନକୀଙ୍କ ସହିତ ୮ନଂ ସରକାରୀ ବାସ ଭବନରେ ପ୍ରଫେସର ଦାଶ, ୧୯୮୩



ପ୍ରଫେସର ଦାଶ ସହଧର୍ମିଣୀଙ୍କ ସହିତ ବଡନାତି କ୍ରାନ୍ତି, ୧୯୮୪

*Source: Author, Digitized by PPRACHIN, SOA*



ସମୁଦି କୈଳାସ ମହାପାତ୍ର ଓ ବନ୍ଧୁ
ପ୍ରଫେସର ବ୍ରଜବନ୍ଧୁ ମିଶ୍ରଙ୍କ ସହିତ ପ୍ରଫେସର ଦାଶ



ଦୁଇ ସମୁଦିଙ୍କ ଗହଣରେ ପ୍ରଫେସର ଦାଶ, ମହେନ୍ଦ୍ର ନାଥ ଶରଣ
ଏବଂ ସୁଦର୍ଶନ ରଥ

*Source: Author, Digitized by PPRACHIN, SOA*

ପରିଷଦ, ଓଡ଼ିଶା, ଭୁବନେଶ୍ୱର ଆନୁକୂଲ୍ୟରେ ପ୍ରକାଶିତ । ଏହି ପୁସ୍ତକର ଉପସ୍ଥାପନ ଲେଖକଙ୍କର ପାଣ୍ଡିତ୍ୟ ଓ ବିଦ୍ୱତାର ପରିଚୟ ପ୍ରଦାନ କରେ :

ଏହାର ପ୍ରାରମ୍ଭରେ ଅଛି **ପୀଠର ପାଠିକା -୧** ଓ ତା'ପରେ ପରେ ଅଛି **ପୀଠର ପାଠିକା -୨** । ପୀଠର ପାଠିକା -୧ ହେଉଛି; ଏକ ପାଠ - ଏକ ପ୍ରଶ୍ନ - ଏକ ଆଶା ।

**"ଅଶ୍ମାପି ଯାତି ଦେବତ୍ୱଂ ମହ୍ୟଭିଃ ସୁପ୍ରତିଷ୍ଠିତ"**

ମଣିଷ ପଥରକୁ ଦେବତ୍ୱ ପ୍ରଦାନ କରିପାରେ । ଏ ପଥର କ'ଣ ମାନବକୁ ଦେବତ୍ୱ ପ୍ରଦାନ କରି ପାରିବ ? ମା'ର ପ୍ରଶ୍ନ ତୁମକୁ, ମା'ର ଆଶା ତୁମଠାରୁ ।

ପୀଠର ପାଠିକା -୨

*ମହତ ଜନର ପରଶ ପାଇଲେ — ଦାରୁ ହୁଏ ଜଗନ୍ନାଥ*
*ଶିଳା ବି ପାଲଟେ କେବେ ଶାଳଗ୍ରାମ — କେବେ ଅବା ଲୋକନାଥ ।*
*ହେ, ଦାରୁ ଦେବତା, ଆହେ ଲୋକନାଥ — ତୁମକୁ ମୋର ଏ ପ୍ରଶ୍ନ*
*ଦେବ ଶିଶୁ ମନେ ଦେବତ୍ୱ ସଂଚାର — କରି କରିବ କି ଧନ୍ୟ ?*
*ମାନସିଂ କହନ୍ତି, "ଦେବ ଶିଶୁ ଚଳେ — ନରକର ଅଭିସାରେ"*
*କହ ତେବେ ପ୍ରଭୁ, "ସଇତାନ କ'ଣ — ତୁମ ପଥ ରୋଧିପାରେ ?"*
*ତୁମ କଥା କହି ତୁମ ବାର୍ତ୍ତା ବହି — ଶିଳା କରୁ ତୁମ କାମ*
*ତୁମ ପଦରେଣୁ ସତ୍ୟଜ୍ଞାନ ହୋଇ — ଗଢ଼ି ଦେଉ ଦିବ୍ୟଧାମ ।*
*ପୁରାଣ କହୁଚି ଜ୍ଞାନବନ୍ତ ଲୋକ — ସତ୍ୟ କ୍ଷମା ଦୟା ଶାନ୍ତି*
*ଅହିଂସା ଅକ୍ରୋଧ ନିର୍ଲୋଭ ଭାବକୁ — ଧର୍ମ ବୋଲି ବିଚାରନ୍ତି ।*
*ଦେଖ ଖ୍ରୀଷ୍ଟଧର୍ମ ଦେଖ ଇସ୍‌ଲାମ — ଦେଖ ନାନକଙ୍କ ବାଣୀ*
*ଭାଷା ସିନା ଭିନ୍ନ ଭାବତ ସମାନ — ଏକ ଈଶ୍ୱରର ବାଣୀ ।*
*ମା' ମୁଁ କହୁଛି ଜାତି ଧର୍ମ ଭୁଲି — ମଣିଷକୁ ଭଲ ପାଅ*
*ସରବେ ତ ଏକା ପ୍ରଭୁର ସନ୍ତାନ — ଆନନ୍ଦେ କୋଳେଇ ନିଅ ।*

ଏତଦ୍‌ବ୍ୟତୀତ ମନର ସ୍ଥିରତା କିପରି ମୋକ୍ଷ ଆଣେ ସେ ସଂପର୍କରେ ମନ ସ୍ଥିରରୁ ମୋକ୍ଷ ଅଧ୍ୟାୟରେ ସେ ଲେଖିଛନ୍ତି :

*ବୁଦ୍ଧ ଯେ ପରମ ଈଶ୍ୱର — ଅଟେ ନବମ ଅବତାର ।*
*କେତେ ସରଳେ କହିଗଲେ — ନିଷ୍କାମ କାମ କର ଭଲେ ।*
*ଫଳ ଆଶାରେ କାମ କଲେ — ଅଶାନ୍ତି ଜାତ କାଳେକାଳେ ।*
*ଗୀତାରେ କୃଷ୍ଣ ତାହା କହି — ଲାଭ କ୍ଷତିରେ କିଛି ନାହିଁ ।*
*ଜୟ ଅଜୟ କଥା ଛାଡ଼ — ନିଜ କାମରେ ଲାଗିପଡ଼ ।*

ଦୁଃଖ ସୁଖରେ ସମଭାବ ରଖିଯେ କାମ କରି ଯିବ ।
ପାପ ତ ତାକୁ ଛୁଏଁ ନାହିଁ ନିର୍ଲିପ୍ତ ପୁରୁଷଟି ସେହି ।
ଆପଣା ମତେ କର୍ମ କରି କର୍ମ ବନ୍ଧନେ ନୁହେଁ ବାରି ।
ବନ୍ଧନ ଦୁଃଖର କାରଣ ତେଣୁ ନିର୍ଲିପ୍ତ ହେବୁ ଧନ ।
କର୍ମରେ ଅଧିକାର ଜାଣ ଫଳରେ ନାହିଁ କଦାଚନ ।
ଓଲଟା ବୁଝିବୁଟି ନାହିଁ ଅଳସେ ଦିନ ନେବୁ ନାହିଁ ।
କର୍ମର ପରେ ଆସୁ ସିଦ୍ଧି ଦଇବ ଜାଣେବା ଅସିଦ୍ଧି ।
ଏଥିରେ ବିଚଳିତ ନୋହି ତାହାକୁ ଜାଣ ଯୋଗ କହି ।
ଯୋଗ ହିଁ କର୍ମରେ କୌଶଳ କୌଶଳ ବିନା ନାହିଁ ଫଳ
ଯୋଗ ଭାବରେ କର୍ମ କଲେ ଫଳରେ ଦାୟୀ ନୁହେଁ ଭଲେ ।
କର୍ମଜ ଫଳ ନ ଭୁଞ୍ଜିଣ ମୋକ୍ଷ ଲଭନ୍ତି ନରଗଣ ।
ନାନା ଶାସ୍ତ୍ରର ନାନା କଥା ଭ୍ରାନ୍ତିରେ ପଡ଼ ନାହିଁ ବୃଥା ।
ବୁଦ୍ଧିକୁ ଯେବେ ଦୃଢ଼ କରୁ ଏକାଗ୍ର ଚିତ୍ତ ହୋଇପାରୁ ।
ଏହାକୁ ସମାଧିଟି କହି ସମାଧି ବଳେ ଯୋଗ ପାଇ ।
ଯୋଗରୁ ଆସେ ଦିବ୍ୟ ଭାବ ସିଦ୍ଧି ଅସିଦ୍ଧି ସମଭାବ ।
କାମନା ଲୋକ ଛାଡ଼େ ଯେବେ ସେ ସ୍ଥିତିପ୍ରଜ୍ଞ ହୁଏ ତେବେ ।
ପ୍ରାପ୍ତି ଅପ୍ରାପ୍ତି ନ ବିଚାରେ ଆତ୍ମାରୁ ଆନ ନ ସଂଚାରେ ।
ଦୁଃଖେ ଉଦ୍‌ବିଗ୍ନ ନୁହେଁ ମନ ସୁଖେ ବିଗତ ସ୍ପୃହ ଜାଣ ।
ବିଷୟ-ପ୍ରୀତି ତା'ର ନାହିଁ ଭୟ ବା କ୍ରୋଧ ହେବ କାହିଁ ?
ସୁଦୃଶ୍ୟ ସୁଖାଦ୍ୟ ଦେଖିଣ କୂର୍ମପରି ସେ ସଙ୍କୁଚିଣ ।
ଓହରି ଆସେ ସବୁ ଜାଣି ପ୍ରଜ୍ଞା ସ୍ଥିରତ୍ୱ ତହୁଁ ଜାଣି ।
ଯୋଗୀର ଏହାଟି ସ୍ୱରୂପ ଇନ୍ଦ୍ରିୟବଶେ ତା'ର ସୁଖ ।
ଭୋଗ ଲାଳସା ତା'ର ନାହିଁ ପରମାତ୍ମାରେ ଥାଏ ଧାୟି ।
ଇନ୍ଦ୍ରିୟ ବଶ ନୁହେଁ ଯେବେ ସର୍ବ ଲକ୍ଷଣ ଆସେ ତେବେ ।
ପ୍ରଥମେ ଜାତ କାମ-ଭାବ ଭୋଗ ଲାଳସା ତହିଁ ଥିବ ।
ଭୋଗରେ ବାଧା ଉପୁଜିଲେ କ୍ରୋଧ ସମ୍ଭବ ହୁଏ ଭଲେ ।
କ୍ରୋଧରୁ ଜାତ ମୂଢ଼ ଗୁଣ ଜ୍ଞାନର ଧ୍ୱଂସ ତହିଁ ଜାଣ ।
ଜ୍ଞାନ ଧ୍ୱଂସରୁ ସ୍ମୃତିଭ୍ରମ ତାପରେ ବୁଦ୍ଧି ବିନାଶନ ।
ବୁଦ୍ଧିନାଶରେ ସବୁ ଯାଇ କାର୍ଯ୍ୟ ଅକାର୍ଯ୍ୟ ନ ଦେଖଇ ।
ସେ ହେତୁ ନଷ୍ଟ ହୁଏ ନର ଅମଣିଷଟି ତାକୁ ଧର ।
ଅନ୍ୟ ପକ୍ଷରେ ଜାଣ ବାଇ ବିଷୟ ପ୍ରୀତି ଦୂରେ ରହି ।
ଇନ୍ଦ୍ରିୟ ସଂଯମ କରିଲେ ମୋକ୍ଷ ଆଡ଼କୁ ମନ ଥିଲେ ।

*ପ୍ରସନ୍ନ ରହେ ସଦା ମନ ଶାନ୍ତ ନିର୍ମଳ ଦୋଷହୀନ ।*
*ଚିର ଶାନ୍ତିରୁ ଜାତ ସୁଖ ଯୋଗୀର ନ ଥାଏଟି ଦୁଃଖ ।*
*ନଦୀରୁ ସୁଅ ପାଣି ଧରି ସମୁଦ୍ର ଶାନ୍ତ ଥିବାପରି ।*
*ଯେତେ କାମନା ସୁଅ ଆସୁ ସ୍ଥିର ଚିତ୍ତରେ ଲିଭି ମିଶୁ ।*
*ପ୍ରାପ୍ତି ଆଶାକୁ ନ ରଖିଣ କର୍ତ୍ତବ୍ୟ କରିଯାଅ ପୁଣ ।*
*ଏହାକୁ ବ୍ରହ୍ମନିଷ୍ଠା କହି ବ୍ରହ୍ମ ନିର୍ବାଣ ମିଳେ ତହିଁ ।*
*ସାଂଖ୍ୟ ଯୋଗର ସାର କଥା ବାଇ ତୁ ମନରେ ହେଜୁଥା ।*
*ସଦା ଗୋବିନ୍ଦ ପଦେ ଶିର ଶଦା ବୋଲଇ ଗୀତା ସାର ।*

ଏହିପରି ଯୋଗର ସ୍ୱରୂପ ଆତ୍ମା କିପରି ଈଶ୍ୱର ବ୍ରହ୍ମ ବା ଭଗବାନଙ୍କ ସହିତ ମିଶିଯାଏ, ତାହା ବାଇମନ ଗୀତାରେ ଲହରୀରେ ବୁଝାଇ ଦିଆଯାଇଅଛି । ଏତଦ୍‌ବ୍ୟତୀତ ଜନ୍ମମରଣ ଜ୍ଞାନ, ନିଷ୍କାମ କର୍ମର ପ୍ରଭାବ ଆଦି ମଧ୍ୟ ନବାକ୍ଷରି ଛନ୍ଦରେ ପ୍ରଫେସର ଦାଶ ଅତି ସୁନ୍ଦର ଭାବେ ବର୍ଣ୍ଣନା କରି ପାଠକୀୟ ଆଦୃତି ଲାଭ କରିଅଛନ୍ତି ।

ପ୍ରଫେସର ଦାଶ ଶିକ୍ଷା ଓ ସାହିତ୍ୟ କ୍ଷେତ୍ରରେ ଉଲ୍ଲେଖନୀୟ ଅବଦାନ ନିମନ୍ତେ ରାଜ୍ୟର ବିଭିନ୍ନ ଅନୁଷ୍ଠାନମାନଙ୍କ ଦ୍ୱାରା ସମ୍ବର୍ଦ୍ଧିତ ହୋଇଛନ୍ତି । ସେ ପ୍ରଜାତନ୍ତ୍ର ପ୍ରଚାର ସମିତି ଦ୍ୱାରା ମଧ୍ୟ ସମ୍ବର୍ଦ୍ଧିତ ହୋଇଛନ୍ତି । ଏତଦ୍‌ବ୍ୟତୀତ ୧୯୯୯ ମସିହାରେ ପ୍ରଦେଶ କଂଗ୍ରେସ କମିଟି ଶିକ୍ଷକ ପ୍ରକୋଷ୍ଠ ଆନୁକୂଲ୍ୟରେ ସେପ୍ଟେମ୍ବର ମାସ ୫ ତାରିଖରେ ଗୁରୁଦିବସ ଉପଲକ୍ଷେ ଆୟୋଜିତ ସ୍ୱତନ୍ତ୍ର ଉତ୍ସବରେ **'ଶିକ୍ଷକ ଗୌରବ'** ସମ୍ମାନ ଲାଭ କରିଛନ୍ତି । ତାଙ୍କ ସହିତ ପ୍ରଫେସର ପୂର୍ଣ୍ଣଚନ୍ଦ୍ର ରାଉତଙ୍କୁ ଉତ୍ତମ **'ଶିକ୍ଷକ ଜ୍ୟୋତି'** ସମ୍ମାନ ଓ ଡକ୍ଟର ଦିଗରାଜ ବ୍ରହ୍ମାଙ୍କୁ ଏହି ଅନୁଷ୍ଠାନ ତରଫରୁ **'ଶିକ୍ଷକ ସମ୍ମାନ'** ପ୍ରଦାନ କରାଯାଇଥିଲା ।

ଏହି ଅବସରରେ ଅଧ୍ୟାପକ ଯୁଧିଷ୍ଠିର ଖଟୁଆଙ୍କ ରଚିତ ପୁସ୍ତକ "Higher Education for Tribal People of Odisha" ପ୍ରଫେସର ଶରତ ଚନ୍ଦ୍ର ଦାଶଙ୍କ ଦ୍ୱାରା ଉନ୍ମୋଚିତ ହୋଇଥିଲା ।

**ପ୍ରଫେସର ଶରତ ଚନ୍ଦ୍ର ଦାଶ ମେମୋରିଆଲ୍ ଟ୍ରଷ୍ଟ**

ପ୍ରଫେସର ଦାଶ ଅଧ୍ୟକ୍ଷଭାବେ ପ୍ରଥମେ ସରକାରୀ ପ୍ରଶିକ୍ଷଣ ମହାବିଦ୍ୟାଳୟ, ବ୍ରହ୍ମପୁରଠାରେ ଅବସ୍ଥାପିତ ଥିଲେ । ଜୀବନର ବିଭିନ୍ନ ସମୟରେ, ଏପରିକି ସରକାରୀ ଚାକିରିରୁ ଅବସର ନେଲାପରେ, ସେ ଏହି ଅନୁଷ୍ଠାନ ପ୍ରତି ବିଭିନ୍ନ ସମୟରେ ନିଜର ଭାବଗତ ସଂପୃକ୍ତି ପ୍ରକାଶ କରୁଥିଲେ । କାରଣ ଏହି ଅନୁଷ୍ଠାନର ମୁଖ୍ୟ ହେଲା ପରେ

ସେ ନିଜର ବହୁମୁଖୀ ପ୍ରଶାସନିକ ଚିନ୍ତା ଓ ଚେତନାକୁ ସଫଳତାର ସହିତ କାର୍ଯ୍ୟକାରୀ କରାଇଥିଲେ । ଯେମିତି ଏହି ଅନୁଷ୍ଠାନଟି ଥିଲା ତାଙ୍କ ଶୈକ୍ଷିକ ଚିନ୍ତା ଓ ଚେତନାର ଏକ ପରୀକ୍ଷାଗାର ।

ପିତାଙ୍କ ଏଇ ଅନୁଷ୍ଠାନ ପ୍ରତି ବିଶେଷ ଅନୁରକ୍ତି ଦେଖି ପ୍ରଫେସର ଦାଶଙ୍କ ବଡ଼ପୁଅ ତତ୍‌କାଳୀନ ଖଲିକୋଟ ସ୍ୱୟଂଶାସିତ ମହାବିଦ୍ୟାଳୟର ନୃତତ୍ତ୍ୱ ବିଭାଗର ପ୍ରାଧ୍ୟାପକ ନିର୍ମଳ ଚନ୍ଦ୍ର ଦାଶ ୧୪ ଜୁଲାଇ ୨୦୦୦ ମସିହାରେ ବ୍ରହ୍ମପୁର ଦିବାକର ପଟ୍ଟନାୟକ ଉଚ୍ଚତର ଶିକ୍ଷା ଗବେଷଣା ପ୍ରତିଷ୍ଠାନର ଅଧ୍ୟକ୍ଷ ଡକ୍ଟର ରାମଚନ୍ଦ୍ର ପାଢ଼ୀଙ୍କ ସହାୟତାରେ ପ୍ରଫେସର ଶରତ ଚନ୍ଦ୍ର ଦାଶ ମେମୋରିଆଲ୍ ଟ୍ରଷ୍ଟ ସରକାରଙ୍କ ଅନୁମୋଦନକ୍ରମେ ଗଠନ କରିଥିଲେ । ଏଥିପାଇଁ ଏକ ନିର୍ଦ୍ଦିଷ୍ଟ ଅର୍ଥ ରାଶି ଇଣ୍ଡିଆନ୍ ବ୍ୟାଙ୍କର କନିଷି ଶାଖାରେ ଜମା କରାଯାଇଅଛି । ଏହି ଜମା ରାଶିର ସୁଧ ଅର୍ଥରେ ପ୍ରତିବର୍ଷ ଡକ୍ଟର ଶରତ ଚନ୍ଦ୍ର ଦାଶ ମେଧା ପୁରସ୍କାର ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଦ୍ୱାରା ଅନୁଷ୍ଠିତ କରିଥିବା ବି.ଏଡ୍ ଓ ଏମ୍.ଏଡ୍ ପରୀକ୍ଷାରେ ପ୍ରତିଷ୍ଠାନର ସର୍ବୋଚ୍ଚ ନମ୍ବର ରଖି ପ୍ରଥମ ହୋଇଥିବା ପରୀକ୍ଷାର୍ଥୀଙ୍କୁ ପ୍ରଫେସର ଶରତ ଚନ୍ଦ୍ର ଦାଶ ମେମୋରିଆଲ୍ ଟ୍ରଫି ପ୍ରଦାନ କରାଯାଉଅଛି ।

ଏହି ପୁରସ୍କାର ୨୦୦୦ ମସିହାରୁ ଅଧ୍ୟାବଧି ଦିବାକର ପଟ୍ଟନାୟକ ଉଚ୍ଚତର ଶିକ୍ଷା ଗବେଷଣା ପ୍ରତିଷ୍ଠାନ ଦ୍ୱାରା ଅନୁଷ୍ଠିତ ବାର୍ଷିକ ଉତ୍ସବରେ ପ୍ରଦାନ କରାଯାଉଅଛି ।

ଏତଦ୍‌ବ୍ୟତୀତ ପ୍ରଫେସର ଡକ୍ଟର ଶରତ ଚନ୍ଦ୍ର ଦାଶ ମେମୋରିଆଲ୍ ଟ୍ରଷ୍ଟ ଯେଉଁ ସଦସ୍ୟମାନଙ୍କୁ ନେଇ ପରିଚାଳିତ ସେମାନେ ହେଲେ :

- ଅଧ୍ୟକ୍ଷ ଦିବାକର ପଟ୍ଟନାୟକ, ଉଚ୍ଚତର ଗବେଷଣା ପ୍ରତିଷ୍ଠାନ – ସଭାପତି
- ଦୁଇଜଣ ବରିଷ୍ଠ ଅଧ୍ୟାପକ – ସଦସ୍ୟ
- ଦାତା କିମ୍ୱା ଦାତାଙ୍କ ଦ୍ୱାରା ମନୋନୀତ ଜଣେ ସଦସ୍ୟ ।

## ପାରିବାରିକ ଦାୟିତ୍ୱ ଓ କର୍ତ୍ତବ୍ୟବୋଧ

ମାତ୍ର ୩୨ ବର୍ଷ ବୟସରେ ୧୯୪୪ ମସିହାରେ ଶରତଙ୍କ ମାଆ ରାଧାରାଣୀ ଦେବୀଙ୍କ ବିୟୋଗ ଘଟିଲା । ସେତେବେଳକୁ ଶରତଙ୍କୁ ହୋଇଥିଲା ୧୪ ବର୍ଷ ବୟସ । ସେ ସମୟରେ ଶରତଙ୍କ ମନରେ ପରିବାର ପ୍ରତି ଯେଉଁ ଦାୟିତ୍ୱ ଓ କର୍ତ୍ତବ୍ୟବୋଧର ଉନ୍ମେଷ ଓ ବିକାଶ ଘଟିଥିଲା ତାହା ପୁଣି ୧୯୭୭ ମସିହାରେ ପିତା ମହେଶ୍ୱର ଦାଶଙ୍କ ବିୟୋଗ ପରେ ଦ୍ୱିଗୁଣିତ ହୋଇଥିଲା ।

ଯୁବକ ଶରତ ସାନ ସାନ ତିନିଭାଇଙ୍କ ପ୍ରତି ନିଜର ଦାୟିତ୍ୱ ଓ କର୍ତ୍ତବ୍ୟବୋଧ ଭାତୃନିଷ୍ଠ ରାମଚନ୍ଦ୍ରଙ୍କ ଭଳି ପ୍ରତିଟି ମୁହୂର୍ତ୍ତରେ ସଂପାଦନ କରୁଥିଲେ । ସେ ସଂପର୍କରେ

ତାଙ୍କର ସାନ ଭାଇ ରଜତ ଚନ୍ଦ୍ର ଦାଶ ଅତି ନିଖୁଣ ଭାବେ 'ଅର୍ଘ୍ୟ'ରେ ଯାହା ବର୍ଣ୍ଣନା କରିଛନ୍ତି ତାହା ହେଉଛି ଏହିପରି : "ସେ ମୋଠାରୁ ଦୁଇ ବର୍ଷ ବଡ଼ ଥିଲେ । ସେ ଗାଁକୁ ଛୁଟିରେ ଆସିଲେ ଆମେ ଏକାଠି ଖେଳିବା, ଖାଇବା ଆଦି ସମସ୍ତ କାର୍ଯ୍ୟ କରୁ । ସେ ପଢ଼ିଲାବେଳେ ମୁଁ ମଧ୍ୟ ଭୁବନ ମାଇନର ସ୍କୁଲ ହଷ୍ଟେଲରେ ଦୁଇ ଚାରିଦିନ ଲେଖା ରହେ । ଢେଙ୍କାନାଳର ବି.ବି. ହାଇସ୍କୁଲ ଓ ରେଭେନ୍‌ସା କଲେଜରେ ପଢୁଥିବା ସମୟରେ ମଝିରେ ମଝିରେ ସେ ମୋତେ ତାଙ୍କ ପାଖରେ ଦୁଇ ଚାରିଦିନ ରଖାନ୍ତି ।"

"୧୯୭୭ ମସିହାରେ ପିତା ମହେଶ୍ୱର ଦାଶଙ୍କର ବିୟୋଗ ଘଟିଲା । ସେ ନିଜ ପରିବାର ଓ ଘରର ସମସ୍ତ ଦାୟିତ୍ୱ ନେବା ଆରମ୍ଭ କରିଦେଲେ । ମୋ ତଳଭାଇ ଜଗତ ଓ ଅଦ୍ୱୈତର ପାଠପଢ଼ାର ଦାୟିତ୍ୱ ବହନ କରିଛନ୍ତି । ଏତଦ୍‌ବ୍ୟତୀତ ମୋର ଦୁଇ ଝିଅ ସୁଷମା ଓ କୁସୁମଙ୍କର ବିବାହ ଆଦି କାର୍ଯ୍ୟ କରିଛନ୍ତି ।"

ଚାକିରି ଜୀବନରୁ ଟିକିଏ ଅବ୍ୟାହତି ମିଳିଲେ ଶରତ ଚନ୍ଦ୍ର ଗାଁକୁ ଚାଲିଯାଉଥିଲେ । ଗାଁରେ ସାନ ସାନ ଭାଇ ଓ ଅନ୍ୟ ପିଲାମାନଙ୍କୁ ପାଠ ପଢ଼ାଉଥିଲେ । ସେ ପାଠ ପଢ଼ାଉଥିବା ପିଲାଙ୍କ ମଧ୍ୟରେ ଶ୍ରୀବସ୍ତ ତ୍ରିପାଠୀ ଚାକିରି ଜୀବନରେ ଅତିରିକ୍ତ ଶାସନ ସଚିବ ପଦକୁ ଯାଇଥିଲେ । ତାଙ୍କ ପିତା ମହେଶ୍ୱର ଦାଶଙ୍କ ଦ୍ୱାରା ୧୯୫୨ ମସିହାରେ ଜନ୍ମିତ ନାତି ନିର୍ମଳଙ୍କ ସ୍ମୃତି ଉଦ୍ଦେଶ୍ୟରେ ନିର୍ମିତ "**ନିର୍ମଳ ମଣ୍ଡପ**" ଥିଲା ଶିକ୍ଷା, ସଂସ୍କୃତି ଓ ଆଲୋଚନାର ମୂଳ କ୍ଷେତ୍ର । ଏବେ ଏହି ମଣ୍ଡପ ଅତୀତର ସେହି ଐତିହ୍ୟ ସଂପନ୍ନ ସଂସ୍କୃତିର ପୀଠସ୍ଥଳ ହୋଇଅଛି ।

ନିଜ ପରିବାର ଓ ଗାଁର ଲୋକମାନଙ୍କ ପାଇଁ ଶରତଚନ୍ଦ୍ରଙ୍କ ମନରେ ଅହେତୁକ ଶ୍ରଦ୍ଧା ଥିଲା । କେହି ଯଦି ବିପଦ ଆପଦରେ ପଡୁଥିଲେ ସେ ଅକୁଣ୍ଠିତ ଭାବେ ସେମାନଙ୍କୁ ସାହାଯ୍ୟ କରିବାକୁ ଭୁଲୁ ନ ଥିଲେ । ଅବଶ୍ୟ ସାହାଯ୍ୟ ପାଇଁ ନୁହେଁ; ବରଂ କର୍ତ୍ତବ୍ୟବୋଧର ଆହ୍ୱାନରେ ।

୧୯୭୬ ମସିହା, ଡିସେମ୍ବର ମାସ ବଡ଼ଦିନ ଛୁଟି ଉପଲକ୍ଷେ ଶରତ ଚନ୍ଦ୍ର ଗାଁକୁ ଆସିଥାନ୍ତି । ସେହି ସମୟରେ ତାଙ୍କର କକେଇ ହରିବନ୍ଧୁ ଦାଶଙ୍କ ପୁଅ ନୀଳକଣ୍ଠ ଦାଶ (ମିହିର) ଗାଁ ଦାଣ୍ଡରେ ଖେଳୁଥିଲେ । ଏହି ସମୟରେ ଏକ ବୁଲା କୁକୁର ଆସି ତାଙ୍କୁ କାମୁଡ଼ି ଦେଲା । ସେତେବେଳେ ସେ ଗାଁ ସ୍କୁଲର ଚତୁର୍ଥ ଶ୍ରେଣୀରେ ପଢୁଥାନ୍ତି । ମିହିରକୁ କୁକୁର କାମୁଡ଼ା ଦେଖି ତା'ପର ଦିନ ଶରତ ନେଇ ଆସିଲେ ଭୁବନେଶ୍ୱର । ଭୁବନେଶ୍ୱରରେ କୁକୁର କାମୁଡ଼ା ପ୍ରତିଷେଧକ ଇଂଜେକସନ୍ ଦିଆଗଲା । ଏକ ମାସ

ପର୍ଯ୍ୟନ୍ତ ଭୁବନେଶ୍ୱରରେ ଚିକିତ୍ସିତ ହେବା ପରେ ମିହିର ପୁଣି ଗାଁକୁ ସୁସ୍ଥ ହୋଇ ଆସିଥିଲେ ।

ମାତ୍ର ସେହି ପାଗଳା କୁକୁରଟି ଆଉ ଜଣକୁ କାମୁଡ଼ି ଦେଇଥିଲା । ଚିକିତ୍ସା ଅଭାବରେ ସେହି ଲୋକଟି ଜଳାତଙ୍କ ରୋଗରେ ଆକ୍ରାନ୍ତ ହୋଇ ଜୀବନ ଦେଇଥିଲା ।

ସେଥିପାଇଁ ମିହିର ଦଦେଇ ପୁଅ ଭାଇ ଶରତଙ୍କ ପ୍ରତି ଗଭୀର ଶ୍ରଦ୍ଧା ଓ ଭକ୍ତି ନିବେଦନ କରି କହନ୍ତି, "ଭୁବନେଶ୍ୱରରେ ଚିକିତ୍ସିତ ହୋଇ ମୁଁ ନୂଆ ଜୀବନ ପାଇଥିଲି ।"

ପୁଣି କହନ୍ତି, "ମୋର ପୂଜ୍ୟ ପିତା ହରିବନ୍ଧୁ ଦାଶ ସତ୍ୟ ଓ ନ୍ୟାୟର ପ୍ରତୀକ ଥିଲେ ବୋଲି ଆପଣ କହନ୍ତି, ତାଙ୍କ ଭଳି ଯେଉଁ କ୍ୱଚିତ ମଣିଷଙ୍କୁ ମୁଁ ଜାଣିଛି ସେଥିରୁ ଆପଣ ଅନ୍ୟତମ ।"

ସେଥିପାଇଁ ଶରତ ଚନ୍ଦ୍ର ତାଙ୍କର ଜୀବନକାଳରେ ନିଜର ମହନୀୟତା ପ୍ରକାଶ କରିବାକୁ ଯାଇ କହନ୍ତି, ***"ମୁଁ କେବେ କାହାପାଇଁ ଯେ କ'ଣ କରିଛି, ତାହା ତିଳେ ମାତ୍ର ମୋ ହୃଦୟକୁ ସ୍ପର୍ଶ କରି ନାହିଁ । ମାତ୍ର ଯାହା କରିଛି, ତାହା ମୋର ଦାୟିତ୍ୱ ଓ କର୍ତ୍ତବ୍ୟବୋଧ ଆହ୍ୱାନରେ ।"***

ଏହି ଦରଦୀ ମଣିଷ ଜଣକ ନିଜ ଚାରି ପାର୍ଶ୍ୱରେ ରହୁଥିବା ପଶୁପକ୍ଷୀମାନଙ୍କ ପ୍ରତି ମଧ୍ୟ ସମ୍ବେଦନଶୀଳ ଥିଲେ । ଆବଶ୍ୟକସ୍ଥଳେ ସେମାନଙ୍କର ସେବା ଶୁଶ୍ରୂଷା ମଧ୍ୟ କରୁଥିଲେ । ସେ ୧୯୫୫ ମସିହାରୁ ୧୯୯୦ ମସିହା ପର୍ଯ୍ୟନ୍ତ ପାଳିଥିବା ଗୋବତ୍ସମାନଙ୍କର ମଧ୍ୟ ଯତ୍ନ ନେଉଥିଲେ । ପ୍ରଫେସର ଦାଶଙ୍କ ପରିବାରର ଅନ୍ୟତମ ଶ୍ରେଷ୍ଠ ସଦସ୍ୟ ଓ ମାତୃଭୂମିକାର ସ୍ଥାନ ପାଇଥିଲା ତାଙ୍କ ଦ୍ୱାରା ପାଳିତ ଗୋମାତା 'ଚାନ୍ଦ' । ସେ ଚାନ୍ଦକୁ ଦୀର୍ଘ ଏକ ଦଶନ୍ଧିରୁ ଅଧିକକାଳ ମା'ର ମର୍ଯ୍ୟାଦା ଦେଇ ଲାଳନ ପାଳନ କରିଥିଲେ । ଚାନ୍ଦ ଥିଲା ତାଙ୍କଦ୍ୱାରା ପାଳିତ ଗାଈମାନଙ୍କ ମଧ୍ୟରେ ସର୍ବଶେଷ ଗାଈ । ୧୯୯୦ ମସିହାରେ ଚାନ୍ଦ ଶେଷ ନିଃଶ୍ୱାସ ତ୍ୟାଗ କରିଥିଲା । ପ୍ରଫେସର ଦାଶ ଚାନ୍ଦକୁ ଶ୍ରଦ୍ଧା ଓ ଭକ୍ତିର ସହିତ ଚକେଇସିଆଣିସ୍ଥ ନିଜର ବଗିଚା ଘର (ଫାର୍ମ ହାଉସ) ପରିସରରେ ସମାଧି ଦେଇଥିଲେ ।

**ନିଜ ସ୍ଥାନ ପ୍ରତି କର୍ତ୍ତବ୍ୟ**

ସାମାଜିକ, ବୌଦ୍ଧିକ ଓ ଆଧ୍ୟାତ୍ମିକ ଚିନ୍ତାଧାରାର ଭାବ ଓ ବିନ୍ୟାସରେ ଶୈଶବରୁ ଗଢ଼ା ପ୍ରଫେସର ଦାଶ ନିଜ ମଧ୍ୟରେ ସମାଜକୁ ଯେପରି ଦେଖୁଥିଲେ, ତାହାଥିଲା ଅନନ୍ୟ । ସେଥିପାଇଁ ସେ ପରିଣତ ବୟସରେ ନିଜ ପରିବେଶ ଓ ଗାଆଁର ଉନ୍ନତି କଳ୍ପେ ବହୁବିଧ କାର୍ଯ୍ୟରେ ସହାୟତାର ହାତ ବଢ଼ାଇ ଥିଲେ । ତାଙ୍କ ଉଦ୍ୟମରେ ଦିଘି

ଗ୍ରାମରେ ଅବସ୍ଥିତ ନିମ୍ନ ପ୍ରାଥମିକ ବିଦ୍ୟାଳୟକୁ ଉଚ୍ଚ ପ୍ରାଥମିକ ବିଦ୍ୟାଳୟସ୍ତରକୁ ଉନ୍ନୀତ କରାଯାଇଥିଲା । ଏତଦ୍‌ବ୍ୟତୀତ ତାଙ୍କ ନିଜ ପ୍ରଚେଷ୍ଟାରେ ଜନ୍ମିତ ଗ୍ରାମ କେନ୍ଦୁଢ଼ିପରେ ଏକ ନିମ୍ନ ପ୍ରାଥମିକ ବିଦ୍ୟାଳୟ ମଧ୍ୟ ସ୍ଥାପିତ ହୋଇଥିଲା ।

ପ୍ରଫେସର ଦାଶ ଭି.ଏସ୍.ଏସ୍ ନଗରରେ ଘର କରିବା ଦିନରୁ ନୂତନ ଭାବେ ଗଢ଼ି ଉଠିଥିବା ସେହି ଅଞ୍ଚଳର ବିକାଶ କ୍ଷେତ୍ରରେ ନିଜକୁ ନିୟୋଜିତ କରୁଥିଲେ । ତାଙ୍କ ଉଦ୍ୟମରେ ବୀର ସୁରେନ୍ଦ୍ରସାଏ ଉନ୍ନୟନ ପରିଷଦ ଗଢ଼ି ଉଠିଥିଲା । ଏତଦ୍‌ବ୍ୟତୀତ ସମସ୍ତ ବରିଷ୍ଠ ନାଗରିକମାନଙ୍କୁ ଧରି ସେ ବରିଷ୍ଠ ନାଗରିକ ସଂଗଠନ ମଧ୍ୟ ଗଢ଼ିଥିଲେ ।

ବୀର ସୁରେନ୍ଦ୍ର ସାଏ ନଗରର ଅଧିବାସୀମାନେ ପ୍ରଫେସର ଦାଶଙ୍କ ସାମାଜିକ ଓ ସାଂସ୍କୃତିକ ଆଭିମୁଖ୍ୟକୁ ସାଦରରେ ଗ୍ରହଣ କରୁଥିଲେ । ସେଥିପାଇଁ ସେ ଥିଲେ, ସେମାନଙ୍କ ପାଇଁ ଜଣେ ପରମ ହିତୈଷୀ ଓ ପର ଉପକାରୀ ବ୍ୟକ୍ତି । ୧୯୮୬ ମସିହାରେ ସେ ମାଧ୍ୟମିକ ଶିକ୍ଷା ନିର୍ଦ୍ଦେଶକ ଥିଲାବେଳେ ତାଙ୍କ ପ୍ରଚେଷ୍ଟାରେ ଭିଏସ୍ଏସ୍ ନଗରରେ ସରକାରୀ ଉଚ୍ଚ ଇଂରାଜୀ ବିଦ୍ୟାଳୟର ପ୍ରଭୂତ ଉନ୍ନତି ସାଧିତ ହୋଇଥିଲା । ଏହାର ମୁଖ୍ୟ ହିସାବରେ ସେଠାରେ ରାଜ୍ୟର ପ୍ରବୀଣ ପ୍ରଧାନଶିକ୍ଷକ ଗୁରୁପ୍ରସାଦ ପ୍ରଧାନଙ୍କୁ ଅବସ୍ଥାପିତ କରାଇଥିଲେ । ପ୍ରଫେସର ଦାଶ ଓ ବୀର ସୁରେନ୍ଦ୍ର ସାଏ ନଗରସ୍ଥ ଅଧିବାସୀଙ୍କ ଉଦ୍ୟମରେ ଅଶୀ ଦଶକରେ ସେଠାରେ ଶ୍ରୀ ଶ୍ରୀ ନୀଳକଣ୍ଠେଶ୍ୱର ମହାଦେବଙ୍କ ମନ୍ଦିର ନିର୍ମାଣ କରାଯାଇଥିଲା । ଏହି ମନ୍ଦିରର ପ୍ରତିଷ୍ଠା ୧୯୮୪ ମସିହାର ମେ ମାସ ୬ ତାରିଖ ବୈଶାଖ ଶୁକ୍ଳ ପଞ୍ଚମୀ ତିଥି ଦିନ ଅନୁଷ୍ଠିତ ହୋଇଥିଲା । ମନ୍ଦିର ପାଇଁ ଗଢ଼ାଯାଇଥିବା ଟ୍ରଷ୍ଟର ପ୍ରଥମ ସଭାପତି ଥିଲେ ପ୍ରଫେସର ଦାଶ । ବୀର ସୁରେନ୍ଦ୍ର ସାଏ ନଗରର ପୂଜାମଣ୍ଡପ ହେଉଛି ତାଙ୍କର ଅନ୍ୟ ଏକ ଅବଦାନ । ଏତଦ୍‌ବ୍ୟତୀତ ସେଠାକାର ପ୍ରାଥମିକ ବିଦ୍ୟାଳୟକୁ ଉନ୍ନୀତ ମଧ୍ୟ ଇଂରାଜୀ ବିଦ୍ୟାଳୟରେ ମଧ୍ୟ ପରିଣତ କରାଇଥିଲେ ।

ତାଙ୍କ ସହଧର୍ମିଣୀଙ୍କ ନାମରେ ପ୍ରତିବର୍ଷ ଦୁଇଜଣ କୃତିଛାତ୍ରଛାତ୍ରୀଙ୍କୁ ପୁରସ୍କାର ଦେବା ନିମନ୍ତେ କିଛି ଅର୍ଥ ରାଶି ପ୍ରଦାନ ପୂର୍ବକ ୭ମ ଓ ୧୦ମ ପରୀକ୍ଷାରେ ସର୍ବୋଚ୍ଚ ନମ୍ବର ରଖିଥିବା ଶିକ୍ଷାର୍ଥୀଙ୍କୁ ପୁରସ୍କାର ଦେବାର ବନ୍ଦୋବସ୍ତ ମଧ୍ୟ କରିଥିଲେ । ସେହି ପୁରସ୍କାର ଅଧ୍ୟାବଧି ଅନୁଷ୍ଠାନ ତରଫରୁ ପ୍ରତିବର୍ଷ ପ୍ରଦାନ କରାଯାଉଅଛି ।

ଯେ କୌଣସି ଅନୁଷ୍ଠାନ ସେ ସମୟରେ ବୀର ସୁରେନ୍ଦ୍ର ସାଏ ନଗରରେ ଗଢ଼ି ଉଠୁଥିଲା, ସେ ସବୁର ପ୍ରଥମ ସଭାପତି ହିସାବରେ ତାଙ୍କୁ ସର୍ବସମ୍ମତି କ୍ରମେ ରଖାଯାଉଥିଲା ।

ନୂତନଭାବେ ଗଢ଼ି ଉଠିଥିବା ବୀର ସୁରେନ୍ଦ୍ର ସାଏ ନଗରର ଅଳ୍ପଦୂରରେ ଅବସ୍ଥିତ ଚକେଇସିଆଣି ଗ୍ରାମ ହେଉଛି ଏକ ଐତିହ୍ୟସଂପନ୍ନ ଗ୍ରାମ । ପ୍ରତିଦିନ ପ୍ରାତଃ ଭ୍ରମଣରେ ପ୍ରଫେସର ଦାଶ ଯେତେବେଳେ ବୁଲିଯାଆନ୍ତି, ସେତେବେଳେ ଏଇ ଗ୍ରାମ ସହିତ କ୍ରମଶଃ ତାଙ୍କର ଭାବଗତ ଏକତା ପ୍ରତିଷ୍ଠା ହୁଏ । ଏହି ଗ୍ରାମର ମାନ୍ୟଗଣ୍ୟ ବ୍ୟକ୍ତିଙ୍କ ସାହଚର୍ଯ୍ୟରେ ସେ ମଧ୍ୟ ସେ ଗ୍ରାମର ବିକାଶ ଦିଗରେ ଅନେକ ସମୟରେ ସହାୟତାର ହାତ ବଢ଼ାଇଥିଲେ । ତାଙ୍କ ପ୍ରଚେଷ୍ଟା ଓ ଅବଦାନ ସ୍ୱରୂପ ଚକେଇସିଆଣି ଉଚ୍ଚ ପ୍ରାଥମିକ ବିଦ୍ୟାଳୟର ବିକାଶ ସାଧିତ ହୋଇଅଛି । ଏତଦ୍‌ବ୍ୟତୀତ ବ୍ୟକ୍ତିଗତ ସ୍ତରରେ ଯେଉଁମାନେ ତାଙ୍କର ସାହାଯ୍ୟ ଓ ସମର୍ଥନ ଲୋଡ଼ିଛନ୍ତି, ତାହା ମଧ୍ୟ ସେମାନେ ପାଇଛନ୍ତି ।

**ଜୀବନର ଉତ୍ତରାୟଣ**

ସରକାରୀ ଚାକିରିରୁ ୧୯୮୯ ମସିହା ୩୧ ତାରିଖରେ ପ୍ରଫେସର ଦାଶ ଅବସର ନେଇଥିଲେ । ଅବସରକାଳୀନ ପରବର୍ତ୍ତୀ ଜୀବନ ତାଙ୍କର କଟିଥିଲା ସେ ରାଜ୍ୟ ଗୃହ ନିର୍ମାଣ ସଂସ୍ଥାରୁ ୧୯୭୩ ମସିହାରେ ଭୁବନେଶ୍ୱରସ୍ଥିତ ବୀର ସୁରେନ୍ଦ୍ର ସାଏ ନଗରରେ କିଣିଥିବା ଏମ୍.ଆଇ.ଜି ଘର ବି.ଏମ୍-୧୬ରେ । ରାଜ୍ୟର ବଡ଼ ବଡ଼ ପଦବୀରେ ରହିଥିବା ଏହି ଶିକ୍ଷାବିତ୍ ଜଣକ ରାଜ୍ୟ ସରକାରଙ୍କ କୋଟି କୋଟି ଟଙ୍କାର ଦାୟିତ୍ୱରେ ରହିଥିଲେ ମଧ୍ୟ ସେ ସବୁ ପ୍ରତି ଧ୍ୟାନ ନ ଦେଇ ନିଜ ପାଇଁ କିଣିଥିଲେ ମଧ୍ୟବିତ୍ତ ରୋଜଗାରକ୍ଷମ ବ୍ୟକ୍ତିମାନଙ୍କ ପାଇଁ ସରକାରଙ୍କର ଉଦ୍ଦିଷ୍ଟ ଥିବା ଏମ୍.ଆଇ.ଜି. ଘରଟିଏ ।

ସେହି ଘରଥିଲା ତାଙ୍କର ଉତ୍ତରାୟଣର ଚିନ୍ତା ଓ ଚେତନାର ଘର । ଅନେକ ସୁଖ ଦୁଃଖର ସାଥୀ । ସେହି ଘରେ ସେ ନାତି କ୍ରାନ୍ତିର ବ୍ରତପୋନୟନ କରାଇଥିଲେ । ଅବସରକାଳୀନ ଜୀବନରେ ସେହି ଘର ପୁଅ ନିର୍ମଳ, ବିମଳ ଓ କମଳ, ତିନି ବୋହୂ ବିଜୟଲକ୍ଷ୍ମୀ, ଜୟଶ୍ରୀ ଓ ବନଜା; ଝିଅ ମିନି, ଜ୍ୱାଇଁ ଡାକ୍ତର ଶ୍ରୀକୃଷ୍ଣ ମହାପାତ୍ର ନାତିନାତୁଣୀ ଓ ବନ୍ଧୁ ବାନ୍ଧବଙ୍କୁ ନେଇ ବିଭିନ୍ନ ସମୟରେ ମୁଖରିତ ହୋଇ ଉଠୁଥିଲା ।

ଜୀବନର ଉତ୍ତରାୟଣ ରାଜ୍ୟର ଏହି ବରିଷ୍ଠ ଶିକ୍ଷାବିତ୍‌ଙ୍କର ଏହି ଘରେ କଟୁଥିଲାବେଳେ ସେହି ଘର ଦେଖିଥିଲା ଏକ ଅପ୍ରତ୍ୟାଶିତ ଘଟଣା, ଯାହାକି ଏହି ଶିକ୍ଷାବିତ୍ ଜଣଙ୍କ ଉତ୍ତରାୟଣ ଜୀବନକୁ ବିଶେଷଭାବେ ପ୍ରଭାବିତ କରିଥିଲା ।

ତାହା ଥିଲା ପ୍ରାଣପ୍ରିୟା ପତ୍ନୀ ଜାନକୀ ଦେବୀଙ୍କ ଅକାଳ ଓ ଅପ୍ରତ୍ୟାଶିତ ବିୟୋଗ । ଏହି ବିୟୋଗ ଅପ୍ରତ୍ୟାଶିତ ଏଇଥିପାଇଁ ଥିଲା ଯେ ସୁସ୍ଥ ସବଳ ଥିବା ପତ୍ନୀ ହଠାତ୍ ହୃଦରୋଗରେ ଆକ୍ରମିତ ହୋଇ ମୃତ୍ୟୁବରଣ କଲେ । ଏହାଥିଲା ୧୯୯୨

ମସିହା ଏପ୍ରିଲ ମାସ ୨୩ ତାରିଖର ଘଟଣା । ତିଥି ଥିଲା ବୈଶାଖ ମାସ କୃଷ୍ଣପକ୍ଷ ସପ୍ତମୀ, ଗୁରୁବାର ।

ତରୁଣ ବୟସରେ ମାତ୍ର ତେର ବର୍ଷର କନ୍ୟାକୁ ବିବାହ କରି ଜୀବନର ଦୀର୍ଘପଥ ଅତିକ୍ରମ କରିଥିବା ପ୍ରଫେସର ଦାଶଙ୍କ ପାଇଁ ଏହା ଥିଲା ଏକ ଦାରୁଣ ଆଘାତ । ଏକ ଭଗ୍ନ ହୃଦୟରେ ସେଦିନ ସେ ଅହିଅର ଗୌରବ ଟୀକା ପିନ୍ଧାଇ ୧ ୯ ୯ ୨ ମସିହା ଏପ୍ରିଲ ମାସ ୨୩ ତାରିଖରେ ସତ୍ୟନଗର ଶ୍ମଶାନରେ ପ୍ରାଣପ୍ରିୟା ପତ୍ନୀଙ୍କୁ ଶେଷ ବିଦାୟ ଜଣାଇଥିଲେ ରାତି ପ୍ରାୟ ଦଶଟା ସମୟରେ । ବଡ଼ପୁଅ ନିର୍ମଳ ମୁଖାଗ୍ନି ସଂଯୋଗ କରିଥିଲେ । ଜୀବନର ଅନେକ ସ୍ଥିତିରେ ସ୍ଥିତପ୍ରଜ୍ଞ ଥିବା ଏହି ବ୍ୟକ୍ତି ଜଣକ ସେଦିନ ମଧ୍ୟ ସ୍ଥିତପ୍ରଜ୍ଞ ଅବସ୍ଥାରେ ରହି ସ୍ୱର୍ଗୀୟା ପତ୍ନୀଙ୍କ ପ୍ରତି ନିଜର କର୍ତ୍ତବ୍ୟ ସଂପାଦନ କରି ଚାଲୁଥିଲେ । ତାଙ୍କର ମାନସିକ ସ୍ଥିତି ଅସହ୍ୟ ଥିଲେ ମଧ୍ୟ ସେତେବେଳେ ସେ ଅନୁଭବ କରିପାରିଥିଲେ ଯେ ପ୍ରାଣପ୍ରିୟା ପତ୍ନୀଙ୍କ ପ୍ରାଣପକ୍ଷୀ ସୁବର୍ଣ୍ଣ ଡେଣା ଦୁଇଟି ହଲେଇ ହଲେଇ ସ୍ୱର୍ଗାଭିମୁଖୀ ହେଉଛନ୍ତି ।

ପ୍ରଫେସର ଦାଶ ଅନେକ ସମୟରେ ଗୋଟିଏ କଥା ଉପରେ ବିଶେଷ ଗୁରୁତ୍ୱ ଦେଉଥିଲେ । ତାହା ଥିଲା, *"କର୍ତ୍ତବ୍ୟଠାରୁ ଅଧିକ କିଛି କରିବା ହେଉଛି ପୁଣ୍ୟ ଓ ଜଣେ ମଣିଷର ଧର୍ମ ।" ଏହି ଉକ୍ତିକୁ ବ୍ୟାଖ୍ୟା କରିବାକୁ ଯାଇ ସେ କହୁଥିଲେ, ଜଣେ ଶିକ୍ଷକ କିମ୍ବା ଅଧ୍ୟାପକ ଶିକ୍ଷାଦାନ କରିବା ତ ତା'ର ନିଜସ୍ୱ କାମ, ତାହାଠାରୁ ସେ ଅଧିକ କ'ଣ କରି ପାରୁଛନ୍ତି, ସମାଜକୁ କ'ଣ ଦାନ କରୁଛନ୍ତି, ତାହାହିଁ ତାଙ୍କର ପୁଣ୍ୟ ।"*

କର୍ତ୍ତବ୍ୟ ଓ ପୁଣ୍ୟ ମଧ୍ୟରେ କି ସୁନ୍ଦର ଅଭିବ୍ୟକ୍ତି ! କି ସୁନ୍ଦର ଅନୁଶୀଳନ !!

ସେଇଥିପାଇଁ ହୁଏତ ସେ ତାଙ୍କ ଜୀବନକୁ ଏକ ବିକାଶନ୍ମୁଖ ତଥା ଉର୍ଦ୍ଧ୍ୱମୁଖୀ ଜୀବନ ହିସାବରେ ଦେଖୁଥିଲେ । ଅନ୍ୟର ଅନନ୍ୟ ପ୍ରେରଣାର ଉତ୍ସ ହୋଇପାରିଥିଲେ ।

ଜୀବନର ପ୍ରତ୍ୟେକ କ୍ଷେତ୍ରରେ ସେ ଯେଉଁଠି ଯେଉଁ ପରିବେଶ ମଧ୍ୟରେ ଥିଲେ ମଧ୍ୟ ଅନ୍ୟପ୍ରତି ସହାୟତାର ହାତ ବଢ଼ାଉ ଥିଲେ । ସେ ସହାୟତାର ହାତ ପାଖରେ ଶତ୍ରୁ ଓ ମିତ୍ର ବିବେଚନା କରିବାର ଅବକାଶ ନ ଥିଲା । ସେଥିପାଇଁ ସେ କହୁଥିଲେ :

*"ଯେତେବେଳେ ମୁଁ ଜନ୍ମ ଗ୍ରହଣ କରିଥିଲି, ମୋ ଭିତରେ ଥିବା ବୁଦ୍ଧିଆ ପିଲାଟି ଖୋଜି ପାଇଥିଲା ଯେ ସେ ହେଉଛି ସମୁଦାୟ ପୃଥିବୀର, ସେହି ସମଗ୍ର ପୃଥିବୀ ଥିଲା ତା'ର - ତା' ନିଜ ଦୁନିଆର । ଯେତେବେଳେ ଆମ ପରିବାରକୁ କୌଣସି 'ଶୁଦ୍ର' କିମ୍ବା 'ହରିଜନ' ଅସୁବିଧା ସମୟରେ ଆସି ପହଞ୍ଚୁଥିଲେ, ସେତେବେଳେ ସେ ପରିବାରର ସାହାଯ୍ୟ ଓ ପରାମର୍ଶ ପାଉଥିଲେ । ସେମାନେ ମଧ୍ୟ ତା'ର ବିନିମୟରେ ବିଭିନ୍ନ ସମୟରେ ଆମକୁ ସାହାଯ୍ୟ କରୁଥିଲେ । ମଣିଷର ମାନବିକ ଗୁଣାବଳୀରେ ପରିପୁଷ୍ଟ ଯେ କୌଣସି ମଣିଷ ଦାନ ଓ*

*ପ୍ରତିଦାନ ବିଚାରଧାରାକୁ ଭଲ ପାଇବା ଆବଶ୍ୟକ । ଏପରି କି ଆଜି ମଧ୍ୟ ମୁଁ ମୋର ବିଚାରଧାରା ଓ କାର୍ଯ୍ୟରେ ଏପରି ଆଚରଣ ପ୍ରଦର୍ଶନ କରେ । ମୁଁ କେବେ ନିଜକୁ ଅନ୍ୟଠାରୁ ଅଲଗା କରି ରଖି ନ ଥିଲି ଏବଂ କଦାପି ଏପରି ଅଲଗା ମଧ୍ୟ ରହିବି ନାହିଁ । 'ଦେବା ଓ ନେବା' ମୋର ଜୀବନ ଥିଲା ଏବଂ ଆଗାମୀ ବର୍ଷଗୁଡ଼ିକରେ ମଧ୍ୟ ସେପରି ରହିବ ।"*

*"ମଣିଷ ଭିତରେ ଥିବା ଐଶ୍ୱରିକ ଗୁଣ 'ଦେବା ଓ ନେବା'ର ଅର୍ଥ ନୁହେଁ ଯେ ଯାହାଠାରୁ କିଛି ନିଆଯାଇଥିବ ତାକୁ କିଛି ଫେରେଇ ଦେବା । ଏହା ହେଉଛି ଏକ ଛୋଟକୋଟିଆ 'ବ୍ୟବସାୟ' - ଗୋଟିଏ କଲମ ପାଇଁ ଦଶଟଙ୍କା କିମ୍ବା କିଲୋ ଚାଉଳ ପାଇଁ କିଛି ଅର୍ଥ ଦେବା । 'ଦେବା ଓ ନେବା'ର ପ୍ରେରଣା ମଧ୍ୟରେ ଜଣେ ନିଜକୁ ଗୋଟିଏ ପକ୍ଷରେ ଏବଂ ସମଗ୍ର ପୃଥିବୀକୁ ଅନ୍ୟ ପକ୍ଷରେ ରଖିଥାନ୍ତି । ଯାହା ହେଉଛି ଏକ ସାମାଜିକ ଏକକ (Social Unit) । ଏହି ଏକକହିଁ ଜଣେ ମଣିଷକୁ ତା'ର ଜୀବନ କାଳ ମଧ୍ୟରେ ଅବିରତ ଭାବେ ସାହାଯ୍ୟ କରିଥାଏ । ତେଣୁ ସେ ତା'ର ସାହାଯ୍ୟକାରୀ ହସ୍ତଟିକୁ ସମସ୍ତ ଦିଗରେ ସଂପ୍ରସାରଣ କରିବା ଆବଶ୍ୟକ - ଅବଶ୍ୟ ନିଜର ମୌଳିକ ଆଗ୍ରହ ଓ ରୁଚିକୁ ଜଳାଞ୍ଜଳି ନ ଦେଇ । ଅନ୍ୟକୁ ଖୁଆଇବାକୁ ଯାଇ ଜଣେ ନିଜକୁ ଉପେକ୍ଷା କରିବା ଆଦୌ ଗ୍ରହଣୀୟ ନୁହେଁ ।"*

ଏହି ପରିପ୍ରେକ୍ଷୀରେ ତାଙ୍କ ମଧ୍ୟରେ 'ନବା' ଅପେକ୍ଷା 'ଦେବା' ନିମନ୍ତେ ଏକ ଅଦ୍ଭୁତ ମାନସିକତାର ଅଭ୍ୟୁଦୟ ଘଟିଥିଲା । ସେଥିପାଇଁ ସେ କେବେ ଅନ୍ୟଠାରୁ ଏପରିକି ନିଜ ପିଲାମାନଙ୍କଠାରୁ କୌଣସି ଭୌତିକ ଉପାଦାନ (material things) ପାଇବା ନିମନ୍ତେ ମଧ୍ୟ ଆଶାପୋଷଣ କରୁ ନ ଥିଲେ । ମାତ୍ର ଏହା ତାଙ୍କର 'ଭାବଗତ ରାଜ୍ୟ' ପ୍ରତି ପ୍ରଯୁଜ୍ୟ ନ ଥିଲା । କାରଣ ସେ ଆନ୍ତରିକତାର ସହିତ ନିଜ ପରିବାରର ସଦସ୍ୟ ଓ ବାହ୍ୟ ଦୁନିଆର ବ୍ୟକ୍ତି ବିଶେଷଙ୍କଠାରୁ ସ୍ନେହ ଓ ଶ୍ରଦ୍ଧା ମଧ୍ୟ ଆବଶ୍ୟକ କରୁଥିଲେ ।

## ପରିସ୍ଥିତି ଓ ନିଜସ୍ୱ ପରିବେଶରୁ ଶିକ୍ଷା

ପ୍ରତ୍ୟେକ ମଣିଷ ସମ୍ମୁଖୀନ ହେଉଥିବା ଏହି ସ୍ଥିତିକୁ ସେ ଅତି ଚମତ୍କାର ଭାବେ ନିଜ ଉଦାହରଣ ପ୍ରଦାନ ପୂର୍ବକ **କାର୍ଯ୍ୟ ଉଦ୍ଦୀପକ - ଉତ୍ତର ଉଦ୍ଦୀପିତ ସମୀକାରଣ** (Stimulus & Response Equation) ମାଧ୍ୟମରେ ବର୍ଣ୍ଣନା କରିଅଛନ୍ତି । ସେ ସମୀକରଣକୁ ସେ ତାଙ୍କ ଜୀବନ ଅଭିଜ୍ଞତାରୁ ଚମତ୍କାର ଭାବେ ଉପସ୍ଥାପନା କରିଅଛନ୍ତି ।

| କାର୍ଯ୍ୟ ଉଦ୍ଦୀପକ/କାରଣ (Stimulus / Cause) | ଉତ୍ତର ଉଦ୍ଦୀପିତ /ପ୍ରଭାବ (Response / Effect) |
|---|---|
| ୧. ବିଭିନ୍ନ ଜାତି ଓ ଧର୍ମର ଲୋକମାନଙ୍କ ମଧ୍ୟରେ ପାରସ୍ପରିକ ସ୍ନେହ ସାହାଯ୍ୟ ଓ ସହଯୋଗ । | ୧. ଲୋକମାନଙ୍କ ମଧ୍ୟରେ ଜାତି ଓ ଧର୍ମ ସଂପର୍କୀୟ ବିଚାର ଧାରା ନେଇ ସହନଶୀଳତା ଓ ଉଚ୍ଚ ଚିନ୍ତାଧାରାର ସୃଷ୍ଟି । ଏହାଦ୍ୱାରା ସେମାନଙ୍କ ମଧ୍ୟରେ 'ଦେବା' ଓ 'ନେବା' , 'ନିଜେ ବଞ୍ଚିବା ଅପରକୁ ବଞ୍ଚିବାର ସୁଯୋଗ ଦେବା' ସଂପର୍କୀୟ ମନୋଭାବର ସୃଷ୍ଟି । |
| ୨. ସଂଗ୍ରାମ ଓ ପ୍ରତିଯୋଗିତା ମାଧ୍ୟମରେ ଜୀବନର ମୌଳିକ ଆବଶ୍ୟକତା ପୂରଣକରିବାର ସୌଭାଗ୍ୟ । | ୨. ଜୀବନର ସାଧାରଣ ସାମଗ୍ରୀ ନିମନ୍ତେ ପ୍ରତିଯୋଗିତା ପୂର୍ବକ ପାରସ୍ପରିକ ସହଯୋଗିତା ସହ ସମାଜରେ ବଞ୍ଚିବା ନିମନ୍ତେ ପ୍ରୟାସ । |
| ୩. ଜୀବନରେ ଭଲ ସାମଗ୍ରୀ, ଉତ୍ତମ ଲୋକ ଏବଂ ଉତ୍ତମ ସାମାଜିକ ପରିବେଶ । | ୩. ମଣିଷର ଅନ୍ତର୍ନିହିତ ଶୁଦ୍ଧ ବିଚାର ଓ ଆଚରଣ ଉପରେ ବିଶ୍ୱାସ ସ୍ଥାପନ ସହଜ ସାଧ୍ୟ ହୋଇଥାଏ । |
| ୪. ଅଭାବୀ ଲୋକଙ୍କୁ ସମାଜର ସାହାଯ୍ୟ ଓ ଜଣେ ଅସହାୟ ବ୍ୟକ୍ତିର ଚାରିପଟେ ସହଯୋଗିତାର ହାତ ସ୍ୱଭାବିକ ଭାବେ ରହିଥିଲେ । | ୪. ଅନ୍ୟମାନଙ୍କୁ ସାହାଯ୍ୟ କରିବାର ପ୍ରବଣତା, ଅଭାବୀ ବ୍ୟକ୍ତିବିଶେଷଙ୍କ ପ୍ରତି ସଂପୃକ୍ତି ତଥା ନିଜ ମଧ୍ୟରେ ଅନ୍ୟମାନଙ୍କୁ ସାହାଯ୍ୟ କରିବାର ପ୍ରବୃତ୍ତି । |

| | |
|---|---|
| ୫. ତଥାକଥିତ କୁସଂସ୍କାର ପ୍ରତି ମୁରବିଙ୍କ ନକରାତ୍ମକ ମନୋଭାବର ପ୍ରତିପୋଷଣ ଏବଂ ବିଭିନ୍ନ ପାରମ୍ପରିକ ସାମାଜିକ ରୀତିନୀତି ପ୍ରତି ଆହ୍ୱାନ | ୫. ଜୀବନରେ ବାସ୍ତବ ଆଭିମୁଖ୍ୟ ଓ ସକାରାତ୍ମକ ମନୋଭାବର ପ୍ରତିପୋଷଣ ତଥା ଅଭିଜ୍ଞତାର ଶିକ୍ଷଣ । |
| ୬. ମୁରବିଙ୍କ ବିଭିନ୍ନ ସାମାଜିକ ପରିସ୍ଥିତିରେ ଅସ୍ୱାଭାବିକ ସାହାସ ଓ ଶକ୍ତି ପ୍ରଦର୍ଶନ, ତାଙ୍କଠାରୁ ଅଧିକ ଶକ୍ତିଶାଳୀ ମଣିଷମାନଙ୍କ ସହିତ ଆବଶ୍ୟକସ୍ଥଳେ ଲଢ଼େଇ କରିବାର ମନୋଭାବ । | ୬. ଅନ୍ୟାୟର ଶିକାର ବିରୋଧରେ ସଂଗ୍ରାମ କରିବା ନିମନ୍ତେ ସ୍ୱତଃପ୍ରବୃତ୍ତ ମନୋଭାବର ପ୍ରତିପୋଷଣ । |
| ୭. ମୁରବିଙ୍କ ଉଚ୍ଚାଭିଳାଷ ଓ ଜୀବନରେ ଉଚ୍ଚକୁ ଯିବାର ପ୍ରେରଣା । | ୭. ସନ୍ତାନ ସନ୍ତତି ତଥା ପରିବାରର ଅନ୍ୟମାନଙ୍କୁ କର୍ମକ୍ଷେତ୍ରରେ ସର୍ବଶ୍ରେଷ୍ଠ ସ୍ଥାନକୁ ଯିବାର ଅଭିପ୍ରେରଣା । |
| ୮. ସହରୀ ପରିବେଶ ତଥା ପରିବର୍ତ୍ତିତ ଅବସ୍ଥାରେ ଜୀବନଶୈଳୀର ଆବଶ୍ୟକତାକୁ ସଠିକ୍ ଭାବରେ ସମ୍ଭାଳିବା । | ୮. ଅନ୍ୟମାନଙ୍କ ପ୍ରତି ସମସ୍ୟା ସୃଷ୍ଟି ନ କରି ନିଜକୁ ପରିସ୍ଥିତି ସହିତ ଉପଯୋଜନ କରି ଖାପ ଖୁଆଇ ଚଳାଇବା ଏବଂ ଗ୍ରହଣ କରିବାର ଦର୍ଶନ ଉପରେ ବିଶ୍ୱାସ କରିବା । |

ଉପର୍ଯ୍ୟୁକ୍ତ ଚିନ୍ତନ ଓ ମନନରେ ଶୈଶବରୁ ପରିପାଳିତ ହୋଇ ଜୀବନରେ ଓଡ଼ିଶାର ସାଧାରଣ ଶିକ୍ଷା-ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ ଶୀର୍ଷ ସ୍ଥାନରେ ପହଞ୍ଚିଥିବା

ପ୍ରଫେସର ଦାଶ ଭବିଷ୍ୟତ ବଂଶଧରମାନଙ୍କୁ ଯେଉଁ ବାର୍ତ୍ତା ଦେଇଛନ୍ତି, ତାହା ଥିଲା ଏହିପରି :

*"ମୁଁ ଆଶା କରେ ନାହିଁ ଯେ ପ୍ରତ୍ୟେକ ଲୋକ ଜୀବନରେ ଉଚ୍ଚ ସ୍ଥାନରେ ପହଞ୍ଚି ପାରିବେ । ପୈତୃକ ଗୁଣାଧାର ଓ ପରିବେଶ ପ୍ରତ୍ୟେକ ଲୋକପ୍ରତି କେତେକ ସୀମା ମଧ୍ୟ ନିର୍ଦ୍ଧାରଣ କରିଥାଏ । ଜଣେ ବେଶୀ ଯାଇ ନ ପାରେ, ମାତ୍ର ପ୍ରତ୍ୟେକ ଜୀବନରେ ସର୍ବୋଚ୍ଚ ସ୍ଥିତି ସେହି ସୀମା ମଧ୍ୟରେ ହାସଲ କରିବାକୁ ଚେଷ୍ଟା କରିବା ଆବଶ୍ୟକ । ନିଜେ ନିଜର କର୍ତ୍ତବ୍ୟକୁ ସର୍ବୋତ୍ତମ ଭାବେ ସଂପାଦନ କରିବା ଆବଶ୍ୟକ, ଯାହା ନ ହେଇ ପାରିବ ତାହା ଈଶ୍ୱରଙ୍କ ଉପରେ ଛାଡ଼ି ଦେବା ଉଚିତ । ଏହି ଆହ୍ୱାନକୁ ସମସ୍ତେ ସର୍ବାଦୌ ନିଜ ନିଜର ଜୀବନଚର୍ଯ୍ୟାରେ ଗ୍ରହଣ କରିବା ଆବଶ୍ୟକ ।"*

ସେଥିପାଇଁ ପ୍ରଫେସର ଦାଶ ତାଙ୍କ ଦୈନନ୍ଦିନ କର୍ମମୟ ଜୀବନରେ ଏକ ଲଢୁଆ ମନୋଭାବ ନେଇ ଅଗ୍ରସର ହେଉଥିଲେ । ସେ କେବେ ହେଲେ କାହାରି ସହିତ 'ମୁକାବିଲା' ମନୋଭାବ ନେଇ କାମ କରୁ ନ ଥିଲେ । ଯଦି ମୁକାବିଲା କରୁଥିଲେ, ତେବେ ତାହା ଥିଲା କେବଳ ପ୍ରତିକୂଳ ପରିସ୍ଥିତି ସହିତ । କାରଣ ସେ ଭଲ ଭାବରେ ଜାଣିଥିଲେ ଯେ ମଣିଷର ପ୍ରକୃତ ଶତ୍ରୁ ତା'ର ନିଜ ମଧ୍ୟରେ ଅଛି । ତାହା ହେଉଛି ତା'ର ନିଜସ୍ୱ ମନୋଭାବ, ନିଜର ମୂଲ୍ୟବୋଧ, ନିଜ ପ୍ରତି ନିଜର ଅଜ୍ଞତା, ଯାହାକି ତାହା ପାଇଁ ଆପାତତଃ ଫଳପ୍ରଦ ହୋଇ ନ ଥାଏ ।

ସିଦ୍ଧ ବିଚାରଧାରାରେ ପରିପୁଷ୍ଟ ପ୍ରଫେସର ଦାଶଙ୍କ ମନରେ ଜାତି, ଧର୍ମ ଓ ବର୍ଣ୍ଣଗତ ବିଭେଦତା କେବେ ସ୍ପର୍ଶ କରି ନ ଥିଲା । ଯେତେବେଳେ ସେ କୌଣସି ବ୍ୟକ୍ତିଙ୍କୁ ଅସୁବିଧାରେ ପଡୁଥିବାର ଦେଖୁଥିଲେ, ସେତେବେଳେ ତାଙ୍କ ହୃଦୟ ବିଗଳିତ ହେଉଥିଲା । ଏପରିକି ଆଖିକୁ ଲୁହ ମଧ୍ୟ ଚାଲି ଆସୁଥିଲା । ତାଙ୍କର ସରଳତାର ସୁଯୋଗ ନେଇ କେହି କେହି ତାଙ୍କ ପାଇଁ ସମସ୍ୟା ସୃଷ୍ଟି କରୁଥିଲେ ମଧ୍ୟ ସେଥିରୁ ସେ ଶିକ୍ଷା ଲାଭ କରୁଥିଲେ, ସେଥିପାଇଁ ସେ କହୁଥିଲେ – *"ମୋ ଭିତରେ ଥିବା ନିଜସ୍ୱ ପ୍ରତ୍ୟୟ, ବ୍ୟକ୍ତି ଜଣଙ୍କର ଏତାଦୃଶ ଆଚରଣ ପାଇଁ କେବେ ପରିବର୍ତ୍ତନ ହେଉ ନଥିଲା । କାରଣ ମୋର ସାହାଯ୍ୟ କରିବାର ମନୋଭାବ ଭୌତିକ ଦୁନିଆର ସୀମା ଅତିକ୍ରମ କରିସାରିଥିଲେ ।"*

## ପ୍ରଜ୍ଞାପୁରୁଷଙ୍କ ଶେଷ ଯାତ୍ରା

ଜୀବନର ଚଲାପଥରେ ଚାଲୁଚାଲୁ କେତେବେଳେ କେମିତି ଜୀବନର ଶେଷ ସମୟ ଆସିଯାଏ, ତାହା ହୁଏତ କେହି ଜାଣନ୍ତି ନାହିଁ । ଏହା ହିଁ ହେଉଛି ବିଶ୍ୱନିୟନ୍ତା ଈଶ୍ୱରଙ୍କ ସୃଷ୍ଟିର ବୈଚିତ୍ର୍ୟ ।

ସେଥିପାଇଁ ପ୍ରାଜ୍ଞ ବିବେଚନଶୀଳ ମଣିଷ କେବେ ମୃତ୍ୟୁକୁ ନେଇ ବ୍ୟସ୍ତ ଓ ବିବ୍ରତ ହେବାର ଦେଖାଯାଏ ନାହିଁ । ପୃଥିବୀରେ ଏମିତି କେହି ମଣିଷ ନାହାଁନ୍ତି, ଯିଏକି ନିଜ ମୃତ୍ୟୁକୁ ନିଜେ ଦେଖିଛନ୍ତି । ଆଉ ସେଥିପାଇଁ ବ୍ୟସ୍ତ ଓ ବିବ୍ରତ ହୋଇଛନ୍ତି ।

ବାର୍ଦ୍ଧକ୍ୟର ଅନେକ କ୍ଳେଶ, ଦୁଃଖ ଯନ୍ତଣା ଭୋଗୁଥିବା ପ୍ରଫେସର ଦାଶ କେବେ ମଣିଷ ଜୀବନର ଚରମ ସତ୍ୟ ମୃତ୍ୟୁକୁ ନେଇ ବ୍ୟସ୍ତ ଓ ବିବ୍ରତ ନ ଥିଲେ, ବରଂ ଏହାକୁ ମଣିଷ ଜୀବନ ଚକ୍ରର ଏକ ସ୍ୱାଭାବିକ ପ୍ରକ୍ରିୟା ହିସାବରେ ଗ୍ରହଣ କରି ନେଇଥିଲେ ।

ସେଥିପାଇଁ ସେ ଯେତେବେଳେ ରୋଗଶଯ୍ୟାରେ ପଡ଼ିଛନ୍ତି, ନର୍ସିଂହୋମଠାରୁ ଆରମ୍ଭ କରି ସରକାରୀ ଡାକ୍ତରଖାନାରେ ଶଯ୍ୟାଶାୟୀ ହୋଇଛନ୍ତି ଓ ବନ୍ଧୁଗଣ ସେଠାରେ ତାଙ୍କୁ ଭେଟିଛନ୍ତି, ସେ ହସି ହସି ସେମାନଙ୍କ ସୁଖ ଦୁଃଖ ବାର୍ତ୍ତା ପଚାରି ସାମିଲ ହୋଇଛନ୍ତି । ସେମାନଙ୍କୁ ସେ ମୁହୂର୍ତ୍ତରେ ହସି ହସି କହିଛନ୍ତି, *"ବ୍ୟସ୍ତ ହେବାର କିଛି ନାହିଁ । ମୁଁ ଖୁବ୍ ଶୀଘ୍ର ଆରୋଗ୍ୟ ଲାଭ କରିବି ଓ ଘରକୁ ଫେରିଯିବି ।"*

ସତକୁ ସତ ସେ ଆରୋଗ୍ୟ ହୋଇଯାନ୍ତି ଓ ଭି.ଏସ୍.ଏସ୍. ନଗରର ସେହି ବି.ଏମ୍ - ୧୬ ନମ୍ବର, ଲକ୍ଷ୍ମୀନିବାସକୁ ଫେରି ଆସନ୍ତି ।

୨୦୧୩ ମସିହା ଜୁଲାଇ ମାସ ୧୬ ତରିଖର ଘଟଣା, ଦିନକୁ ଦିନ ତାଙ୍କ ସ୍ୱାସ୍ଥ୍ୟ ଅବସ୍ଥାର ଦ୍ରୁତ ଅବନତି ଘଟିଲା । ତେଣୁ ବଡ଼ ପୁଅ ନିର୍ମଳ ଚନ୍ଦ୍ର ଦାଶ ଓ ଅନ୍ୟ ସନ୍ତାନସନ୍ତତିଗଣ ପ୍ରଫେସର ଦାଶଙ୍କୁ ନେଇ ଭୁବନେଶ୍ୱରର ୟୁନିଟ୍-୬ ନମ୍ବରରେ ଅବସ୍ଥିତ କ୍ୟାପିଟାଲ ହସ୍‌ପିଟାଲ୍‌ର ଏକ ସ୍ୱତନ୍ତ୍ର କ୍ୟାବିନ୍‌ରେ ଚିକିତ୍ସାର ସୁବନ୍ଦୋବସ୍ତ ମଧ୍ୟ କରିଥିଲେ । ସହୃଦ ବନ୍ଧୁବର୍ଗ ପୁଅ ବୋହୂ ଝିଅ ଜ୍ୱାଇଁ ଆଦି ବିଭିନ୍ନ ସମୟରେ ତାଙ୍କୁ ଡାକ୍ତରଖାନାରେ ଦେଖା ସାକ୍ଷାତ କଲେ । ପୂର୍ବରୁ ପ୍ରାୟ ଏକ ମାସ ଧରି ରୋଗ ଶଯ୍ୟାରେ ସହିଦନଗରସ୍ଥିତ ସ୍ପର୍ଶ ନର୍ସିଂହୋମର ଇଣ୍ଟେନ୍‌ସିଭ୍ କେୟାର ୟୁନିଟ୍‌ରୁ ଘରକୁ ଫେରାଇ ଆଣିଥିବା ପିଲାମାନଙ୍କର ଆଶା ଓ ବିଶ୍ୱାସ ଥିଲା ଯେ ବାପା ଏଥରକ ମଧ୍ୟ ପୂର୍ବବତ୍ ଘରକୁ ଫେରି ଆସିବେ ।

ମାତ୍ର ଅଗଷ୍ଟ ୬ ତାରିଖବେଳକୁ ସ୍ୱାସ୍ଥ୍ୟ ଅବସ୍ଥା ଟିକିଏ ବିଗିଡ଼ିବାକୁ ଲାଗିଲା । ପାଖେପାଖେ ରହି ଝିଅ (ମିନି), ବଡ଼ ବୋହୂ ବିଜୟଲକ୍ଷ୍ମୀ, ମଝିଆ ବୋହୂ ଜୟଶ୍ରୀ,

ସାନ ବୋହୂ ବନଜା, ପୁତୁରା ବୋହୂ ରଶ୍ମି, ପୁଅ ନିର୍ମଳ, ବିମଳ, କମଳ ଓ ଅନ୍ୟାନ୍ୟ ଜ୍ଞାତି କୁଟୁମ୍ବମାନେ ସେବା ଶୁଶ୍ରୂଷା କଲେ । ସେହି ଛଅ ତାରିଖ ଦିନ ସୁଦୂର ବ୍ରହ୍ମପୁରରୁ ଆସି ତାଙ୍କର ଏକମାତ୍ର ଜ୍ୱାଇଁ ଡାକ୍ତର ଶ୍ରୀକୃଷ୍ଣ ମହାପାତ୍ର ମଧ୍ୟ ପହଞ୍ଚିଲେ ।

ସମସ୍ତଙ୍କ ସହିତ ଶାରୀରିକ ଯନ୍ତ୍ରଣାକୁ ଭୁଲି ସେ ହସିହସି କଥାବାର୍ତ୍ତା କରୁଥିଲେ । ସେମାନଙ୍କ ସହିତ ସୁଖ ଦୁଃଖ ବାଣ୍ଟିବାର ପ୍ରୟାସ, ସେମାନେ ଖାଇଛନ୍ତି କି ନାହିଁ, ଯଦି କିଏ ଅଧିକ ସମୟ ରହିଗଲେ, *"ଯାଅ, ରାତି ଅଧିକ ହୋଇଗଲାଣି ଘରେ ଅନ୍ୟମାନେ ଅପେକ୍ଷା କରିଥିବେ ।"*

କି ଚମତ୍କାର ଆତ୍ମୀୟତାର ବାଣୀ !

ସେହି ୬ ତାରିଖ ରାତ୍ରୀ ଆଠଟାବେଳେ ତାଙ୍କ ପାଖରେ ପହଞ୍ଚିଥିଲେ ସେ ନିଜ ହୃଦୟରେ ପୁତ୍ରତୁଲ୍ୟ ସ୍ଥାନ ଦେଇଥିବା ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦର କର୍ମଚାରୀ କୁଞ୍ଜବିହାରୀ ପ୍ରଧାନ । କୁଞ୍ଜ ପ୍ରଫେସର ଦାଶଙ୍କୁ 'ବାପା'ର ସମ୍ମାନ ଦିଅନ୍ତି । ପ୍ରାୟତଃ ସବୁଦିନ ଡାକ୍ତରଖାନାକୁ ଯାଇ ତାଙ୍କ କଥା ବୁଝନ୍ତି । ଶେଯ ବଦଳାନ୍ତି । ଏତଦ୍‌ବ୍ୟତୀତ ଦୁଇଜଣ ନର୍ସ ଥାଆନ୍ତି ଯେଉଁମାନେ କି ତାଙ୍କର ନିୟମିତ ଦେଖାଶୁଣା କରନ୍ତି ।

ସେଦିନ ହୋଇଥାଏ ରାତି ଏଗାର ପାଖାପାଖି । ପ୍ରଫେସର ଦାଶ କୁଞ୍ଜଙ୍କୁ କହିଲେ, *"ବାପାରେ, ମୋତେ ଛାଇ କରିଦିଅ । ବାପାରେ ମୋତେ ଛାଇ କରିଦିଅ । ମୁଁ ଶୋଇବି ।"*

ଚାହୁଁ ଚାହୁଁ ସେ କ୍ଷଣିକ ମଧ୍ୟରେ ଶୋଇ ପଡ଼ିଲେ । ସେଦିନର ସେହି ବିଳମ୍ବିତ ରାତିରେ କୁଞ୍ଜ ଭି.ଏସ୍.ଏସ୍ ନଗର ନିକଟସ୍ଥ ଚକେଇସିଆଣିରେ ଥିବା ନିଜ ଘରକୁ ଫେରି ଆସିଲେ ।

ଅଗଷ୍ଟ ମାସ ୭ ତାରିଖ ବୁଧବାର । ସେଦିନ ହୋଇଥାଏ ଆଷାଢ଼ ଶୁକ୍ଳ ପ୍ରତିପଦ ତିଥି । ସେଦିନ ଭୋର ୫ଟା ବେଳକୁ ପ୍ରଫେସର ଦାଶଙ୍କ ନିଦ ଭାଙ୍ଗିଲା । ପ୍ରାୟତଃ ଏଇ ବ୍ରାହ୍ମମୁହୂର୍ତ୍ତରେ ସେ ପ୍ରତିଦିନ ଶଯ୍ୟା ତ୍ୟାଗ କରିଥାନ୍ତି ।

ସେହି ସମୟରେ ସେ ଅସ୍ପଷ୍ଟ ଶବ୍ଦରେ ଡାକି ଚାଲିଲେ ନିର୍ମଳ, ବିମଳ, କମଳ । ମାଆ ମିନତି । ବୋହୂ ଓ ନାତିନାତୁଣୀମାନଙ୍କୁ । ତା'ପରେ ନିଶ୍ଚଳ ହୋଇ ଶୋଇ ପଡ଼ିଲେ ।

ସେହି ବ୍ରାହ୍ମମୁହୂର୍ତ୍ତରେ ଦୀର୍ଘ ୮୩ ବର୍ଷ ତଳେ ୨୧ ଅଗଷ୍ଟ, ୧୯୩୦ ମସିହାରେ ଧରାପୃଷ୍ଠରେ ଅବତରିତ ହୋଇଥିବା ପିତା ମହେଶ୍ୱର ଓ ମାତା ରାଧିକା ଦେବୀଙ୍କ ଏଇ କୁଳ ଚନ୍ଦ୍ରମା ମର ଶରୀର ତ୍ୟାଗ କରି ଚାଲିଲେ ସ୍ୱର୍ଗ ପଥରେ ।

ସେଦିନ ହୋଇଥାଏ ବୁଧବାର । ଅଗଷ୍ଟ ୭ ତାରିଖ, ୨୦୧୩ ମସିହା ।

ଚାହୁଁ ଚାହୁଁ ଖବର ଯାଇ ପହଞ୍ଚିଲା ଆତ୍ମୀୟସ୍ୱଜନ, ବନ୍ଧୁ ପରିବାର ବର୍ଗଙ୍କ ପାଖରେ । ସେ କାର୍ଯ୍ୟ କରୁଥିବା ବିଭିନ୍ନ ଅନୁଷ୍ଠାନର ସହକର୍ମୀ ଓ କର୍ମକର୍ତ୍ତାଙ୍କ ପାଖରେ ।

ଦିନ ନଅଟାବେଳେ ତାଙ୍କର ମରଶୀରରକୁ ଏସ୍.ଆର.ଏସ୍ ଭ୍ୟାନରେ ସୁସଜ୍ଜିତ କରି ଅଣାଗଲା ସେ ବହୁ କଷ୍ଟରେ ନିଜ ପାଇଁ ଗଢ଼ି ତୋଳିଥିବା ବୀର ସୁରେନ୍ଦ୍ର ସାଏ ନଗରର ସେହି ଲକ୍ଷ୍ମୀନିବାସକୁ । ସତେଯେମିତି ସେହି ସ୍ଥଳୀ ବି.ଏମ୍-୧୬ ଶେଷ ଦର୍ଶନ କରିବା ପାଇଁ ଅପେକ୍ଷା କରିଥିଲା, ସେହି ସ୍ଥଳୀର କର୍ତ୍ତା ପ୍ରଫେସର ଦାଶଙ୍କୁ ।

ସେଠାରେ ଦୀର୍ଘ କୋଡ଼ିଏ ବର୍ଷ ଧରି ସାଇତା ହୋଇ ରହିଥିଲା **'ଶେଷସାଥୀ'** । ସେହି 'ଶେଷ ସାଥୀ' ଜଣକ ଆଉ କେହି ନୁହଁନ୍ତି । ତାହା ହେଉଛି ଏକ ଦସ୍ତା ଟ୍ରଙ୍କ୍ । ଯାହାକୁ କି ସେ କୋଡ଼ିଏ ବର୍ଷ ତଳେ ଚାବି ପକାଇ ରଖିଥିଲେ । ଆଉ ପିଲାମାନଙ୍କୁ କହିଥିଲେ, ***"ମୋର ମୃତ୍ୟୁ ପରେ 'ଶେଷ ସାଥୀ'କୁ ଖୋଲିବ ।"***

ଶବାଧାର ଆସିବା ପରେ ସେଠାରେ ଶେଷ ସମ୍ମାନ ଜଣାଇବାକୁ ଆସି ପହଞ୍ଚିଲେ ଅନେକ ମାନ୍ୟଗଣ୍ୟ ବ୍ୟକ୍ତି, ବୀର ସୁରେନ୍ଦ୍ର ସାଏ ନଗରର ଅଧିବାସୀ, ବରିଷ୍ଠ ନାଗରିକ ମଞ୍ଚର ସଦସ୍ୟଗଣ, ସ୍ଥାନୀୟ ଶିକ୍ଷାନୁଷ୍ଠାନର କର୍ମକର୍ତ୍ତାଗଣ, ତାଙ୍କ ଚାକିରି ଜୀବନର ଅନେକ ବନ୍ଧୁ, ଛାତ୍ରଛାତ୍ରୀ ଓ ସହକର୍ମୀଗଣ । ସେମାନେ ସମସ୍ତେ ଶବାଧାର ଉପରେ ପୁଷ୍ପମାଲ୍ୟ ଦେଇ ଶବାଧାରକୁ ଅନ୍ତିମ ବିଦାୟ ଦେଲେ ।

ଶେଷକୃତ୍ୟ ନିମନ୍ତେ ଆବଶ୍ୟକ ନୂଆ ଲୁଗା, ଗଙ୍ଗାଜଳ, ତୁଳସୀ ଡାଳ, ନୂଆ ଧୋତି, ତଉଲିଆ, ଚନ୍ଦନ କାଠ, ଘୃତାଦି ଆଦି ଖୋଜିବାକୁ ପିଲାମାନଙ୍କୁ ପଡ଼ିଲା ନାହିଁ । ସେଇ ଟ୍ରଙ୍କ ଭିତରେ ସବୁକିଛି ସେ ସୁନ୍ଦରଭାବେ ସାଇତି ରଖିଥିଲେ ।

ଦିନ ଦଶଟାବେଳେ ଶବଯାତ୍ରା ଆରମ୍ଭ ହେଲା ତାଙ୍କର ସୁଖ ଦୁଃଖରେ ସଂସାର ଗଢ଼ିଥିବା ବୀର ସୁରେନ୍ଦ୍ର ସାଏ ନଗରର ଘର ଲକ୍ଷ୍ମୀନିବାସରୁ ପୁରୀ ସ୍ୱର୍ଗଦ୍ୱାର ଅଭିମୁଖେ ।

ଗଲାବେଳେ ସେ ନିର୍ଦ୍ଦେଶକ ଭାବେ କାର୍ଯ୍ୟ କରିଥିବା ଓ ନିଜ ହାତରେ ଗଢ଼ିଥିବା ଶିକ୍ଷକ ଶିକ୍ଷା ନିର୍ଦ୍ଦେଶାଳୟ ଏବଂ ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦ, ଓଡ଼ିଶା, ଭୁବନେଶ୍ୱରର ହତା ମଧ୍ୟକୁ ଶବାଧାରକୁ ନିଆଯାଇଥିଲା । ସେଠାକାର ତତ୍କାଳୀନ ନିର୍ଦ୍ଦେଶକ ପ୍ରଫେସର ନିହାର ରଞ୍ଜନ ପଟ୍ଟନାୟକ ଓ ଅନ୍ୟାନ୍ୟ ବନ୍ଧୁଗଣ ଶବାଧାର ଉପରେ ପୁଷ୍ପମାଲ୍ୟ ଅର୍ପଣ ପୂର୍ବକ ଏହି ଅନୁଷ୍ଠାନର ପୂର୍ବତନ ନିର୍ଦ୍ଦେଶକ ତଥା ପ୍ରଜ୍ଞା ପୁରୁଷ ପ୍ରଫେସର ଦାଶଙ୍କୁ ଅନ୍ତିମ ବିଦାୟ ଜଣାଇଥିଲେ ।

ତା'ପରେ ଯାତ୍ରା ଆରମ୍ଭ ହୋଇଥିଲା ପୁରୀ ସ୍ୱର୍ଗଦ୍ୱାର ଅଭିମୁଖେ । ସେଠାରେ ଅନ୍ତିମ ସଂସ୍କାର ପାଇଁ ଆଗରୁ ସମସ୍ତ ପ୍ରସ୍ତୁତି ସରିଥିଲା ।

ନିର୍ଦ୍ଧାରିତ ସମୟରେ ଜ୍ୟେଷ୍ଠସନ୍ତାନ ନିର୍ମଳଚନ୍ଦ୍ର ଦାଶ ସମସ୍ତ ଜ୍ଞାତିକୁଟୁମ୍ବଙ୍କ ଉପସ୍ଥିତିରେ ମୁଖାଗ୍ନି ସଂଯୋଗ କରିଥିଲେ ।

ଚାହୁଁ ଚାହୁଁ କ୍ଷଣିକ ମଧ୍ୟରେ ଅଗ୍ନିର ଲେଲିହାନ ଶିଖା ମଧ୍ୟରେ ଓଡ଼ିଶାର ଶିକ୍ଷା, ସାହିତ୍ୟ, ସଂସ୍କୃତି ଓ ଦର୍ଶନକୁ ଦୀର୍ଘ ଅର୍ଦ୍ଧ ଶତାବ୍ଦୀରୁ ଉର୍ଦ୍ଧ୍ୱ କାଳ ଆଲୋକିତ କରିଥିବା ପ୍ରଜ୍ଞା ପୁରୁଷ ଶରତ ଚନ୍ଦ୍ରଙ୍କର ମର ଶରୀର ଭସ୍ମୀଭୂତ ହୋଇଗଲା ।

ମାଟିର ଦେହ ସିନା ମାଟିରେ ମିଶିଗଲା, ମାତ୍ର ଯଶୋଦେହରେ ସେ ସେମିତି ଅମ୍ଳାନ ହୋଇ ରହିଗଲେ - ଏ ଦେଶର ମାଟି, ପାଣି ଓ ପବନରେ ।

ସେହି ଜ୍ଞାନୀ, ମାନୀ, ପ୍ରଜ୍ଞାଦୀପ୍ତ ଶିକ୍ଷାବିତ୍‌ଙ୍କୁ ସମ୍ମାନ ଜଣାଇ ହୃଦୟରୁ ଝରିଆସେ :

ଆତ୍ମା ଯାହାର ଅଜର ଅମର
ସଦା ନିରିମଳ ମନ,
ସୃଷ୍ଟି ଯାହାର ବିପୁଳ ମଧୁର
କରମ ଯା' ଭଗବାନ ।
ମରଣ କି କେବେ ଛୁଇଁ ପାରେ ତା'କୁ !
ସେ ପରା ଅମୃତ ବିନ୍ଦୁ,
ନର ଦେହେ ସିଏ ଲଭଇ ଦେବତ୍ୱ
ଜୀବନେ ଶରଦ ଇନ୍ଦୁ ।
ହେ ପ୍ରଜ୍ଞାପୁରୁଷ ! ଶରତ ଚନ୍ଦ୍ର
ସୃଷ୍ଟି ମହକେ ତବ,
ଶିକ୍ଷା-ଜଗତ ଚିରକାଳ ପାଇଁ
ତୁମ ଗୁଣ ଗାଉଥିବ
ତୁଣ ଗୁଣ ଗାଉଥିବ ।

## ସହାୟକ ଗ୍ରନ୍ଥ

ବ୍ରହ୍ମା ଦିଗରାଜ (୨୦୧୭): **ମୋ ସ୍ମୃତିର ଆଲେଖ୍ୟ,** ବ୍ରହ୍ମା ପ୍ରକାଶନୀ, ମହାବୀର ବିହାର, ଭାୟା - କିଟ, ଭୁବନେଶ୍ୱର -୭୫୧୦୨୪

ଦାଶ ମହେଶ୍ୱର (୨୦୧୨): ଓ ଦାଶ ରଜତ ଚନ୍ଦ୍ର **ମେଘନାଦ ଦାଶଙ୍କ ବଂଶାନୁଚରିତ,** ପ୍ରକାଶକ - ନିର୍ମଳ ଚନ୍ଦ୍ର ଦାଶ, ବି.ଏମ୍ -୧୬, ବୀର ସୁରନ୍ଦ୍ରେସାଏ ନଗର, ଭୁବନେଶ୍ୱର - ୭୫୧୦୦୭

ମହାନ୍ତି ଭାଗ୍ୟଧର (୧୯୮୧): **ନାରୀର ଦାନ,** ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦ, ଓଡ଼ିଶା, ଭୁବନେଶ୍ୱର

ପାଣିଗ୍ରାହୀ ଇନ୍ଦ୍ରମଣି(୨୦୧୩): **ଜୀବନର ଇନ୍ଦ୍ରଧନୁ,** ପ୍ରକାଶକ - ମନୋରଞ୍ଜନ ପାଣିଗ୍ରାହୀ, ପୂର୍ବକଚ୍ଛ, ବହୁଗ୍ରାମ, କଟକ

ଅର୍ଘ୍ୟ : ୨୦୧୩ : ସଂପାଦନା : ଡକ୍ଟର ମୋହିତ ମୋହନ ମହାନ୍ତି ଓ ଡକ୍ଟର ଦୁର୍ଗାଚରଣ ରଣା, ପ୍ରକାଶକ : ନିର୍ମଳ ଚନ୍ଦ୍ର ଦାଶ, ବି.ଏମ୍-୧୬, ବୀର ସୁରେନ୍ଦ୍ର ସାଏ ନଗର, ଭୁବନେଶ୍ୱର - ୭୫୧୦୦୭

Dash S.C. (2007) **Letters from a Grand Father** compiled by Nirmal Chandra Dash, B.M. -16, VSS Nagar, Bhubaneswar-751007

NCERT (1987) **Third Survey of Education**(1978-1983)

Government of India (1948) : **The University Education Commission,** Ministry of Education , New Delhi.

Government of India (1966) : **The Indian Education Commission (1964-66),** Ministry of Education, New Delhi

Government of India(1986) : **National Policy on Education,** MHRD, New Delhi.

Annual Report,1985-86 : **Directorate of Teacher Education & SCERT, Odisha,** Bhubaneswar

## ସେମାନଙ୍କ ଦୃଷ୍ଟିରେ ପ୍ରଫେସର ଦାଶ

❑ ପ୍ରଫେସର ଦାଶ ଥିଲେ ଶିକ୍ଷାଶାସ୍ତ୍ର ଓ ଶିକ୍ଷାଦାନ ପଦ୍ଧତିର ଯଥାଯୋଗ୍ୟ ପ୍ରୟୋଗର ଜଣେ ଧୂରୀଣ ଓ ପ୍ରବୀଣ ଶିକ୍ଷାବିତ୍, ଲୋକପ୍ରିୟ ଅଧିକାରୀ, ଜଣେ ବନ୍ଧୁବତ୍ସଳ ତଥା ନିରାଡ଼ମ୍ବର ବ୍ୟକ୍ତିତ୍ୱ ସଂପନ୍ନ ବନ୍ଧୁ ।

**ଡକ୍ଟର ରଜତ କୁମାର କର**

❑ ଶରତ ଭାଇନା ମାଟ୍ରିକ୍ ପରେ ରେଭେନ୍ସାରେ ଆଇ.ଏସ୍.ସି, ବି.ଏସ୍‌ସି ପଢ଼ି ପାଟଣାରେ ଏମ୍.ଏଡ୍ ଅଧ୍ୟୟନ କରି ଚାକିରି ଜୀବନ ଆରମ୍ଭ କରିଥିଲେ । ଉଚ୍ଚଶିକ୍ଷା ପାଇଁ ଥାଇଲାଣ୍ଡ ଓ ଲଣ୍ଡନ ଯାତ୍ରା କରିଥିଲେ । ନିଜର ଚାକିରି କାଳରେ ପ୍ରଫେସର, ଅଧ୍ୟକ୍ଷ ଏବଂ ନିର୍ଦ୍ଦେଶକ ପଦରେ ଅଧିଷ୍ଠିତ ହୋଇ ଶିକ୍ଷା ବିଭାଗରେ ଅନେକ ପ୍ରଶଂସା ଲାଭ କରିଛନ୍ତି ।

**ରଜତ ଚନ୍ଦ୍ର ଦାଶ**

❑ ପ୍ରଫେସର ଦାଶ ଥିଲେ ଏକାଧାରରେ ସୁବକ୍ତା, ସୁଲେଖକ ଓ ଜଣେ ଉତ୍କୃଷ୍ଟ ଶିକ୍ଷକ ।

**ପ୍ରଫେସର ପ୍ରଫୁଲ୍ଲ ଚନ୍ଦ୍ର ମହାପାତ୍ର**

❑ ପ୍ରଫେସର ଶରତ ଚନ୍ଦ୍ର ଦାଶ ଶିକ୍ଷା ବିଜ୍ଞାନ କ୍ଷେତ୍ରରେ ବୌଦ୍ଧିକତା ଦୃଷ୍ଟିରୁ ଏକ ଅନତିକ୍ରମ୍ୟ ବ୍ୟକ୍ତିତ୍ୱ । ତାଙ୍କର 'ମହାଶୟ' ସମ୍ବୋଧନରେ ସ୍ନେହ ଓ ଶ୍ରଦ୍ଧା ଏତେ ଅଧିକମାତ୍ରାରେ ଥାଏ ଯେ ଶତ୍ରୁ ମଧ୍ୟ ସମ୍ମୋହିତ ହୋଇଯାଏ । ତାଙ୍କପରି ଜଣେ ବିରଳ ବ୍ୟକ୍ତିଙ୍କର ଭ୍ରାତୃପ୍ରତିମ ସ୍ନେହ ଓ ଶ୍ରଦ୍ଧାଭାଜନ ହୋଇ ପାରିଥିବା ହେତୁ ମୁଁ ନିଜକୁ ଭାଗ୍ୟବାନ ମନେ କରୁଛି ।

**ପ୍ରଫେସର ନରେନ୍ଦ୍ର ପ୍ରସାଦ ଦାସ**

❑ ସେ ଥିଲେ ଅତ୍ୟନ୍ତ ସ୍ପଷ୍ଟବାଦୀ, କର୍ମଠ ଏବଂ ଆଦର୍ଶ ନେତୃତ୍ୱ ଗୁଣର ଅଧିକାରୀ, ତାଙ୍କ ପାଖରେ କାମ କରୁଥିବା କର୍ମଚାରୀମାନଙ୍କ ପ୍ରତି ସେ ଥିଲେ ଅତ୍ୟନ୍ତ ସମ୍ବେଦନଶୀଳ ।

**ଡକ୍ଟର ସର୍ବେଶ୍ୱର ସାମଲ**

❑ ପ୍ରଫେସର ଶରତ ଚନ୍ଦ୍ର ଦାଶ ଥିଲେ ଏକାଧାରରେ ଜଣେ ବିଦ୍ୱାନ, ଉଚ୍ଚକୋଟୀର ପ୍ରଫେସର, ସୁଲେଖକ, ଦୂରଦ୍ରଷ୍ଟା ଓ ମହାନ ପୁରୁଷ । ତାଙ୍କ ଦୂର ଦୃଷ୍ଟି ଏତେ ଅଧିକ ଥିଲା ଯେ ସେ ମନ ପ୍ରାଣ ଦେଇ ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦ ଓ ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ରକୁ ଦୃଢ଼ ଭିତ୍ତିରେ ନୂତନ ଜୀବନ୍ୟାସ ଦେଇ ଗଢ଼ିଥିଲେ । ଜନସଂଖ୍ୟା ଶିକ୍ଷା ସାଧନ କେନ୍ଦ୍ର କିପରି ନିରନ୍ତର ବାହ୍ୟ ସାହାଯ୍ୟ ବିନା କାର୍ଯ୍ୟକ୍ଷମ ହୋଇପାରିବ, ତାହା ଚିନ୍ତାକରି ସେ କୋଟିଏ ଟଙ୍କାର ସ୍ଥାୟୀ ଜମା ରାଶି ରଖିଯାଇଛନ୍ତି । ସେ ଆଶା କରିଥିଲେ ଯେ ଏହି ସ୍ଥାୟୀ ଜମାରାଶିର ସୁଧ ଅନୁଷ୍ଠାନର ସୁପରିଚାଳନା ନିମନ୍ତେ ଯଥେଷ୍ଟ ହେବ । ସଂପ୍ରତି ଜଣାଯାଏ ଯେ ଏଇ ଜମାରାଶି ସୁଧ ସହିତ ପ୍ରାୟ ତିନିକୋଟିରୁ ଅଧିକ ହୋଇଅଛି ।

**ଡକ୍ଟର ଅରବିନ୍ଦ ପଟ୍ଟନାୟକ**

❑ ପ୍ରଫେସର ଦାଶ ଥିଲେ ଶିକ୍ଷା ବିଭାଗର ପିତାମହ ଭୀଷ୍ମ ସଦୃଶ । ଅଧ୍ୟୟନ, ଅଧ୍ୟାପନା ଓ ଗବେଷଣା କ୍ଷେତ୍ରରେ ସେ ଥିଲେ ଏକ ଅପ୍ରତିଦ୍ୱନ୍ଦୀ ତଥା ଅତୁଳନୀୟ ବ୍ୟକ୍ତିତ୍ୱ ।

**ପ୍ରଫେସର କୃଷ୍ଣ କୁମାର ମହାନ୍ତି**

❑ ସ୍ପଷ୍ଟବାଦୀ, ଉଚ୍ଚମନା ଏବଂ ତାଙ୍କର ଉତ୍ତୁଙ୍ଗ ବ୍ୟକ୍ତିତ୍ୱ ଯୋଗୁଁ ସେ ସମସ୍ତଙ୍କର ନମସ୍ୟ ଥିଲେ । ତାଙ୍କ ସମକ୍ଷରେ ଠିଆ ହେବାର ଧୃଷ୍ଟତା ଥିଲା ହିମାଳୟ ଆଗରେ ଛୋଟ ଦ୍ରୁମଟି ପରି ।

**ଡକ୍ଟର ମୋହିତ ମୋହନ ମହାନ୍ତି**

❑ ଆମ ଓଡ଼ିଶାର ପୃଷ୍ଠପଟରେ ଶରତ ହିଁ ଶ୍ରେଷ୍ଠ ଋତୁ । ସେଇଥିପାଇଁ ଶହେଟି ଶରତ ବଞ୍ଚିବା ପାଇଁ ଅନେକଙ୍କର କାମନା । ସେମିତି ମଣିଷର ସମସ୍ତ ପ୍ରକାରର ଆହରଣ ଭିତରେ ଶିକ୍ଷା ହିଁ ଶ୍ରେଷ୍ଠ । ଶିକ୍ଷା, ଶରତ ଋତୁ ପରି ଶୀତଳ ଓ ସ୍ନିଗ୍ଧ । ସ୍ୱର୍ଗତ ଡକ୍ଟର ଶରତ ଚନ୍ଦ୍ର ଦାଶ ନିଗୁଟା ଭାବରେ ଥିଲେ ଶିକ୍ଷା ବଳୟର ମଣିଷ । ଶିକ୍ଷକ, ଅଧ୍ୟାପକ ପୁଣି ଶିକ୍ଷା ଅଧିକାରୀ ଓ ନିର୍ଦ୍ଦେଶକ । ଓଡ଼ିଶାରେ ଯେଉଁ ଜନଶିକ୍ଷାର ଫଲ୍‌ଗୁ ପ୍ରବାହିତ ହୋଇଥିଲା

ତା'ର ସର୍ବଶ୍ରେଷ୍ଠ ଉଦ୍‌ଗାତା ଥିଲେ ଡକ୍ଟର ଦାଶ । ଛାତ୍ରବତ୍ସଳ, ସେହ୍ନୀ ମଣିଷ, ଅନନ୍ୟ ଗୁରୁ ପୁଣି ନୀତିନିଷ୍ଠ ପ୍ରଶାସକ । ତାଙ୍କ ଭଳି ସୁସନ୍ତାନମାନେ ହିଁ ସମାଜର ପ୍ରଣମ୍ୟ କୂଳତିଳକ । ସେ ଅମର ଆତ୍ମାଙ୍କ ପ୍ରତି ମୋର ଅଜସ୍ର ଶ୍ରଦ୍ଧାଞ୍ଜଳି ।

**ଦାଶ ବେନହୁର**

❑ ପ୍ରଫେସର ଦାଶ ଥିଲେ ଜଣେ ଗଣିତ ବିଶେଷଜ୍ଞ । ଜଣେ ଅତ୍ୟନ୍ତ ଅମାୟିକ ଏବଂ ସରଳ ବ୍ୟକ୍ତି । ଆଜିବି ଗଣିତ ମାନେ ମୋ ପାଇଁ ଡ. ଶରତ ଚନ୍ଦ୍ର ଦାଶ ।

**ଶ୍ରୀମୟ ଜର**

❑ ପ୍ରଫେସର ଶରତ ଚନ୍ଦ୍ର ଦାଶ ଓଡ଼ିଶାର ଜଣେ ସ୍ମରଣୀୟ ଶିକ୍ଷାବିତ୍ । ଅଧ୍ୟାପନା ଓ ଶିକ୍ଷା ପ୍ରଶାସନରେ ତାଙ୍କର ଅନନ୍ୟ ଅନୁଭୂତି ଓ ଅଭିଜ୍ଞତା ଆମ ଶିକ୍ଷା ବିଭାଗକୁ ସମୃଦ୍ଧ କରିଅଛି । ଅନୁରୂପ ଭାବେ ସେ ଜଣେ ଶ୍ରେଷ୍ଠ ମଣିଷ ଓ ମାନବିକ ଗୁଣାବଳୀର ଏକ ସମ୍ବେଦନଶୀଳ ବ୍ୟକ୍ତିତ୍ୱ । ଶିକ୍ଷା ବିଭାଗର ବିଭିନ୍ନ ପଦପଦବୀରେ କାର୍ଯ୍ୟକରି ସେ ଅର୍ଦ୍ଧଶତାବ୍ଦୀ ପାଖାପାଖି ଓଡ଼ିଶାର ଶିକ୍ଷକ ଶିକ୍ଷାକୁ ଆଲୋକିତ କରିଥିଲେ । ଏହି କୃତବିଦ୍ ବିଦ୍ୱାନ ଶିକ୍ଷାବିତ୍ ସଂପ୍ରତି ଅନ୍ୟମାନଙ୍କ ପାଇଁ ଆଦର୍ଶ ଓ ଉଦାହରଣ ହୋଇ ରହିଅଛନ୍ତି ।

**ଡକ୍ଟର ରମାକାନ୍ତ ରାଉତ**

❑ ପ୍ରଫେସର ଶରତ ଚନ୍ଦ୍ର ଦାଶ ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦ, ଓଡ଼ିଶା ଏବଂ ମାଧ୍ୟମିକ ଶିକ୍ଷାର ନିର୍ଦ୍ଦେଶକ ଭାବରେ କାର୍ଯ୍ୟକରି ରାଜ୍ୟରେ ଏକ ପ୍ରଶଂସିତ ଏବଂ ଅଗ୍ରପୂଜ୍ୟ ପ୍ରତିଭା ରୂପେ ସ୍ଥାନ ପାଇଛନ୍ତି । ଜଣେ ଆଦର୍ଶ ଶିକ୍ଷାବିତ୍ ଓ ଶିକ୍ଷା ପ୍ରଶାସକ ଭାବରେ ସେ ଚିର ସ୍ମରଣୀୟ । ଏତଦ୍‌ବ୍ୟତୀତ ଜ୍ଞାନର ଶିକ୍ଷାଜ୍ୟୋତିକୁ ପ୍ରଜ୍ଜ୍ୱଳିତ କରି ସେ ଶିକ୍ଷକ ଶିକ୍ଷା ଓ ଶିକ୍ଷାୟତନର ବିକାଶ ଦିଗରେ ଯେଉଁ ପ୍ରଯତ୍ନ କରିଯାଇଅଛନ୍ତି, ତାହା ଓଡ଼ିଶାର ଶିକ୍ଷା ଜଗତରେ ଏକ ନୂତନ ଅଧ୍ୟାୟ ଓ ପରମ୍ପରା ସୃଷ୍ଟି କରିଅଛି ।

**ଡକ୍ଟର ଶରତ କୁମାର ବିଶ୍ୱାଳ**

- ପ୍ରଫେସର ଦାଶ ଗଣିତ, ବିଜ୍ଞାନ, ସାମାଜିକ ଶିକ୍ଷା ଓ ମନୋବିଜ୍ଞାନ ଆଦି ପୁସ୍ତକ ରଚନା କରିଅଛନ୍ତି । ଏହା ବ୍ୟତୀତ ଶତାଧିକ ଗବେଷଣାତ୍ମକ ନିବନ୍ଧ ମଧ୍ୟ ରଚନା କରିଅଛନ୍ତି । 'ବାଇମନ' ଶୀର୍ଷକ କବିତା ପୁସ୍ତକଟି ମଧ୍ୟ ତାଙ୍କ ରଚନାବଳୀ ମଧ୍ୟରେ ସ୍ଥାନ ପାଇଅଛି ।

**ଇଞ୍ଜିନିୟର ଶିବପ୍ରସାଦ ମିଶ୍ର**

- ପ୍ରଫେସର ଦାଶ ଥିଲେ ଏକ ଅନୁଷ୍ଠାନ - ଏକାଧାରରେ ଜଣେ ପ୍ରଖ୍ୟାତ ଶିକ୍ଷାବିତ୍, ଦକ୍ଷ ଅନୁଶାସକ, ପ୍ରଗଳ୍ଭ ବକ୍ତା, ନିଖୁଣ ଲେଖକ ।

**ପ୍ରଭୁ ପ୍ରସାଦ ପାଣିଗ୍ରାହୀ**

- ପ୍ରଫେସର ଦାଶ ଜଣେ ଶିକ୍ଷାବିତ୍ ଭାବେ ସାରା ଓଡ଼ିଶାରେ ପ୍ରାଥମିକ ସ୍ତରରୁ ସ୍ନାତକ ସ୍ତର ପର୍ଯ୍ୟନ୍ତ ଏକ ବୈପ୍ଳବିକ ପରିବର୍ତ୍ତନ କରି ଓଡ଼ିଶାର ଶିକ୍ଷାର ପ୍ରସାର କ୍ଷେତ୍ରରେ ପରିବର୍ତ୍ତନ କରି ଓଡ଼ିଶାର ଶିକ୍ଷାର ପ୍ରସାର କ୍ଷେତ୍ରରେ ଜଣେ ବିଶିଷ୍ଟ ବ୍ୟକ୍ତିତ୍ୱର ପରିଚାୟକ ଥିଲେ ।

**ତାରିଣୀ ଚରଣ ପାଢ଼ୀ**

- 'ଶିକ୍ଷକ ଶିକ୍ଷା' - ପୃଷ୍ଠଭୂମିରେ ଶ୍ରୀଯୁକ୍ତ ଦାଶଙ୍କ ଅବଦାନ ଅତୁଳନୀୟ । ଓଡ଼ିଶାର ଶିକ୍ଷକ ଶିକ୍ଷାର ଗୁଣାତ୍ମକ ମାନରେ ଉନ୍ନତି ଆଣିବା ପାଇଁ ଏକ ସ୍ୱତନ୍ତ୍ର ନିର୍ଦ୍ଦେଶାଳୟ କରିବାଠାରୁ ଆରମ୍ଭ କରି ଶିକ୍ଷକ ଶିକ୍ଷା ତଥା ପ୍ରାଥମିକ ଓ ମାଧ୍ୟମିକ ଶିକ୍ଷାରେ ବ୍ୟାପକ ପରିବର୍ତ୍ତନ ଆଣିବା ପାଇଁ ସେ ଆପ୍ରାଣ ଉଦ୍ୟମ କରି ସଫଳ ହୋଇଥିଲେ ।

**ଡକ୍ଟର ଧ୍ରୁବଚରଣ ମିଶ୍ର**

- ମୋର ଶିକ୍ଷକ ପ୍ରଫେସର ଜଗମୋହନ ରାଠୋରଙ୍କ ସେ ଗୁରୁ । ତେଣୁ ମୋର ଗୁରୁଙ୍କ ଗୁରୁ । ପ୍ରତ୍ୟକ୍ଷ ଶିଷ୍ୟ ହେବାର ସୌଭାଗ୍ୟ ସିନା ପାଇ ନ ଥିଲି, ହେଲେ ଚାକିରି କାଳରେ ପ୍ରତ୍ୟକ୍ଷ ଦିଗ୍‌ଦର୍ଶନ ପାଇଛି ।

**ଡକ୍ଟର ଭାଗ୍ୟଧର ମହାନ୍ତି**

❑ ସ୍ୱାଧୀନତା ପରବର୍ତ୍ତୀ ସମୟରେ ଯେଉଁ କେତେଜଣ ଓଡ଼ିଶାରେ ଶିକ୍ଷାର ବିକାଶ ପାଇଁ ନୂଆ କିଛି ଚିନ୍ତା କରିଥିଲେ ଓ ଭାରତ ସରକାରଙ୍କ ବିଭିନ୍ନ ଗଠନମୂଳକ କେନ୍ଦ୍ରୀୟ ଯୋଜନାର ସଫଳ ରୂପାୟନ ପାଇଁ ଚେଷ୍ଟା କରିଥିଲେ ସେମାନଙ୍କ ମଧ୍ୟରେ ଶିକ୍ଷାବିତ୍ ପ୍ରଫେସର ଶରତଚନ୍ଦ୍ର ଦାଶ ଅନ୍ୟତମ । ପ୍ରାଥମିକ ଶିକ୍ଷାଠାରୁ ଆରମ୍ଭ କରି ଉଚ୍ଚଶିକ୍ଷା ପର୍ଯ୍ୟନ୍ତ ପ୍ରତ୍ୟେକ କ୍ଷେତ୍ରରେ ମାନବସମ୍ବଳର ସୁବିନିଯୋଗ ପାଇଁ ତାଙ୍କର ନିଷ୍ଠା ଥିଲା ପ୍ରଶଂସନୀୟ ।

**ପ୍ରଫେସର ବାଉରିବନ୍ଧୁ କର**

❑ ସେ ଥିଲେ ଜ୍ଞାନର ସମୁଦ୍ର, ଲୋକଙ୍କ ମନ କିଣିବାରେ ଅଦ୍ୱିତୀୟ । ନିଜ ଜୀବନକୁ ତିଳତିଳ କରି ଉତ୍ସର୍ଗ କରିବାରେ ସେ ଥିଲେ ଅନନ୍ୟ ।

**ପ୍ରାଧ୍ୟାପିକା ବିଜୟଲକ୍ଷ୍ମୀ ଦାଶ**

❑ ସେ ଓଡ଼ିଶା, ଭାରତର ଶିକ୍ଷା ବିଭାଗ ଛଡ଼ା ଭାରତ ବାହାରେ ବହୁ ଶିକ୍ଷାବିତ୍‌ଙ୍କଦ୍ୱାରା ଆଦୃତ ହୋଇଥିଲେ । ଶିକ୍ଷାର ବିକାଶ ପାଇଁ ବହୁ ପ୍ରକାରର ପ୍ରକଳ୍ପ ଓଡ଼ିଶାକୁ ଆଣି ନିରକ୍ଷର ପିଲାମାନେ କିପରି ସାକ୍ଷର ହୋଇ ପାରିବେ, ସେହି ସ୍ୱପ୍ନକୁ ସେ ସାକ୍ଷର କରି ପାରିଥିଲେ ।

**ଅନିଲ ଦାଶ**

❑ ସେ କେବଳ ବୃତ୍ତିରେ ପ୍ରଫେସର ନ ଥିଲେ, ମାତ୍ର ଜୀବନ ଦର୍ଶନ ଓ ଆଦର୍ଶର ଏକ ମୂର୍ତ୍ତିମନ୍ତ ପ୍ରଫେସର ଭାବେ ଉଜ୍ଜୀବିତ ଥିଲେ । ସେ ଥିଲେ ଜଣେ ପ୍ରବକ୍ତା, ଯେ କି ନିଜେ ନିଜର ଅନନ୍ୟ ଉଦାହରଣ ଥିଲେ ।

**ଡକ୍ଟର ଦିଗରାଜ ବ୍ରହ୍ମା**

❑ ଅଧକ୍ଷ ପ୍ରଫେସର ଦାଶଙ୍କର ଗବେଷଣା ପ୍ରତି ଥିଲା ପ୍ରବଳ ଅନୁରାଗ । ଅବସରର ଅନେକ ଦିନ ପରେ ରାଜ୍ୟ ଜନସାଧନ କେନ୍ଦ୍ର ଅନୁରୋଧରେ ସେ ଦିଗ୍‌ଦର୍ଶନ ଦେଇଥିଲେ ଏକ ରାଜ୍ୟସ୍ତରୀୟ ଗବେଷଣାକୁ ଏବଂ ତାହା ଥିଲା ଶିଶୁ ଶ୍ରମିକ ଉପରେ । ସେହି ଗବେଷଣାଲବ୍ଧ ସନ୍ଦର୍ଭ

ସର୍ବଭାରତୀୟସ୍ତରରେ ଆଦୃତ ହୋଇ ଭାରତ ସରକାରଙ୍କ ଦ୍ୱାରା ପରବର୍ତ୍ତୀ କାର୍ଯ୍ୟକ୍ରମ ରୂପେ ଗ୍ରହଣ କରାଯାଇଥିଲା ।

**ଡକ୍ଟର ଅମରେନ୍ଦ୍ର ପ୍ରସାଦ ଗିରି**

❑ ଓଡ଼ିଶାର ଜଣେ ବୟୋଜ୍ୟେଷ୍ଠ, ଅଭିଜ୍ଞ, ଜ୍ଞାନୀ, ପରମ କାରୁଣିକ ଓ ବିଶିଷ୍ଟ ଶିକ୍ଷାବିତ୍ ହେଉଛନ୍ତି ପ୍ରଫେସର ସ୍ୱର୍ଗତ ଶରତଚନ୍ଦ୍ର ଦାଶ ।

**ଡକ୍ଟର ପଦ୍ମଚରଣ ମହାନ୍ତି**

❑ ଭୂମିପ୍ରତି, ଭୂମିର ମଣିଷ ପ୍ରତି ଓ ବିଚାର ପ୍ରତି ପ୍ରଫେସର ଦାଶଙ୍କ ଗଭୀର ଶ୍ରଦ୍ଧା ଥିଲା । ସମ୍ଭବତଃ ପାଶ୍ଚାତ୍ୟ ଶିକ୍ଷା ଦର୍ଶନ ଓ ପ୍ରାଚ୍ୟ ଶିକ୍ଷା ଦର୍ଶନ ସମେତ ଉତ୍ତର ସ୍ୱାଧୀନତା ସମୟରେ ଏକ ନବନିର୍ମାଣକାରୀ ଚେତନାଦ୍ୱାରା ସେ ଅନୁରକ୍ତ ହେତୁ, ତାଙ୍କ ବ୍ୟକ୍ତିତ୍ୱ ସ୍ୱତନ୍ତ୍ର, ଅନନ୍ୟ ଓ ମର୍ଯ୍ୟାଦାସଂପନ୍ନ ଥିଲା ।

**ଡକ୍ଟର ମହେନ୍ଦ୍ର କୁମାର ମିଶ୍ର**

❑ ଦାର୍ଶନିକ ସକ୍ରେଟିସଙ୍କ ମତରେ, ସମସ୍ତଙ୍କ ଆତ୍ମା ଅମର, କିନ୍ତୁ ନ୍ୟାୟବାନ ଲୋକର ଆତ୍ମାହିଁ ଦେବତ୍ୱ ଲାଭ କରେ । ତାହାହିଁ ଘଟିଛି ସ୍ୱର୍ଗତ ଶରତ ଚନ୍ଦ୍ର ଦାଶଙ୍କ କ୍ଷେତ୍ରରେ ।

**ଏସ୍. ସୁଧାଂଶୁ କୁମାର ସୁବୁଦ୍ଧି**

❑ ଶୈକ୍ଷିକ ନେତୃତ୍ୱ ଦେବାର ଶକ୍ତି ତାଙ୍କ ପାଖରେ ଅସୀମ ଥିଲା । ତାଙ୍କଠାରୁ ଅଧିକ ଚିନ୍ତା କରିବାର ମଣିଷ କ୍ୱଚିତ୍ ମିଳନ୍ତି । ବିଦ୍ୟାଳୟ ଶିକ୍ଷାକୁ ଯେ ଯାହା ଦେଇଛନ୍ତି, ସେହି ଭିତ୍ତିଭୂମିରେ ଛିଡ଼ା ହୋଇ ଆମ ରାଜ୍ୟ ଓ ଦେଶର ଅନେକ ଶିକ୍ଷାବିତ୍ ଅନେକ ବାଟ ଆଗେଇ ଯାଇଛନ୍ତି ।

**ଡକ୍ଟର ଦାମୋଦର ମହାପାତ୍ର**

❑ ପ୍ରଫେସର ଦାଶଙ୍କ ପ୍ରଶାସନିକ ଦକ୍ଷତା ଯେପରି ପ୍ରଭାବଶାଳୀ ଥିଲା, ଶିକ୍ଷାଦାନ ଦକ୍ଷତା ଓ ଲେଖାଲେଖି ଦକ୍ଷତା ମଧ୍ୟ ଉଚ୍ଚକୋଟୀର ଥିଲା ।

**ଡକ୍ଟର ଗୌରାଙ୍ଗ ଚରଣ ନନ୍ଦ**

❑ ପ୍ରଫେସର ଦାଶ ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦ, ଓଡ଼ିଶାକୁ ନିଜର ମାନସ ସନ୍ତାନ ରୂପେ ଗଢ଼ି ତୋଳିଥିଲେ । ରାଜ୍ୟ ଶିକ୍ଷା ପ୍ରତିଷ୍ଠାନ ପରି ଛୋଟିଆ ଅନୁଷ୍ଠାନର ସୀମିତ କାର୍ଯ୍ୟଧାରାକୁ ପ୍ରସାରିତ କରି ଶିକ୍ଷକ ଶିକ୍ଷା ନିର୍ଦ୍ଦେଶାଳୟ ଏବଂ ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦ, ଓଡ଼ିଶା ଭଳି ଏକ ବୃହତ୍ତର ଅନୁଷ୍ଠାନ ଗଢ଼ି ତୋଳିଥିଲେ । ପରବର୍ତ୍ତୀ କାଳରେ ଏହା ଏକ ବିଶାଳ ଦ୍ରୁମରେ ପରିଣତ ହୋଇଅଛି ।

ଡକ୍ଟର ସୁରେଶ ଚନ୍ଦ୍ର ସାହୁ

❑ ପ୍ରଫେସର ଦାଶଙ୍କ ଭଳି ଜଣେ ଦରଦୀ, ସ୍ନେହୀ ଓ ଉଦାର ମଣିଷ ଆଜିର ଦୁନିଆରେ ବିରଳ । ତାଙ୍କ ସହ ନ ମିଶିଲେ କେହି ତାଙ୍କ ବ୍ୟକ୍ତିତ୍ୱକୁ ଦୂରରୁ ଯଥାର୍ଥ ଭାବେ ଆକଳନ କରି ପାରିବନି । ତାଙ୍କର ନିଛକ ମଣିଷପଣିଆ କେବଳ ଅନୁଭବୀ ହିଁ ଜାଣେ ।

ଡକ୍ଟର ଦୁର୍ଗାଚରଣ ରଣା

❑ ଡକ୍ଟର ଶରତ ଚନ୍ଦ୍ର ଦାଶ ଥିଲେ ଓଡ଼ିଶାର ଜଣେ ଲବ୍ଧପ୍ରତିଷ୍ଠ ଶିକ୍ଷା-ପ୍ରଶାସକ । ରାଜ୍ୟରେ ପ୍ରାଥମିକ, ମାଧ୍ୟମିକ ଓ ଶିକ୍ଷକ ଶିକ୍ଷାର ବିକାଶ ପାଇଁ ତାଙ୍କ ବଳିଷ୍ଠ ଯୋଗଦାନ ଥିଲା ବିଶେଷ ଗୁରୁତ୍ୱପୂର୍ଣ୍ଣ । ଭିତ୍ତିଭୂମିର ବିକାଶ ସାଙ୍ଗକୁ ଶିକ୍ଷାର ଗୁଣାତ୍ମକ ମାନବୃଦ୍ଧି ଥିଲା ତାଙ୍କ ଶୈକ୍ଷିକ ଜୀବନର ପ୍ରଥମ ଓ ପ୍ରଧାନ ଲକ୍ଷ୍ୟ । ଶିକ୍ଷାର ଉନ୍ନତି କଳ୍ପେ ଓଡ଼ିଶାର ଶୈକ୍ଷିକ ପରିମଣ୍ଡଳ କେବଳ ପ୍ରଚାର ସର୍ବସ୍ୱ ନ ହୋଇ, ମୂଲ୍ୟବୋଧଭିତ୍ତିକ ପ୍ରାୟୋଗିକ ଶିକ୍ଷାରେ ବିଶ୍ୱାସ କରୁ - ଏହା ଥିଲା ତାଙ୍କ ଆନ୍ତରିକ ଅଭୀପ୍ସା । ସ୍ୱପ୍ନ ଓ ସଂକଳ୍ପ । ପ୍ରଫେସର ଶରତ ଚନ୍ଦ୍ର ଥିଲେ ଶିକ୍ଷା ଜଗତର ଶରତ ଆକାଶରେ ଚନ୍ଦ୍ର ସମ ।

ଡକ୍ଟର ନାରାୟଣ ପ୍ରଧାନ

❑ ପ୍ରଫେସର ଦାଶ ଶିକ୍ଷା ପ୍ରଶାସନ ଓ ଶିକ୍ଷା ପରିଦର୍ଶନର ଜଣେ ଶ୍ରେଷ୍ଠ ବ୍ୟକ୍ତିତ୍ୱ ଥିଲେ । ସେ ଯେତେବେଳେ ରାଜ୍ୟ ଶିକ୍ଷା ପ୍ରତିଷ୍ଠାନର ଶୈକ୍ଷିକ ଓ ପ୍ରଶାସନିକ ଅଧୀନରେ ଥିବା ଭୁବନେଶ୍ୱରସ୍ଥ, ୟୁନିଟ୍ -୧, ସରକାରୀ ବାଳକ ଉଚ୍ଚ

ବିଦ୍ୟାଳୟକୁ ପରିଦର୍ଶନରେ ଆସୁଥିଲେ, ସେତେବେଳେ ତାଙ୍କ ଉପସ୍ଥିତି ଓ ଦିଗ୍‌ଦର୍ଶନରେ ସମଗ୍ର ବିଦ୍ୟାଳୟ ପରିବେଶ ମହିମାନ୍ୱିତ ହେଉଥିଲା ।

**ଚତୁର୍ଭୁଜ ବ୍ରହ୍ମା**

❑ ତାଙ୍କର ଧୀଶକ୍ତି, ଦୂରଦୃଷ୍ଟି ଏବଂ ଅବିଶ୍ରାନ୍ତ ଚେଷ୍ଟା ଫଳରେ ୟୁନିସେଫ୍ ପ୍ରକଳ୍ପଗୁଡ଼ିକ ପରିଚାଳିତ ହେବା ଫଳରେ ଓଡ଼ିଶା ଭାରତବର୍ଷରେ ଶୀର୍ଷସ୍ଥାନ ଅଧିକାର କରିଥିଲା । ରାଷ୍ଟ୍ରୀୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦ, ନୂଆଦିଲ୍ଲୀ ଏବଂ ୟୁନିସେଫ୍ ଦ୍ୱାରା ସେ ବହୁବାର ପ୍ରଶଂସିତ ହୋଇପାରିଥିଲେ ।

**ଅର୍ଜ୍ଜୁନ ଚରଣ ପଣ୍ଡା**

❑ ପ୍ରଫେସର ଦାଶ ଥିଲେ ବର୍ତ୍ତମାନର ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦ, ରାଜ୍ୟ ଶିକ୍ଷା ଔଦ୍ୟୋଗିକ ପ୍ରତିଷ୍ଠାନ ଓ ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର ପ୍ରଭୃତି ଅନେକ ଅନୁଷ୍ଠାନର ସ୍ରଷ୍ଟା । ଅପୂର୍ବ ଦୂରଦୃଷ୍ଟି ସଂପନ୍ନ ବ୍ୟକ୍ତିତ୍ୱ । ଶିକ୍ଷା ବ୍ୟବସ୍ଥାକୁ ବାସ୍ତବଧର୍ମୀ ଓ ସୁଦୂରପ୍ରସାରୀ କରିବା ପାଇଁ ତାଙ୍କର ଦାନ ଅତୁଳନୀୟ । ଏତଦ୍‌ବ୍ୟତୀତ ସେ ଥିଲେ ଜଣେ ଦରଦୀ ମଣିଷ, ସ୍ନେହୀ ଓ ପିତୃତୁଲ୍ୟ ।

**ଦୀପକ ଦାସ**

❑ ବୀର ସୁରେନ୍ଦ୍ର ସାଏ ନଗର ଅଞ୍ଚଳର ପିଲାମାନଙ୍କ ପାଇଁ ବିଦ୍ୟାଳୟ, ସର୍ବସାଧାରଣଙ୍କ ସାମାଜିକ, ସାଂସ୍କୃତିକ ବିକାଶ ନିମନ୍ତେ ମନ୍ଦିର ଗଠନ ଓ କାର୍ଯ୍ୟକ୍ରମରେ ପ୍ରଫେସର ଦାଶ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ ।

**ନିର୍ମଳକାନ୍ତ ମହାନ୍ତି**

❑ ପ୍ରଫେସର ଦାଶ ଜଣେ ଛାତ୍ରବତ୍ସଳ, ଗୁଣଗ୍ରାହୀ ଉଚ୍ଚକୋଟୀର ଅଧ୍ୟାପକ ।

**ଇନ୍ଦ୍ରମଣି ପାଣିଗ୍ରାହୀ**

❑ ପ୍ରଫେସର ଦାଶ ଥିଲେ ଜଣେ ଅନନ୍ୟ ଶିକ୍ଷାବିତ୍, ଛାତ୍ରବତ୍ସଳ ଶିକ୍ଷକ, ସଫଳ ଶିକ୍ଷା ପ୍ରଶାସକ ଓ ସର୍ବୋପରି ଜଣେ ଭଲ ମଣିଷ ।

**ରାଜ କିଶୋର ମିଶ୍ର**

❑ ପ୍ରଫେସର ଦାଶ ଥିଲେ ଅତ୍ୟନ୍ତ ଜ୍ଞାନୀ, ବନ୍ଧୁପ୍ରିୟ ଓ ଜନ ଜୀବନର ଏକ ସାଧାରଣ ମଣିଷ । ତାଙ୍କ ପରି ବିଶିଷ୍ଟ ଶିକ୍ଷାବିତ୍‌ଙ୍କ ସ୍ଥାନ ପୂରଣ ହେବା ଅସମ୍ଭବ ।

**ବିନୋଦ ଦଲାଲ ପାଢ଼ୀ**

❑ ସେ ଥିଲେ ଆମ ବୀର ସୁରେନ୍ଦ୍ର ସାଏ ନଗରର ଦିଗ୍‌ଦର୍ଶକ । ସାଇ ନଗରର ଉନ୍ନତି ଯଥା - ସ୍କୁଲ, ମନ୍ଦିର, ଦୁର୍ଗାପୂଜା ବରିଷ୍ଠ ନାଗରିକ ମଞ୍ଚ ହେଉଛି ତାଙ୍କର ଅବଦାନ ।

**ଶିବ ପ୍ରସାଦ ମିଶ୍ର**

❑ ମହାନ୍ ଶିକ୍ଷାବିତ୍ ପ୍ରଫେସର ଦାଶଙ୍କ ଉପରେ ଆଧାରିତ ବିଭିନ୍ନ ଉପସ୍ଥାପନା ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ଓ ପ୍ରେରଣାଦାୟକ ।

**ଚନ୍ଦ୍ରଶେଖର ମିଶ୍ର**

❑ ପ୍ରଫେସର ଦାଶଙ୍କ କାର୍ଯ୍ୟଦକ୍ଷତା, ବିଦ୍‌ବତ୍ତା, ଉତ୍ତୁଙ୍ଗ ଜୀବନାଦର୍ଶ ହେଉଛି ଶୈକ୍ଷିକ ଜଗତର ଅମ୍ଳାନ ସ୍ମୃତି । ସେ ତାଙ୍କର ବହୁମୁଖୀ ପ୍ରତିଭା ଓ ଗୁଣବତ୍ତା ମାଧ୍ୟମରେ ସମସ୍ତଙ୍କର ପ୍ରିୟଭାଜନ ହୋଇପାରିଥିଲେ ।

**ଡକ୍ଟର ଲକ୍ଷ୍ମୀକାନ୍ତ ଖୁଣ୍ଟିଆ**

❑ ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦର ପ୍ରଶାସନିକ ପରିସର ମଧ୍ୟରେ ଥିଲା ରାଜଧାନୀ ୟୁନିଟ୍-୧ ର ପ୍ରାଥମିକ ବିଦ୍ୟାଳୟ । ପ୍ରଫେସର ଦାଶଙ୍କ ତତ୍ତ୍ୱାବଧାନରେ ସେ ସମୟରେ ଏହି ପ୍ରକଳ୍ପ ବିଦ୍ୟାଳୟ ଦ୍ୱାରା ବହୁ ସୃଜନାତ୍ମକ ଶିକ୍ଷା ଗବେଷଣା ପ୍ରାଥମିକ ସ୍ତରରେ କରାଯାଇଥିଲା । ସେହି ଅନୁଷ୍ଠାନର ଶିକ୍ଷକ ହିସାବରେ ଶିକ୍ଷାର ସୃଜନାତ୍ମକ ଓ ଅନୁଭୂତିମୂଳକ ପ୍ରଣାଳୀ ସଂପର୍କରେ ସେ ମହାଶୟଙ୍କଠାରୁ ଦିଗ୍‌ଦର୍ଶନ ପାଇ ପ୍ରତିଷ୍ଠାନ ତରଫରୁ ବହୁ ଗବେଷଣାତ୍ମକ ନିବନ୍ଧ ନିମନ୍ତେ ପୁରସ୍କାର ଲାଭ କରିଅଛି । ଜନସଂଖ୍ୟା ଶିକ୍ଷା ଉପରେ ମୋ ଦ୍ୱାରା ଲିଖିତ, 'କଣ୍ଢେଇ ବାହାଘର' ପ୍ରତିଷ୍ଠାନର ପତ୍ରିକାର ପ୍ରଥମେ ରହିବ ବୋଲି ସେ ଯେଉଁ ନିରପେକ୍ଷ ନିଷ୍ପତ୍ତି ଦେଇଥିଲେ, ତାହା ଆମ ପାଇଁ ଏକ ଉଚ୍ଚ ଆଦର୍ଶ ଓ ପରମ୍ପରା ସୃଷ୍ଟି କରିଥିଲା ।

**ଦେବରାଜ ସାମନ୍ତରାୟ**

❑ ପ୍ରଫେସର ଦାଶ ଥିଲେ ରାଜ୍ୟ ଜନ ଶିକ୍ଷା କାର୍ଯ୍ୟକ୍ରମର ପିତାମହ ଭୀଷ୍ମ, ଜଣେ ଅନନ୍ୟ ଶିକ୍ଷାବିତ୍ ଓ ସ୍ରଷ୍ଟା ।

**ସଂଜୀବ ପ୍ରଧାନ**

❑ ପ୍ରଫେସର ଶରତ ଚନ୍ଦ୍ର ଦାଶ ରାଜ୍ୟ ଶିକ୍ଷା ଗବେଷଣା ପ୍ରଶିକ୍ଷଣ ପରିଷଦ ଓଡ଼ିଶା ଓ ମାଧ୍ୟମିକ ଶିକ୍ଷା ନିର୍ଦ୍ଦେଶକ ଭାବେ ରାଜ୍ୟରେ ସୁପରିଚିତ । ତାଙ୍କ ଶିକ୍ଷାଦାନ ପ୍ରଣାଳୀ ତଥା ଶିକ୍ଷା ପ୍ରଶାସନ ରାଜ୍ୟର ଅଗଣିତ ଶିକ୍ଷକ ଏବଂ ଶିକ୍ଷାବିତ୍‌ମାନଙ୍କର ଏବେ ମଧ୍ୟ ଅନୁପ୍ରେରଣାର ଉତ୍ସ ହୋଇ ରହିଅଛି ।

**ଏକାଦଶୀ ଜେନା**

❑ ଶିକ୍ଷାବିତ୍ ଶରତଚନ୍ଦ୍ର ଦାଶ ଜଣେ ଆଦର୍ଶବାଦୀ, ନୀତିବାଦୀ ଶିକ୍ଷା ପ୍ରଶାସକ ଓ ବାଗ୍ମୀ ଥିଲେ । ତାଙ୍କ ଶିକ୍ଷାଦାନ ପ୍ରଣାଳୀ ସଂପ୍ରତି ରାଜ୍ୟର ଶିକ୍ଷକ, ଶିକ୍ଷୟିତ୍ରୀ ଓ ଶିକ୍ଷାବିତ୍‌ମାନଙ୍କୁ ଉଦ୍‌ବୁଦ୍ଧ କରୁଅଛି ।

**ଶତ୍ରୁଘ୍ନ ଭୂତିଆ**

❑ ପ୍ରଫେସର ଶରତ ଚନ୍ଦ୍ର ଦାଶ ତା ୯-୪-୧୯୧୮ରୁ ତା ୪-୮-୧୯୮୨ ପର୍ଯ୍ୟନ୍ତ ମାଧ୍ୟମିକ ଶିକ୍ଷା ପରିଷଦର ସଭାପତି ଥିଲେ । ସେ ସମୟରେ ସେ ଅନେକଥର ପରିଷଦ ପରିଚାଳନାରେ ଥିବା ସେକେଣ୍ଡାରୀ ବୋର୍ଡ଼ ହାଇସ୍କୁଲ ପରିଦର୍ଶନ କରିଛନ୍ତି ଓ ଶିକ୍ଷକ ଶିକ୍ଷୟିତ୍ରୀଙ୍କ ପାଇଁ ପ୍ରେରଣାର ଉତ୍ସ ହୋଇଛନ୍ତି । ତାଙ୍କ ସହିତ ପାଠ୍ୟପସ୍ତୁକ ପ୍ରସ୍ତୁତି କାର୍ଯ୍ୟରେ ସେ ଯେଉଁ ଶୈକ୍ଷିକ ଦିଗ୍‌ଦର୍ଶନ ଦିଅନ୍ତି ତାହା ଅନନ୍ୟ । ଅନ୍ୟର ମତାମତକୁ ସମ୍ମାନ ଦେବା ହେଉଛି ତାଙ୍କ ଚରିତ୍ରର ଏକ ବିଶେଷ ବିଭାବ । ଶିକ୍ଷା ବିଭାଗର ଏଇ ସାରଥି ଜଣଙ୍କ ସରଳତା, ନମ୍ରତା ଥିଲା ତାଙ୍କର ଅନୁପମ ଭୂଷଣ । ତାଙ୍କ ଜୀବନରେ ସରଳତା ଓ ଉଦାରତା ଥିଲା ଠିକ୍ ଏକ ମୁଦ୍ରାର ଦୁଇ ପାର୍ଶ୍ୱ ଭଳି ।

**କୃଷ୍ଣଚନ୍ଦ୍ର ଷଡ଼ଙ୍ଗୀ**

❑ ପ୍ରଫେସର ଦାଶ ଥିଲେ ଜଣେ ଶିକ୍ଷା ବିଶାରଦ । ସେ ଶିକ୍ଷକ ଶିକ୍ଷା ନିର୍ଦ୍ଦେଶାଳୟ ଓ ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦର ନିର୍ଦ୍ଦେଶକ ଥିଲେ ।

ତାଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ରାଜ୍ୟର ଶିକ୍ଷକ ଶିକ୍ଷା ଅନୁଷ୍ଠାନମାନ କାର୍ଯ୍ୟ କରୁଥିଲେ । ତାଙ୍କ ଭଳି ବିଦ୍ୱାନଙ୍କ ଅବଦାନ ଫଳରେ ରାଜ୍ୟରେ ଏକ ସୁଦୃଢ଼ ଶିକ୍ଷକ ଶିକ୍ଷା ଓ ପ୍ରଶିକ୍ଷଣ ବ୍ୟବସ୍ଥା ଗଢ଼ି ଉଠିଥିଲା । ସେପରି ବ୍ୟବସ୍ଥା ସଂପ୍ରତି ପରିଦୃଷ୍ଟ ହୁଏ ନାହିଁ ।

ପ୍ରଫେସର ସତ୍ୟକାମ ମିଶ୍ର

❑ ଓଡ଼ିଶା ସରକାରଙ୍କ ଶିକ୍ଷା ପ୍ରଶାସନର ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ଗ୍ରହଣ କରି ନିଷ୍ଠାର ସହ କୃତିତ୍ୱ ପ୍ରଦର୍ଶନ କରିପାରିଥିବା ପ୍ରଫେସର ଶରତ ଚନ୍ଦ୍ର ଦାଶ ମୋ ଦୃଷ୍ଟିରେ ଜଣେ ଅନନ୍ୟ ଶିକ୍ଷକ ହିସାବରେ ପ୍ରତୀତ ହୋଇଥାନ୍ତି ।

ଡକ୍ଟର ବାବାଜି ଚରଣ ପଟ୍ଟନାୟକ

❑ ରାଜ୍ୟରେ ଶିକ୍ଷାରେ ସ୍ନାତକୋତ୍ତର ଶ୍ରେଣୀ ଖୋଲିବାରେ ପ୍ରଫେସର ଦାଶ ପ୍ରମୁଖ ଭୂମିକା ନେଇଥିଲେ । ଏହା ଫଳରେ ତାଙ୍କ ଉଦ୍ୟମରେ ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦର ଶୈକ୍ଷିକ ବ୍ୟବସ୍ଥା ମଧ୍ୟରେ ଆମେ ଶିକ୍ଷାରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଏମ୍.ଏ. ଡିଗ୍ରୀ ହାସଲ କରିବାର ସୁଯୋଗ ପାଇଥିଲୁ । ସଂପ୍ରତି ମୁଁ ଓ ମୋର ସହପାଠୀମାନେ ରାଜ୍ୟ ଓ ରାଜ୍ୟ ବାହାରେ ଶୈକ୍ଷିକ ବିକାଶରେ ନିୟୋଜିତ ହୋଇଛନ୍ତି । ଆଜି ଆମେ ସମସ୍ତେ ଯେଉଁ ସ୍ଥିତିରେ ପହଞ୍ଚି ପାରିଅଛୁଁ, ତାହା ପ୍ରଫେସର ଦାଶଙ୍କ ଆମ୍ଭମାନଙ୍କ ପ୍ରତି ସଦିଚ୍ଛା ଓ ଆଶୀର୍ବାଦ ଯୋଗୁଁ ସମ୍ଭବପର ହୋଇ ପାରିଅଛି ।

ଡକ୍ଟର ସ୍ମିତା ମିଶ୍ର

❑ ପ୍ରଫେସର ଦାଶଙ୍କ ବଳିଷ୍ଠ ବ୍ୟକ୍ତିତ୍ୱ ଓ ଦିଗ୍‌ଦର୍ଶନ ଶିକ୍ଷା ପରିବେଶକୁ ଦିବ୍ୟାୟିତ କରୁଥିଲା । ଅଳ୍ପ ଦିନ ପାଇଁ ସେ ରାଜ୍ୟ ମାଧ୍ୟମିକ ଶିକ୍ଷାର ନିର୍ଦ୍ଦେଶକ ଥିଲେ । ଏହି ସମୟରେ ମାଧ୍ୟମିକ ଶିକ୍ଷାର ଗୁଣାତ୍ମକ ବିକାଶ ଦିଗରେ ସେ ବହୁବିଧ କାର୍ଯ୍ୟ କରି ଯାଇଛନ୍ତି ।

ଜବାହାରଲାଲ ସୁବୁଦ୍ଧି

❑ ରାଜ୍ୟ ଶିକ୍ଷା ଗବେଷଣା ପ୍ରଶିକ୍ଷଣ ପରିଷଦର ପିତାମହ ଭୀଷ୍ମ ସଦୃଶ ପ୍ରଫେସର ଦାଶ ରାଜ୍ୟ ଓ ଦେଶର ଜଣେ ଅଗ୍ରଣୀ ପଥପ୍ରଦର୍ଶକ ଥିଲେ । ତାଙ୍କ ସମୟରେ

ଓଡ଼ିଶାର ଶୈକ୍ଷିକ ସଂସ୍କାର ଦେଶ ଓ ଅନ୍ୟ ରାଜ୍ୟ ପାଇଁ ମଧ୍ୟ ଅନୁକରଣୀୟ ହେଉଥିଲା ।

**ଲକ୍ଷ୍ମୀପ୍ରସାଦ ସାହୁ**

❑ ପ୍ରଫେସର ଦାଶ ଥିଲେ ରାଜ୍ୟର ଜଣେ ବିଶିଷ୍ଟ ଶିକ୍ଷାବିତ୍ ଓ ଶିକ୍ଷା ନିର୍ମାତା । ତାଙ୍କର ଦିଗ୍ ଦର୍ଶନ ଶିକ୍ଷକ, ଶିକ୍ଷୟିତ୍ରୀ ଏବଂ ଶିକ୍ଷାପ୍ରେମୀଙ୍କ ଦ୍ୱାରା ଆଦୃତ ହେଉଥିଲା ।

**ସହଦେବ ପଣ୍ଡା**

❑ ଡକ୍ଟର ଶରତ ଚନ୍ଦ୍ର ଦାଶ ଆମ ରାଜ୍ୟର ଜଣେ ବିଶିଷ୍ଟ ଶିକ୍ଷାବିତ୍ ଥିଲେ । ଶିକ୍ଷକ ଶିକ୍ଷା କ୍ଷେତ୍ରରେ ଜଣେ ବିଶେଷଜ୍ଞ ହିସାବରେ ତାଙ୍କର ସୁନାମ ଅଛି । ତାଙ୍କ କର୍ମଜୀବନର ଶେଷ କେତେ ବର୍ଷ ଜନଶିକ୍ଷା କ୍ଷେତ୍ରରେ ଅତିବାହିତ ହୋଇଥିଲା । ଆମ ଦେଶର ଯେତେବେଳେ ସାକ୍ଷରତା ମିଶନ ଆରମ୍ଭ ହେଲା ସେତେବେଳେ ଓଡ଼ିଶାର ସାକ୍ଷରତା କ୍ଷେତ୍ରରେ ସେ ଅଗ୍ରଣୀ ଭୂମିକା ନେଇଥିଲେ । ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର ଅନୁଷ୍ଠାନଟି ଡକ୍ଟର ଦାଶଙ୍କ ହାତରେ ଗଢ଼ା ହୋଇଥିଲା ଏବଂ ସେ ଥିଲେ ଏହାର ପ୍ରତିଷ୍ଠାତା ନିର୍ଦ୍ଦେଶକ । ସାକ୍ଷରତା ବିସ୍ତାର ପାଇଁ ପ୍ରାରମ୍ଭିକ କ୍ଷେତ୍ରରେ ପ୍ରସ୍ତୁତ ହୋଇଥିବା ଯୋଜନାଗୁଡ଼ିକର ସେ ଥିଲେ ସୂତ୍ରଧର । ରାଜ୍ୟର ସାକ୍ଷରତା କାର୍ଯ୍ୟକ୍ରମର ପ୍ରଚାର, ପ୍ରସାର ଓ ବିକାଶ କ୍ଷେତ୍ରରେ ତାଙ୍କର ଦାନ ଅବିସ୍ମରଣୀୟ ।

**ଭୁବନାନନ୍ଦ ତ୍ରିପାଠୀ**

❑ ପ୍ରଫେସର ଦାଶ ହେଉଛନ୍ତି ଶିକ୍ଷା ଜଗତର ଜଣେ ଅନନ୍ୟ ସ୍ପଷ୍ଟବାଦୀ ମଣିଷ । ସେ ଅନ୍ୟମାନଙ୍କ ପାଇଁ ହେଉଛନ୍ତି ଜଣେ ପ୍ରେରଣା ପ୍ରଦାୟକ ବ୍ୟକ୍ତିତ୍ୱ । ଆଜି ତାଙ୍କର ପ୍ରେରଣା ଓ ଆଦର୍ଶରେ ଅନୁପ୍ରାଣିତ ହୋଇ ମୋ ଭଳି ଅନେକ ବ୍ୟକ୍ତି ବିଶେଷ ରାଜ୍ୟ ଓ ଦେଶର ବିଭିନ୍ନ ପ୍ରତିଷ୍ଠାନରେ ଗୁରୁତ୍ୱପୂର୍ଣ୍ଣ ପଦପଦବୀରେ ଅବସ୍ଥାପିତ ହୋଇ ଶୈକ୍ଷିକ ବିକାଶର ସହାୟକ ହୋଇଛନ୍ତି ।

**ପ୍ରଫେସର ଭାବଗ୍ରାହୀ ବିଶ୍ୱାଳ**

❑ ପ୍ରଫେସର ଶରତ ଚନ୍ଦ୍ର ଦାଶ ଆମର ଚିର ସ୍ମରଣୀୟ । ସ୍ନେହ ଶ୍ରଦ୍ଧା ମାଧ୍ୟମରେ କିପରି ସରକାରୀ କାର୍ଯ୍ୟ ହାସଲ କରାଯାଏ ସେ ମହାନ୍ ବ୍ୟକ୍ତିଙ୍କଠାରୁ ସେହି କଳା ଅନ୍ୟମାନେ ଶିଖିଥାନ୍ତି । ମାଧ୍ୟମିକ ଶିକ୍ଷା ନିର୍ଦ୍ଦେଶାଳୟରେ ଭିନ୍ନକ୍ଷମମାନଙ୍କ ନିମନ୍ତେ କାର୍ଯ୍ୟକାରୀ ହେଉଥିବା ସମନ୍ୱିତ ଶିକ୍ଷା ଯୋଜନାର କିପରି ସଫଳ ରୂପାୟନ ହେବ, ସେଥିପାଇଁ ସେ ବିଶେଷ ଯତ୍ନଶୀଳ ଥିଲେ । ସହିଦ ନଗରଠାରେ "ଓପନ୍ ଲର୍ଣ୍ଣିଂ ସିଷ୍ଟମସ୍" ଦ୍ୱାରା ପରିଚାଳିତ ହେଉଥିବା ମସ୍ତିଷ୍କ ପକ୍ଷାଘାତ ଶିଶୁମାନଙ୍କ ବିଦ୍ୟାଳୟର ସେ ଥିଲେ ଦିଗ୍‌ଦର୍ଶକ ।

**ଶିରୀଶ ଚନ୍ଦ୍ର ଦାସ**

❑ ପ୍ରଫେସର ଦାଶଙ୍କ ଅସାଧାରଣ ବ୍ୟକ୍ତିତ୍ୱ, ଅଗାଧ ପାଣ୍ଡିତ୍ୟ, ଅତୁଟ ସ୍ନେହ ସମସ୍ତଙ୍କୁ ସବୁଦିନ ପାଇଁ ଆତ୍ମୀୟତା ବନ୍ଧନରେ ବାନ୍ଧି ରଖୁଥିଲା ।

**ପ୍ରଫେସର ଅନୁପ କୁମାର ଦାଶ**

❑ ଓଡ଼ିଶାର ଶିକ୍ଷା ଇତିହାସକୁ ପ୍ରଭାବିତ କରିଥିବା ଶିକ୍ଷାବିତ୍‌ମାନଙ୍କ ମଧ୍ୟରେ ପ୍ରଫେସର ଶରତ ଚନ୍ଦ୍ର ଦାଶଙ୍କ ନାମ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ । ତାଙ୍କର ଗୁଣାବଳୀ ଓ ଆଦର୍ଶ ବହୁ ଛାତ୍ରଛାତ୍ରୀଙ୍କ କର୍ମପ୍ରବାହରେ ପ୍ରତିଫଳିତ ।

**ଡକ୍ଟର ସରୋଜ ସୁନ୍ଦର ବ୍ରହ୍ମା**

❑ ମହାନୁଭବ ପ୍ରଫେସର ଦାଶଙ୍କ ଇଚ୍ଛାଶକ୍ତି ତାଙ୍କୁ ଜୀବନର ସୋପାନ ପରେ ସୋପାନ ଅତିକ୍ରମ କରିବାର ଖୋରାକ ଯୋଗାଇଥିଲା । କର୍ମମୟ ଜୀବନରେ ସ୍ନେହ ବାଣ୍ଟୁଥିବା ଏହି ମଣିଷ ଜଣକ କେବେ ନିଜର ଲାଭ କ୍ଷତି ପାଇଁ ହିସାବ ନିକାଶ କରି ନ ଥିଲେ ।

**ଡକ୍ଟର ନିରୁପମା ଦାଶ**

❑ ମୋର ଜୀବନରେ 'ଶରତ' ହେଉଛି ମୋର ସର୍ବଶ୍ରେଷ୍ଠ ବାଲ୍ୟ ସାଙ୍ଗ ।

**ପ୍ରଫେସର ନୃସିଂହ ଚରଣ ପଣ୍ଡା**

❑ ପ୍ରଫେସର ଦାଶ ଥିଲେ ରାଜ୍ୟର ଶିକ୍ଷା ଜଗତର ଜଣେ ପଥ ପ୍ରଦର୍ଶକ । ତାଙ୍କ କାର୍ଯ୍ୟକାଳ ମଧ୍ୟରେ ସେ ଶିକ୍ଷାର ବହୁ ସଂସ୍କାରମୂଳକ ପଦକ୍ଷେପମାନ ନେଇଥିଲେ ।

**ଶ୍ରୀମତୀ ବିଜୟଲକ୍ଷ୍ମୀ ମହାନ୍ତି**

❑ ପ୍ରଫେସର ଦାଶ ଥିଲେ ପରଶମଣି ସଦୃଶ, ଯାହାଙ୍କ ସଂସ୍ପର୍ଶରେ ଆସି ମଣିଷର ଚିନ୍ତା ଓ ଚେତନା ବୌଦ୍ଧିକ ଦିଗରେ ରୂପାନ୍ତରିତ ହୋଇ ଯାଉଥିଲା । ଏହା ମୋ ଭଳି ତାଙ୍କ ସଂସ୍ପର୍ଶରେ ଆସିଥିବା ବ୍ୟକ୍ତି ବିଶେଷ ଜୀବନରେ ବିଭିନ୍ନ ଅବସ୍ଥାରେ ଅନୁଭବ କରିଛନ୍ତି । ଏକଦା ସେ ମୋତେ କଥା ପ୍ରସଙ୍ଗରେ କହିଥିଲେ, "ନିଃସ୍ୱାର୍ଥ ପରିଶ୍ରମର ଫଳ ନିଶ୍ଚିତ ଜଣେ ତା'ର ଜୀବନରେ ପାଇ ପାରିବ ।" ତାଙ୍କର ଏହି କଥା ପଦକର ମୂଲ୍ୟ ମୋ ପାଇଁ ଏତେ ଅଧିକ ଥିଲା ଯେ, ମୁଁ ଶିକ୍ଷକ ଶିକ୍ଷାର ପାହାଚ ପରେ ପାହାଚ ଅତିକ୍ରମ କରି ବି.ଏଡ୍‌ରେ ପ୍ରଥମ, ଏମ୍.ଏଡ୍‌ରେ ପ୍ରଥମ ଶ୍ରେଣୀ ଲାଭ କରିଥିଲି ଓ ଶିକ୍ଷାରେ ପିଏଚ.ଡ଼ି ଉପାଧି ମଧ୍ୟ ପାଇଥିଲି । ରାଜ୍ୟ ସରକାରଙ୍କ ବିଭିନ୍ନ ସରକାରୀ ଶିକ୍ଷକ ଶିକ୍ଷା ଅନୁଷ୍ଠାନରେ ସଫଳତାର ସହିତ କାର୍ଯ୍ୟ କରି ଦିବାକର ପଟ୍ଟନାୟକ ଅଗ୍ରଗାମୀ ଶିକ୍ଷା ପ୍ରତିଷ୍ଠାନର ଅଧ୍ୟକ୍ଷ ଭାବେ କାର୍ଯ୍ୟ କରିବାର ମଧ୍ୟ ସୁଯୋଗ ପାଇଥିଲି । ପ୍ରଫେସର ଦାଶ ସେହି ଅନୁଷ୍ଠାନର ଅଧ୍ୟକ୍ଷ ଥିବା ହେତୁ ମୁଁ ନିଜକୁ ତାଙ୍କର ଛାତ୍ର ହିସାବରେ ଗୌରବାନ୍ୱିତ ମନେ କରେ ।

**ଡକ୍ଟର ରାମଚନ୍ଦ୍ର ପାଢ଼ୀ**

❑ ପ୍ରଫେସର ଦାଶଙ୍କ ନିଷ୍କପଟ ହୃଦୟ, ସ୍ନେହ ଓ ଆଶୀର୍ବାଦ ଯେଉଁମାନେ ଥରେ ଜୀବନରେ ପାଇଛନ୍ତି, ସହଜରେ ଭୁଲି ପାରନ୍ତି ନାହିଁ । ସେ ଥିଲେ ଜଣେ ଉଦାରମନା ମଣିଷ ଓ ଆମ ସମସ୍ତଙ୍କର ପ୍ରଣମ୍ୟ ।

**ରଶ୍ମିରେଖା ଦାଶ**

❑ ପ୍ରଫେସର ଦାଶ ସରକାରୀ ପ୍ରଶିକ୍ଷଣ ମହାବିଦ୍ୟାଳୟ, ସମ୍ବଲପୁରର ଅଧ୍ୟକ୍ଷ ଥିଲାବେଳେ ମହାବିଦ୍ୟାଳୟର ଶୈକ୍ଷିକ ବାତାବରଣକୁ ସର୍ବଦା ଚଳଚଞ୍ଚଳ ରଖୁଥିଲେ । ଏତଦ୍‌ବ୍ୟତୀତ ସେ ମହାବିଦ୍ୟାଳୟର କାର୍ଯ୍ୟକ୍ରମ ସହିତ ସ୍ଥାନୀୟ



ହୋଲି ଅବସରରେ ନିଜ ବାସସ୍ଥାନରେ, ୨୦୧୨



ସମସ୍ତ ନାତି ନାତୁଣୀଙ୍କ ଗହଣରେ ପ୍ରଫେସର ଦାଶ, ୧୯୯୭



ଦାଶ ପରିବାରର ରକ୍ଷଣାବେକ୍ଷଣର ପ୍ରମୁଖ ଭୂମିକା ନେଇଥିବା ଜମ୍ମେଇ ମାଆ



ପ୍ରଫେସର ଦାଶଙ୍କ ଆଦରଣୀୟା ଗୋମାତା ଚାନ୍ଦ ସହିତ ଧର୍ମପତ୍ନୀ ଜାନକୀ ଦେବୀ ଓ କନ୍ୟା ମିନତି ଃ ଏହି ଚାନ୍ଦ ଥିଲା ପ୍ରଫେସର ଦାଶଙ୍କ ଶେଷ ଗୋଧନ

*Source: Author, Digitized by PPRACHIN, SOA*



ପ୍ରଫେସର ଦାଶଙ୍କ ଶେଷ ବିଦାୟ, ୨୦୧୩
ଲକ୍ଷ୍ମୀନିବାସ, ଭି.ଏସ୍.ଏସ୍. ନଗର




ନିଜେ ଗଢିଥିବା ଶିକ୍ଷକ ଶିକ୍ଷା ନିର୍ଦ୍ଦେଶାଳୟ ଏବଂ ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦ, ଓଡିଶାରୁ ଅନ୍ତିମ ବିଦାୟ, ୨୦୧୩

*Source: Author, Digitized by PPRACHIN, SOA*



ନଳିନୀ ଦେବୀ ଶିକ୍ଷକ ଶିକ୍ଷା ପ୍ରଶିକ୍ଷଣ ଅନୁଷ୍ଠାନରେ
ପ୍ରଥମ ବାର୍ଷିକ ସ୍ମୃତି ଅର୍ଘ୍ୟ




ବାଇଁସିଆ ଗ୍ରାମର ଜଗନ୍ନାଥ ମନ୍ଦିର : ସ୍ମୃତି ଫଳକ

ଇ-ମେଲ: relief@thesamaja.com

## 'ସମାଜ ରିଲିଫ ପାଣ୍ଠି'କୁ ଦାନ

ମୁଖ୍ୟ କାର୍ଯ୍ୟାଳୟ : ସମାଜ ରିଲିଫ ପାଣ୍ଠି, ଗୋପବନ୍ଧୁ ଭବନ,
ବକ୍ସିବଜାର, କଟକ-୭୫୩୦୦୧
Ph.: 0671-2301240(Ext-155), ମୋ.: 9556720362, 9437013785, 9437020348

# ଶରତ ଚନ୍ଦ୍ର ଦାଶଙ୍କ ପ୍ରଥମ ଶ୍ରାଦ୍ଧବାର୍ଷିକୀରେ ...



ବାଲେଶ୍ୱର : ଶିକ୍ଷାବିତ୍ ପ୍ରଫେସର ଶରତ ଚନ୍ଦ୍ର ଦାଶଙ୍କ ପ୍ରଥମ ଶ୍ରାଦ୍ଧବାର୍ଷିକୀ ପାଳନ ଅବସରେ ତାଙ୍କର ସୁପୁତ୍ର ପ୍ରାକ୍ତନ ପ୍ରଫେସର ନିର୍ମଳ ଚନ୍ଦ୍ର ଦାଶ (ଫକିରମୋହନ ବିଶ୍ୱ ବିଦ୍ୟାଳୟ, ବାଲେଶ୍ୱର)ଙ୍କ ପକ୍ଷରୁ ଶ୍ରୀଜଗନ୍ନାଥଙ୍କ ନିକଟରେ ପିତାଙ୍କ ଅମର ଆତ୍ମାର ସଦ୍‌ଗତି କାମନା କରିବା ସହିତ ତାଙ୍କ ଅମ୍ଳାନ ସ୍ମୃତି ଉଦ୍ଦେଶ୍ୟରେ ୨୦,୦୦୦ଟଙ୍କା ସମାଜ ରିଲିଫ୍ ପାଣ୍ଠି'କୁ ଦାନ କରିଛନ୍ତି । ଏହି ଅର୍ଥ ରାଜ୍ୟର ମେଧାବୀ ଗରିବ ଛାତ୍ର/ଛାତ୍ରୀମାନଙ୍କ ପାଇଁ ଶିକ୍ଷାବୃତ୍ତି ସହାୟତା ନିମନ୍ତେ ପ୍ରଦାନ କରାଯିବାକୁ ଶ୍ରୀ ଦାଶ ଅନୁରୋଧ କରିଛନ୍ତି ।

## ସ୍ମୃତି ଅର୍ଘ୍ୟ : ସମାଜ ପୃଷ୍ଠାରେ

10 RS.




PROF.(DR.) SARAT CHANDRA DASH MEMORIAL TRUST DEED

Know all by these presents that this trust deed is made on the 14th day of JULY, 2000 between Nirmal Chandra Dash, S/o.Prof. Sarat Chandra Dash, Reader, Anthropology Department, Khallikote Autonomous College, Berhampur, P.S. Berhampur Town, District Ganjam here-in-after called Donor of the one part and the Principal, D P I A S E, Berhampur at Kanisi, Dist.Ganjam (here-in-after called Donee) of the other part.

Whereas the father of the donor Prof.(Dr.) Sarat Chandra Dash was the founder Principal of the Government Training College, Berhampur. Subsequently named and styled as D P I S E Berhampur and for the memory of said Prof.(Dr.) Sarat Chandra

## ପ୍ରଫେସର ଦାଶ ମେମୋରିଆଲ ଟ୍ରଷ୍ଟ, ବ୍ରହ୍ମପୁର

*Source: Author, Digitized by PPRACHIN, SOA*




ପ୍ରଫେସର ଦାଶଙ୍କ ଦ୍ୱାରା ଲଣ୍ଡନରୁ ପ୍ରେରିତ ପତ୍ର, ୧୯୭୪



ସଂସ୍କୃତିକୁ ମା'ରୂପରେ ବର୍ଣ୍ଣନାକରି ପିଲାମାନଙ୍କ ପାଖକୁ ପତ୍ର, ୧୯୯୩

Source: Author, Digitized by PPRACHIN, SOA




ଶେଷ ଜୀବନରେ ଲିଖିତ
ବାଇମନ ଗୀତା ଲହରୀ
ପ୍ରଥମ ଖଣ୍ଡ




ବାଇମନ ଗୀତା ଲହରୀ
ଦ୍ୱିତୀୟ ଖଣ୍ଡ




ନାତି କ୍ରାନ୍ତିଙ୍କ ଉଦ୍ଦେଶ୍ୟରେ ଜେଜେଙ୍କ
ଲିଖିତ ପତ୍ରର ସଂକଳନ



ପ୍ରଫେସର ଦାଶଙ୍କ ପିତା ମହେଶ୍ୱର ଦାଶ
ଓ ଅନୁଜ ରଜତ ଚନ୍ଦ୍ର ଦାଶଙ୍କ ଲିଖିତ
ନାମ ବଂଶାବଳୀ ପୁସ୍ତିକା

*Source: Author, Digitized by PPRACHIN, SOA*

ମାନ୍ୟଗଣ୍ୟ ବ୍ୟକ୍ତି ବିଶେଷ ଓ ଜନସାଧାରଣଙ୍କ ସଂପୃକ୍ତି ନିମନ୍ତେ ସୁଯୋଗ ସୃଷ୍ଟି କରୁଥିଲେ । ଏହା ଫଳରେ ଏହି ଶିକ୍ଷକ ଶିକ୍ଷା ପ୍ରଶିକ୍ଷଣ ଯେ ଜନସାଧାରଣଙ୍କର ଏ ବାର୍ତ୍ତା ସମାଜକୁ ଯାଇ ପାରୁଥିଲା । ତାଙ୍କ ସମୟରେ ସେ ମହାବିଦ୍ୟାଳୟର ପାଠାଗାରର ସମୃଦ୍ଧି ଓ ବିକାଶ ନିମନ୍ତେ ଯଥେଷ୍ଟ କାର୍ଯ୍ୟ କରିଥିଲେ ।

**ବିନୋଦ ଭୂଷଣ ପରିଜା**

- ପ୍ରଫେସର ଦାଶ ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦର ନିର୍ଦ୍ଦେଶକ ଥିବାବେଳେ ବୀର ସୁରେନ୍ଦ୍ର ସାଏ ନଗରରେ ରହୁଥିଲେ । ପ୍ରାତଃ ଭ୍ରମଣ ସମୟରେ ମୋର ତାଙ୍କ ସହିତ ଦେଖା ସାକ୍ଷାତ ହେଉଥିଲା । ସେ ତାଙ୍କର ଅଳ୍ପ କଥା ମଧ୍ୟରେ ଉପଦେଶାତ୍ମକ ବାଣୀ ସଦୃଶ କହନ୍ତି, "ଭଲ ମଣିଷ ହୁଅ ଓ ଜୀବନର ଲକ୍ଷ୍ୟ ପଥରେ ଆଗେଇ ଚାଲ ।" ତାଙ୍କର ଅଳ୍ପ କଥା ମଧ୍ୟରେ ବୃହତ୍ ଉପଦେଶର ଭଣ୍ଡାର ରହିଥାଏ ।

**ଡକ୍ଟର ବିଷ୍ଣୁ ଚରଣ ସାହୁ**

- Prof. Sarat Chandra Dash was an ideal educationist, a poet and above all a very amiable personality. In fact he was an worthy son of Odisha.

**Prof. Debakanta Mishra**

- Prof. Dash is the pride of Odisha in general and my native district Dhenkanal in particular.

**Bimal Kumar Mishra**

- Popularly nick-named as "Professor Dash" in past Indian meetings - a dashing force to be recokend with. Other States learnt profusely from 'his' SCERT model. Odisha SCERT was trailblazer and a polestar for others to emulate.

**Prof. S.L. Jena**

- The history of Education in Odisha cannot be completed without a reference to Dr. S. C. Dash. For his efforts, the State Institute of Education was upgraded to the Directorate of Teacher Education and State Council of Educational Research and Training. He was the founding Director of SCERT, Odisha.

**Prof. Surendra Mohan Pany**

- Prof. S.C. Dash was a true teacher. He was endowed with the three aspects of teaching as a profession i.e the art of teaching, quality control and professional leadership.

**Dr. Premalata Mohapatra**

- Prof. Dash was a man of dynamism and an educationist of Odisha.

**Nimai Charan Swain**

- We the people of Odisha are proud of Prof. Sarat Chandra Dash in general and people of Dhenkanal in particular.

**Prof. Bimal Nanda**

- Prof. Sarat Chandra Dash was a visionary with strong foresightedness. He was a giant in the field of Education in general and Teacher Education in particular with unique contributions to educational theory and practice, curricular innovation, methodology of instruction and educational administration at large for almost some decades.

**Dr. Brajabandhu Panda**

- Prof. Sarat Chandra Dash, known by his name in the field of Education, is a renowned personality. He flourished to eminence by his endavour in spite of several hurdles.

**Dr. Bijaya Kumar Mishra**

# ଶରତ ଚନ୍ଦ୍ର ଦାଶଙ୍କ ପ୍ରଥମ ଶ୍ରାଦ୍ଧବାର୍ଷିକୀରେ ...



ବାଲେଶ୍ୱର : ଶିକ୍ଷାବିତ୍ ପ୍ରଫେସର ଶରତ ଚନ୍ଦ୍ର ଦାଶଙ୍କ ପ୍ରଥମ ଶ୍ରାଦ୍ଧବାର୍ଷିକୀ ପାଳନ ଅବସରେ ତାଙ୍କର ସୁପୁତ୍ର ପ୍ରାକ୍ତନ ପ୍ରଫେସର ନିର୍ମଳ ଚନ୍ଦ୍ର ଦାଶ (ଫକିରମୋହନ ବିଶ୍ୱ ବିଦ୍ୟାଳୟ, ବାଲେଶ୍ୱର)ଙ୍କ ପକ୍ଷରୁ ଶ୍ରୀଜଗନ୍ନାଥଙ୍କ ନିକଟରେ ପିତାଙ୍କ ଅମର ଆତ୍ମାର ସଦ୍‌ଗତି କାମନା କରିବା ସହିତ ତାଙ୍କ ଅମ୍ଳାନ ସ୍ମୃତି ଉଦ୍ଦେଶ୍ୟରେ ୨୦,୦୦୦ଟଙ୍କା 'ସମାଜ ରିଲିଫ୍ ପାଣ୍ଠି'କୁ ଦାନ କରିଛନ୍ତି । ଏହି ଅର୍ଥ ରାଜ୍ୟର ମେଧାବୀ ଗରିବ ଛାତ୍ର/ଛାତ୍ରୀମାନଙ୍କ ପାଇଁ ଶିକ୍ଷାବୃତ୍ତି ସହାୟତା ନିମନ୍ତେ ପ୍ରଦାନ କରାଯିବାକୁ ଶ୍ରୀ ଦାଶ ଅନୁରୋଧ କରିଛନ୍ତି ।

Source: Author, Digitized by PPRACHIN, SOA

10 RS.




PROF. (DR.) SARAT CHANDRA DASH MEMORIAL TRUST DEED

Know all by these presents that this trust deed is made on the 14th day of JULY, 2000 between Nirmal Chandra Dash, S/o. Prof. Sarat Chandra Dash, Reader, Anthropology Department, Khallikote Autonomous College, Berhampur, P.S. Berhampur Town, District Ganjam here-in-after called Donor of the one part and the Principal, D P I A S E, Berhampur at Kanisi, Dist. Ganjam (here-in-after called Donee) of the other part.

Whereas the father of the donor Prof. (Dr.) Sarat Chandra Dash was the founder Principal of the Government Training College, Berhampur. Subsequently named and styled as D P I S Berhampur and for the memory of said Prof. (Dr.) Sarat Chandra



FIRST FOLD HERE

SENDER'S NAME AND ADDRESS (PLEASE SHOW YOUR POSTCODE)

Dr. S. C. Dash
C/O Mr. T. Krishna Murty
14, Albany Park Road
Kingston
SURREY (United Kingdom)

HILLPATNA (SAMBALPUR) 2 12.74 8.30 HRS DELY

AN AIR LETTER SHOULD NOT CONTAIN ANY ENCLOSURE; IF IT DOES IT MAY BE SURCHARGED OR SENT BY ORDINARY MAIL

SECOND FOLD HERE

BY AIR MAIL
AIR LETTER
PAR AVION AEROGRAMME

REMEMBER to use the POST CODE!

Source: Author, Digitized by PPRACHIN, SOA

ପ୍ରସ୍ତୁତି :

ଆରତ ଶରତ

ପ୍ରକାଶକ :

ନିର୍ମଳ, ବିମଳ, ମିନତି ଓ କମଳ

ବିତରଣ :

ଅନିଲ, ମୋତିନ୍ ଓ କୁଞ୍ଜ

ବି.ଏମ୍ -୧୬, ଭି.ଏସ୍.ଏସ୍. ନଗର, ଭୁବନେଶ୍ୱର -୭୫୧୦୦୭



ଲକ୍ଷ୍ମୀପ୍ରିୟା ଜାନକୀ ଦେବୀ ସ୍ମୃତି ପୀଠ

ଏକ ପାରିବାରିକ ଦେବସ୍ଥାନ

ଓଁ ବ୍ରହ୍ମଣାୟ ନମଃ

ଜଜୁର୍ବେଦିୟ ବତ୍ସସ୍ୟ ଗୋତ୍ର, ଅଙ୍ଗିରା ପ୍ରବର

(କାନ୍ୟଶାଖା)

# ମେଘନାଦ ଦାଶଙ୍କ ବଂଶାନୁ ଚରିତ



**ଡକ୍ଟର ଦିଗରାଜ ବ୍ରହ୍ମା**
ଜନ୍ମ : ୧୩ ଏପ୍ରିଲ, ୧୯୪୯
ପିତା : ସ୍ୱର୍ଗତ ଲକ୍ଷ୍ମଣ ପଣ୍ଡା
ମାତା : ସ୍ୱର୍ଗତା ଜାନକୀ ଦେବୀ
ଗ୍ରାମ : ରୁଦ୍ରପୁର, ଛତିଆ, କଟକ



ଶିକ୍ଷାଗତ ଯୋଗ୍ୟତା : ଏମ୍.ଏ., ଏମ୍.ଏଡ୍., ପିଏଚ.ଡି (ଉତ୍କଳ), ଇଟିଭି ପ୍ରଡ଼କ୍ସନ (କାର୍ଲିଲାଇଲ, ଗ୍ରେଟ୍ ବ୍ରିଟେନ୍) ଶିକ୍ଷା ପ୍ରକଳ୍ପ ପରିଚାଳନା (ଡିପିୟୁ, ବ୍ୟାଙ୍କକ୍)

ଡକ୍ଟର ଦିଗରାଜ ବ୍ରହ୍ମା ରାଜ୍ୟର ଜଣେ ପ୍ରତିଷ୍ଠିତ ଶିକ୍ଷାବିତ୍ । ପାଠ୍ୟପୁସ୍ତକ ପ୍ରଣୟନ ଓ ଗବେଷଣା କ୍ଷେତ୍ରରେ ଦୀର୍ଘ ଅର୍ଦ୍ଧଶତାବ୍ଦୀ ଧରି କାର୍ଯ୍ୟ କରିଆସୁଛନ୍ତି । ତାଙ୍କ ରଚିତ ବିଭିନ୍ନ ପୁସ୍ତକ, ଶିକ୍ଷା ଓ ଗବେଷଣାଲବ୍ଧ ସନ୍ଦର୍ଭ ଦେଶ ବିଦେଶରେ ଆଦୃତ । ଜଣେ ସ୍ତମ୍ଭକାର ହିସାବରେ ଡକ୍ଟର ବ୍ରହ୍ମା ପରିଚିତ ।
ସଂପ୍ରତି ସେ ଭୁବନେଶ୍ୱରର ପଟିଆ ଷ୍ଟେସନ ନିକଟସ୍ଥ ମହାବୀର ବିହାରରେ ଅବସ୍ଥାନ କରୁଛନ୍ତି ।

**PRAGNYAPURUSHA**
**Prof. SARAT CHANDRA DASH**
Published by Rastriya Sahitya Sansthan,
Sahitya Bhawan, 722, Janpath, Unit -3,
Bhubaneswar - 751001

₹250/- only

978-81-931182-2-1